# ଆମରି ଜୀବ ଆମ ବିଭବ

ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି
*ସ୍ନାତକୋତ୍ତର ପ୍ରାଣିବିଜ୍ଞାନ ବିଭାଗ*
*ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର*

ନନ୍ଦଲାଲ ପ୍ରକାଶନ
କଟକ

# ସୂଚୀ

# ମୁଖବନ୍ଧ

ସୌର ପରିବାର ମଧ୍ୟରେ କୌଣସି ଗ୍ରହର ଯଦି ସ୍ୱତନ୍ତ୍ରତା ଥାଏ, ସେଇଟି ହେଉଛି ପୃଥିବୀ । ତାହାର କାରଣ ସତରେ କଅଣ ? ଉତ୍ତରଟି ଅତି ସରଳ । ପୃଥିବୀ ଉପରେ ସମସ୍ତଙ୍କ ଲକ୍ଷ୍ୟର ଏକମାତ୍ର ବଳିଷ୍ଠ କାରଣ ହେଉଛି ପୃଥିବୀର ପ୍ରାକୃତିକ ପରିବେଶ, ଯାହାର କ୍ରୋଡ଼ରେ ବଞ୍ଚି ରହିଛନ୍ତି ଅସଂଖ୍ୟ ଉଦ୍ଭିଦ ଓ ପ୍ରାଣୀ । ଏମାନଙ୍କ ସମାରୋହ ଘଟିଛି ପୃଥିବୀ ଉପରିସ୍ଥ ଅତି ସୁନ୍ଦର କମନୀୟ ତଥା ମନୋରମ ପର୍ବତ, ନଦ, ନଦୀ, ଝରଣା, ଜଳପ୍ରପାତ ଓ ଉଷ୍ଣ ପ୍ରସ୍ରବଣ ପରିବେଶ ମଧ୍ୟରେ । ଗଛଲତା, ଗୁଳ୍ମ, ବୁଦା ଓ ଦ୍ରୁମ ଆଦି ଉଦ୍ଭିଦଗୁଡ଼ିକୁ ବାଦ ଦେଲେ ଏ ଧରା ଆହୁରି ବଳିଷ୍ଠ ଓ ଜୀବନ୍ତ ହୋଇଛି କେବଳ ଏହି ପରିବେଶରେ ବିଚରଣ କରୁଥିବା ପ୍ରାଣୀମାନଙ୍କ ଲାଗି । ବାସ୍ତବିକ କେତେ ଯେ ପ୍ରାଣୀ ପୃଥିବୀ ବୁକୁରେ ଅଛନ୍ତି କହିବା ବଡ଼ ଦୁଃସାଧ୍ୟ । କେତେ ଆମ ଆଖିରେ ପଡୁଛନ୍ତି ତ କେତେକ ନଜରରେ ଆସୁ ନାହାନ୍ତି ଓ ଆଉ କେତେକଙ୍କୁ ମଧ୍ୟ ଆଖିରେ ଦେଖିବା ସମ୍ଭବ ନୁହେଁ । ନିଶ୍ଚିହ୍ନ ହୋଇଗଲେଣି ଅନେକ ।

ମନୁଷ୍ୟ ସତରେ ବୀଜାଣୁ ଠାରୁ ଆରମ୍ଭ କରି ହାତୀ ଓ ତିମି ଆଦି ପ୍ରାଣୀମାନଙ୍କ ପରି ପରିବେଶର ଏକ ପ୍ରାଣୀ । କିନ୍ତୁ ତା ଉପରେ ଅତ୍ୟାଚାର, ଶିକାର ଓ ଲୋଭ ଯୋଗୁଁ ଆଜି ଏ ପ୍ରାଣୀମାନେ ସତରେ କେଉଁ ଅବସ୍ଥାରେ ଅଛନ୍ତି ଭାବିଲେ ବଡ଼ ଅଡୁଆ ଅଡୁଆ ଲାଗେ । ଓଡ଼ିଶାର ପ୍ରଳୟଙ୍କରୀ ବାତ୍ୟାରେ ଘରଦ୍ୱାର ଉଡ଼ିଗଲା ବା ଭାଙ୍ଗିଗଲା ପରେ ଅଥବା ଗୁଜୁରାଟରେ ଘଟିଥିବା ଭୂମିକମ୍ପରେ ଘରଦ୍ୱାର ଛିନ୍ନଭିନ୍ନ ହୋଇ ଭାଙ୍ଗିଗଲା ପରେ ମନୁଷ୍ୟମାନେ ଯେପରି ସର୍ବହରା ହୋଇ କାଳାତିପାତ କଲେ ଠିକ୍ ସେପରି ଅସହାୟ ମନେକରିଥିବା ପ୍ରାଣୀମାନେ କଣ ସତରେ ସେମିତି କଷ୍ଟ ଅନୁଭବ କରିପାରୁ ନ ଥିବେ ! ଦିନକୁ ଦିନ ତାଙ୍କ ତାଙ୍କର ଘର ଅର୍ଥାତ୍ ଜଙ୍ଗଲ, ପାହାଡ଼ ପର୍ବତ ଓ ହୁଙ୍କା ଆଦି ଭାଙ୍ଗି ନଷ୍ଟଭ୍ରଷ୍ଟ କରିବା ଫଳରେ ଏବେ ଦେଖାଯାଉଛି ପାରାମାନେ ଘରେ ବସା ବାନ୍ଧୁଛନ୍ତି ତ ଆଉ କେତେକ ପକ୍ଷୀ ସ୍ଥାନ ଅଭାବରେ ବିଦ୍ୟୁତ୍ ଖୁଣ୍ଟ ପରି ବିପଦ ସଂକୁଳ ସ୍ଥାନରେ ଘର କରି ରହୁଛନ୍ତି । ନିରାପଦ ନ ହେଲେ ମଧ୍ୟ ସୁସ୍ଥ ବିପଦଶୂନ୍ୟ ସ୍ଥାନ ନ ପାଇ ଏପରି ବସାବାନ୍ଧି ରହିବାରେ ସେମାନେ ଲାଗିପଡ଼ିଛନ୍ତି ।

ଜଙ୍ଗଲସଫା ସାଙ୍ଗକୁ ସହରାଞ୍ଚଳ ପ୍ରତିଷ୍ଠା, ବନ୍ଧବାଡ଼ ତିଆରି ଏବଂ କଳକାରଖାନା ଆଦିର ଗଠନ ସବୁ ଏ ପ୍ରାଣୀମାନଙ୍କର ଜୀବନକୁ କରିଦେଇଛି ଅତି ବୀଭତ୍ସ । କେଉଁଠି ଚେନାଏ ଜାଗା ନାହିଁ ତ କେଉଁଠି ଦୂଷିତ ବାଷ୍ପ ତ ଆଉ କେଉଁଠି ଦିନରାତି ଠକ୍ ଠାକ୍ ଶବ୍ଦ । କେମିତି ସେମାନେ ବଞ୍ଚିବେ କୁହନ୍ତୁ ତ ? ମନୁଷ୍ୟ ଭାବୁଛି ସତରେ ଯେମିତି ସେ ପ୍ରକୃତି ତଥା ପ୍ରକୃତି ମଧ୍ୟସ୍ଥ ଅନ୍ୟ ସମସ୍ତ ଉଦ୍ଭିଦ ଓ ପ୍ରାଣୀମାନଙ୍କୁ ଜନ୍ମ ଦେଇଛି ଓ ସୃଷ୍ଟି କରିଛି । ଆଉ ମରିଗଲେ ବା ସଂଖ୍ୟା କମିଗଲେ କିଛି କ୍ଷତି ନାହିଁ । ସେ ହୁଏ ତ ଅନ୍ୟମାନଙ୍କୁ ସୃଷ୍ଟି କରିପାରିବ ବା କରି ନ ପାରିଲେ ମଧ୍ୟ କିଛି ଯାଏ ଆସେ ନାହିଁ । ଏମିତି ଅନେକ ବେପରୁଆ ମନୋଭାବ । ଏମିତି

ଭ୍ରମାତ୍ମକ ଖିଆଲି ମନୋଭାବ ହେତୁ କେତେ ଯେ ପ୍ରାଣୀ ଲୋପ ପାଇ ଗଲେଣି ସେମାନଙ୍କ ହିସାବ ନାହିଁ । ଆଉ ହିସାବ ପାଇଁ କେତେକ ବୈଜ୍ଞାନିକ ଓ ବେସରକାରୀ ତଥା ସରକାରୀ ଅନୁଷ୍ଠାନ ଚେଷ୍ଟିତ । କ'ଣ ଏହା ସହଜ କଥା ? ଦେଖାଯାଉ କେଉଁଆଡ଼ ପାଣି କେଉଁଆଡ଼େ ଯାଉଛି ।

ହଁ ମୋଟାମୋଟି ଭାବରେ ଆମ ଚାରିପଟେ ଯେତେ ଜୀବଜନ୍ତୁ ଆଦି ଅଛନ୍ତି ସେମାନେ ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ ଲାଗିଛନ୍ତି ଆମ କାମରେ । ପରିବେଶ ସନ୍ତୁଳନରେ ସେମାନେ ହେଉଛନ୍ତି । ପରିବେଶ ପ୍ରହରୀ ଓ ରକ୍ଷକ । କିଏ ବୀଜ ବିକ୍ଷେପରେ ତ କିଏ ଅନିଷ୍ଟକାରୀ ପ୍ରାଣୀମାନଙ୍କୁ ଖାଇ ଦମନ କରିବାରେ ତ ଆଉ କିଏ ପ୍ରାକୃତିକ ଭାରସାମ୍ୟ ରକ୍ଷା କରିବାରେ – ଏମିତି କିଛି ନା କିଛି କାର୍ଯ୍ୟରେ ଆମକୁ ସାହାଯ୍ୟ କରିବାରେ ଲାଗିଛନ୍ତି ସେମାନେ । ଆଉ ଆମେ ଗୋଟିଏ ବଡ଼ କଥା ବୋଧହୁଏ ଭୁଲିଯାଉଛୁ ଏ ପ୍ରାଣୀମାନଙ୍କର ଅବଦାନ ରହିଛି ଖାଦ୍ୟ, ବସ୍ତ୍ର, ପାନୀୟ ଓ ଔଷଧ ଆଦି ଯୋଗାଇବାରେ । ପ୍ରାଣୀ ଓ ମନୁଷ୍ୟ ଏମାନେ ପ୍ରାକୃତିକ ପରିବେଶର ସମସ୍ତେ ଏକ ଅବିଚ୍ଛେଦ୍ୟ ଅଙ୍ଗ । ଗୋଟିକୁ ବାଦଦେଇ ଅନ୍ୟଟି ବଂଚିବା ଅସମ୍ଭବ ବା କଷ୍ଟ । ତେଣୁ ସେମାନଙ୍କ ଗୁରୁତ୍ୱ ଓ ସେମାନଙ୍କର ମହତ୍ୱ ବୁଝିବା ଆମ ସମସ୍ତଙ୍କର ଦାୟିତ୍ୱ ନୁହେଁ କି ? ସେମାନଙ୍କୁ ସୁରକ୍ଷା ଦେବା, ତାଙ୍କର ବଂଶବୃଦ୍ଧିରେ ସହାୟକ ହେବା ଏବଂ ସର୍ବୋପରି ସେମାନଙ୍କୁ ସଂରକ୍ଷଣ କରି ଭଲପାଇବା ଆମର କର୍ତ୍ତବ୍ୟ ନୁହେଁ କି ? ତାଙ୍କର କଥା ଟିକିଏ ଭାବିଲେ ସତରେ ମନରେ ନିଶ୍ଚୟ ଦୟା ଆସିବ ।

ମଣିଷର ଜୀବଜଗତ ପ୍ରତି ଖିଆଲି ମନୋଭାବ ଯୋଗୁଁ ଯେଉଁ ପରିମାଣରେ ଦିନକୁ ଦିନ ଜୀବଜନ୍ତୁ ହ୍ରାସ ପାଉଛନ୍ତି ସେମାନଙ୍କ ବିନୀ ମଣିଷ ଏ ସୁନ୍ଦର ପୃଥିବୀରେ ରହିପାରିବ ତ ?

ଜନ ସାଧାରଣ ଓ ଛାତ୍ରଛାତ୍ରୀମାନଙ୍କ ମନରେ ଜୀବମାନଙ୍କ ପ୍ରତି ସମ୍ୟକ ସଚେତନ ସୃଷ୍ଟି କରିବା, ଦୟାଭାବ ସୃଷ୍ଟି କରିବା, ଭଲପାଇବା, ପାଳିବା ତଥା ଅତ୍ୟାଚାର ଓ ହତ୍ୟାକରିବା ଆଦି ପ୍ରତି ଧାରଣା ଦେବା ଏ ପୁସ୍ତକଟିର ଉଦ୍ଦେଶ୍ୟ । କିଞ୍ଚିତ ପରିମାଣରେ ଏପରି ଧାରଣା ସୃଷ୍ଟି କରିପାରିଲେ ଲେଖକ ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ଉଦ୍ଦେଶ୍ୟ ସାଧିତ ହେବ ବୋଲି ଆଶା । ପ୍ରାଣୀମାନେ କଅଣ, କାହିଁକି, କିପରି, କାହାକୁ ଓ କେତେବେଳେ ଆଦି ସମ୍ବନ୍ଧରେ ଆଲୋଚିତ ଏ ପୁସ୍ତକ କେତେକଙ୍କୁ ସ୍ପର୍ଶ କରିପାରିଲେ ଲେଖକଙ୍କ ଶ୍ରମ ସାର୍ଥକ ହେବ ।

ଉତ୍କଳ ବିଶ୍ୱବିଦ୍ୟାଳୟ
ତା ୦୧/୦୭/୨୦୦୧

**ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି**

# ପ୍ରାଣୀ ଉତ୍ପତ୍ତି, କ୍ରମବିକାଶ ଓ ବିବର୍ତ୍ତନ

ଜୀବନର ସୃଷ୍ଟି କେମିତି, କେତେବେଳେ ଓ କିଏ ପ୍ରଥମେ ଆସିଲା ତାହା ଏକ ବଡ଼ ପ୍ରଶ୍ନବାଚୀ । ହେଲେ ବି ପ୍ରାଣୀବିତ୍‌ମାନେ ବିଭିନ୍ନ ପରୀକ୍ଷାନିରୀକ୍ଷା କରି ପ୍ରାୟ ପ୍ରକୃତ ସିଦ୍ଧାନ୍ତରେ ପହଁଚିପାରିଛନ୍ତି ଯେ ଉତ୍ପତ୍ତି କେତେବେଳେ କିପରି ହୋଇଥିଲା । ତେବେ ସୌର ପରିବାରର ସଠିକ୍ ଭାବରେ ଲିପିବଦ୍ଧ ହୋଇଥିବା ନଅଟି ବା ଦଶଟି ଗ୍ରହ ମଧ୍ୟରୁ ପୃଥିବୀ ଏକମାତ୍ର ଗ୍ରହ, ଯେଉଁ ସ୍ଥାନରେ ଜୀବନର ସତ୍ତା ସମ୍ଭବ ହୋଇପାରିଛି । କେତେ ପ୍ରକାର ଉଦ୍ଭିଦ ଓ କେତେ ପ୍ରକାର ପ୍ରାଣୀଙ୍କର ଆବିର୍ଭାବ ଓ ବିଲୟ ହୋଇଛି ତାହାର ଆକଳନ ସତରେ କାଠିକର ପାଠ । ତେବେ ମୋଟାମୋଟି ପୃଥିବୀର ଜଳବାୟୁ ତଥା ପାରିପାର୍ଶ୍ୱିକ ପରସ୍ଥିତି ହିଁ ଜୀବମାନଙ୍କ ପାଇଁ ଆଣିପାରିଛି ଏକ ସୁନ୍ଦର ସୁଯୋଗ ଓ ପରିବେଶୀୟ ପରିସ୍ଥିତି । ତେଣୁ ଗୋଟିଏ ପରେ ଗୋଟିଏ ଏକକୋଷୀ ପ୍ରାଣୀଠାରୁ ଆରମ୍ଭ କରି ବହୁକୋଷୀୟ ସ୍ତନ୍ୟପାୟୀ ପ୍ରାଣୀମାନେ ଧୀରେ ଧୀରେ କ୍ରମାନ୍ୱୟରେ ପୃଥିବୀରେ ପଦାର୍ପଣ କରିଛନ୍ତି । ସେଥିପାଇଁ ପୃଥିବୀ ପରି ଗ୍ରହର ପ୍ରାଧାନ୍ୟ ଅନେକ ଓ ଏହି ହେତୁରୁ ତାହାର ସ୍ଥାନ ମଧ୍ୟ ସ୍ୱତନ୍ତ୍ର ।

ଅନେକ ଉଦ୍ଭିଦ ଓ ଜନ୍ତୁ ଅଛନ୍ତି, ଯେଉଁମାନେ ନିୟୁତ ବର୍ଷ ପୂର୍ବେ ବଞ୍ଚୁଥିବା ଉଦ୍ଭିଦ ଓ ଜନ୍ତୁମାନଙ୍କର ସାଦୃଶ୍ୟ ରଖିଛନ୍ତି ଏବଂ ବିଶେଷ ବଦଳି ନାହାନ୍ତି । ଏଥି ମଧ୍ୟରୁ ସିଲାକାନ୍ଥ (Coelacanth) ମାଛ ପ୍ରଧାନ । ୪୦୦ ନିୟୁତ ବର୍ଷ ପୂର୍ବେ ଏମାନେ ସମୁଦ୍ରରେ ପ୍ରଚୁର ପରିମାଣରେ ଦେଖା ଦେଇଥିଲେ । ସେହିପରି ଡାଇନୋସରମାନଙ୍କ ସମୟରେ ପୃଥିବୀର ଲାଲ୍ ବୃକ୍ଷ ରହିଛି । ଏହି ଗଛ ଜୀଇଁକରି ଏବେ ମଧ୍ୟ ଚୀନ୍ ଦେଶରେ ରହିଛି । ଗଭୀର ସମୁଦ୍ର ଶଯ୍ୟାରେ ସେଫାଲୋ ଟିସକସ୍ ଜନ୍ତୁର ଫସିଲ ମିଳିଛି ଯାହା ୫୦୦ ନିୟୁତ ବର୍ଷ ପୂର୍ବେ ବଞ୍ଚିଥିଲା । ରାଜାକଙ୍କଡ଼ା ବା ରାମଲେଖନା କଙ୍କଡ଼ା (Horse Shoe Crab) ନିୟୁତ ବର୍ଷ ଧରି ବଞ୍ଚି ରହି ଆସିଅଛି ।

ଶିଳା ଓ ଫସିଲରୁ ପୃଥିବୀର ଇତିହାସ, ଜଳବାୟୁ ପରିବର୍ତ୍ତନ, ମହାଦେଶମାନଙ୍କର ଚଳନ, ବାୟୁମଣ୍ଡଳର ଗଠନ, ପର୍ବତଶ୍ରେଣୀ ଓ ସମୁଦ୍ରର ଗଠନ ଓ ସର୍ବୋପରି ଜୀବଜଗତର ଅଭ୍ୟୁତ୍‌ଥାନ ବିଷୟ ଜଣାପଡ଼େ ।

ଧୀରେ ଧୀରେ ପରିବର୍ତ୍ତନ ଫଳରେ ନୂଆ ନୂଆ ପ୍ରକାରର ଉଦ୍ଭିଦ ଓ ଜୀବଜନ୍ତୁମାନେ ଜନ୍ମଗ୍ରହଣ କରିଛନ୍ତି । ଏହାକୁ ବିବର୍ତ୍ତନ (Evolution) କୁହାଯାଏ । ଆମେ ଯେତେବେଳେ ବିବର୍ତ୍ତନ କଥା କହୁଁ, ସେତେବେଳେ ଉଦ୍ଭିଦ ଓ ଜୀବଜନ୍ତୁଙ୍କ ଜାତି (Species) କଥା କହୁଁ । ଏବେ ପୃଥିବୀରେ ଦେଢ଼ନିୟୁତ ଜାତି ଅଛନ୍ତି । ଏହା ମଧ୍ୟରୁ ଅନେକ ଜାତି କେତେ ସହସ୍ର ବା କେତେ ନିୟୁତ ବର୍ଷ ଧରି ବଞ୍ଚିଛନ୍ତି । କେତେ ବର୍ଷ ଗୋଟିଏ ଜାତିର ପ୍ରାଣୀ (Species) ବଞ୍ଚିବ, ତାହା କେତେ ଚଞ୍ଚଳ ବିବର୍ତ୍ତିତ ହେଉଛି ଓ ଅନ୍ୟ ଜାତିର ପ୍ରାଣୀ ସହ ଖାଦ୍ୟ ଓ ଆଶ୍ରୟପାଇଁ କେତେ ପ୍ରତିଯୋଗିତା କରୁଛି, ତାହା ଉପରେ ନିର୍ଭର କରେ । ସମୁଦ୍ର ଶାମୁକା (Mussel) ଜାତୀୟ ପ୍ରାଣୀ ୫୦ ନିୟୁତ ବର୍ଷ ବଞ୍ଚେ, କିନ୍ତୁ ସ୍ତନ୍ୟପାୟୀ ପ୍ରାଣୀ ବଂଶ ପ୍ରାୟ ପାଞ୍ଚନିୟୁତ ବର୍ଷ ବଞ୍ଚେ, ଫସିଲ ହିସାବରୁ ଜଣାପଡ଼େ ଯେ ପୁରୁଣା ଜାତି ଜୀବର ମୃତ୍ୟୁ ହେଉଛି ଏବଂ ନୂଆ ଜାତିର ପ୍ରାଣୀ ଜନ୍ମ ହେଉଛନ୍ତି । ଅନେକ ସମୟରେ ବିଭିନ୍ନ ଫସିଲ ଆବିଷ୍କାର ସମୟ ମଧ୍ୟରେ ବ୍ୟବଧାନ ଦେଖାଯାଏ ।

୫୭୦ ନିୟୁତ ବର୍ଷ ପୂର୍ବେ ପ୍ରଥମେ କାମ୍ବ୍ରିଆନ ନାମକ ସମୟ (Cambrian Period) ରେ ପୃଥିବୀରେ ଜୀବଜଗତ ହଠାତ୍ ଦେଖାଗଲା । ବିଭିନ୍ନ ଜୀବଜନ୍ତୁର ଜାତି ବିଭିନ୍ନ ସମୟରେ ଏ ପୃଥିବୀ ଉପରେ ଜନ୍ମଲାଭ କରିଛନ୍ତି ଓ ବିଲୋପ ପାଇଛନ୍ତି । ନିୟୁତ ବର୍ଷ ଧରି ବିଭିନ୍ନ ଜୀବଜନ୍ତୁମାନଙ୍କର ଯେଉଁ ପରିବର୍ତ୍ତନ ଦେଖାଦେଇଛି, ତାକୁ ବିବର୍ତ୍ତନ (Evolution) କହନ୍ତି । ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଦୁଇଜଣ ବୈଜ୍ଞାନିକ ଚାର୍ଲସ୍ ଡାରଉଇନ୍ (୧୮୦୯ ରୁ ୧୮୮୨) ଓ ଆଲଫ୍ରେଡ୍ ରସେଲ ଓ୍ୟାଲେସ୍ ବିବର୍ତ୍ତନବାଦ ବା ତତ୍ତ୍ୱ ପ୍ରଚାର କଲେ, ଯାହା ପୁରୁଣା ଜାତିର ଜୀବଜନ୍ତୁମାନଙ୍କରୁ ନୂଆ ଜାତିର ଜୀବଜନ୍ତୁ କିପରି ଉତ୍ପତ୍ତି ହେଲା, ତାହା ବୁଝାଇ ପାରିଲା । ଚାର୍ଲସ ଡାରଉଇନ୍ ଜୀବଜନ୍ତୁ ଜାତିମାନଙ୍କର ଉତ୍ପତ୍ତି (Origin of Species) ନାମକ ଏକ ପୁସ୍ତକ ରଚନା କରିଥିଲେ । ଏଥିରେ ସେ ବିବର୍ତ୍ତନ ଫଳରେ ପୃଥିବୀରେ କିପରି ପଶୁ, ପକ୍ଷୀ ଓ ମଣିଷ ଇତ୍ୟାଦିର ସୃଷ୍ଟି ହୋଇଛି ତାହା ବୁଝାଇଛନ୍ତି । ବିବର୍ତ୍ତନ ହିଁ ପ୍ରାକୃତିକ ଚୟନ ପ୍ରକ୍ରିୟା (Natural Selection) ଯୋଗୁଁ ହେଉଛି ବୋଲି ସେ ପ୍ରମାଣିତ କରିଥିଲେ, ଯାହା ଫଳରେ ନୂଆ ଜାତିର ପଶୁପକ୍ଷୀ ସୃଷ୍ଟି ହେଉଛି ବୋଲି ସେ ଦର୍ଶାଇଥିଲେ । ଏହି ପ୍ରକ୍ରିୟା ତାଙ୍କ ମତରେ ପାର୍ଥକ୍ୟର ପରିବର୍ତ୍ତନ, ବଂଶଗତ ଗୁଣରକ୍ଷା ଏବଂ ବଞ୍ଚିବା ପାଇଁ ପ୍ରତିଯୋଗିତା ଯୋଗୁଁ ହେଉଛି ବୋଲି ସେ କହିଥିଲେ ।

ଯେତେବେଳେ କେତେକ ବଂଶର ଉଦ୍ଭିଦ ବା ଜୀବଜନ୍ତୁ ଖାଦ୍ୟାଭାବ ଯୋଗୁଁ କିମ୍ବା ସଂଖ୍ୟାଧିକ୍ୟ କାରଣରୁ ଆଶ୍ରୟସ୍ଥଳ ଅଭାବ ଯୋଗୁଁ କିମ୍ବା ଶତ୍ରୁର ଦୌରାତ୍ମ୍ୟରୁ

ରକ୍ଷା ପାଇବାରେ ବଞ୍ଚିରହନ୍ତି, ସେମାନେ ନୂତନ ବଂଶ ସୃଷ୍ଟି କରନ୍ତି । ଏମାନଙ୍କୁ ଅତି ସଫଳ ଜୀବ କୁହାଯାଏ । ଏମାନେ ସ୍ଥାନୀୟ ପରିବେଶକୁ ଆଦରି ନିଅନ୍ତି । ଏମାନଙ୍କର



ଟ୍ରାଇଲୋବାଇଟ୍

କେତେଗୁଡ଼ିଏ ଉତ୍ତରାଧିକାରୀ ବା ବଂଶଗୁଣ ଅଛି, ଯାହା ସେମାନଙ୍କୁ ଅନ୍ୟମାନଙ୍କ ତୁଳନାରେ ସଫଳ କରାଏ । ଏହିମାନଙ୍କର ହିଁ ବଂଶ ସୃଷ୍ଟି ହୁଏ । ଯେଉଁ ପ୍ରକ୍ରିୟା ଯୋଗୁଁ ଏହି ବିବର୍ତ୍ତନ ହୁଏ ତାକୁ ପ୍ରାକୃତିକ ବଛାବଛି (Natural Selection) ପ୍ରଣାଳୀ କହନ୍ତି । ପୃଥିବୀ ଓ ତା'ର ଜଳବାୟୁର ପରିବର୍ତ୍ତନ ଅନୁସାରେ ନିୟୁତ ବର୍ଷ ଧରି ବିଭିନ୍ନ ଜୀବଜନ୍ତୁମାନଙ୍କର ଜାତିର ଉତ୍ପତ୍ତି ଓ ବିଲୀନ ହୋଇଛି । ମହାଦେଶମାନଙ୍କରେ ନିୟୁତ ବର୍ଷ ଧରି ଉଦ୍ଭିଦ ଓ ଜୀବଜନ୍ତୁମାନେ ନିଜ ବାଟେ ବିବର୍ତ୍ତନ ହୋଇଛନ୍ତି ଯଦିଓ ଏକଦା ସେସବୁ ଏକ ବିରାଟ ମହାଦେଶ ଥିଲା ଓ ପରେ ବିଛିନ୍ନ ହେଲା । ତେଣୁ ଅଷ୍ଟ୍ରେଲିଆରେ ଏମୁ ଓ କଙ୍ଗାରୁ ଦେଖାଯାଏ, ଯାହା ଅନ୍ୟ କୌଣସି ମହାଦେଶରେ ଦେଖାଯାଏ ନାହିଁ ।

ଯେତେବେଳେ ନୂଆ ଓ ଦକ୍ଷ ଜୀବଜନ୍ତୁ ଜନ୍ମ ହୁଅନ୍ତି, ସେତେବେଳେ ପୁରୁଣା ଜାତିର ଜୀବଜନ୍ତୁ ଏମାନଙ୍କ ସହ ପ୍ରତିଦ୍ୱନ୍ଦ୍ୱିତା କରିପାରନ୍ତି ନାହିଁ ଓ ଫଳରେ ନିଶ୍ଚିହ୍ନ ହୋଇଯାଆନ୍ତି । ଉଦାହରଣସ୍ୱରୂପ ସମୁଦ୍ରରେ ପ୍ରଥମେ ଟ୍ରାଇଲୋବାଇଟ୍ ପ୍ରାଣୀ ଥିଲେ । ତା' ପରେ ନଟିଲୋଏଡ଼(Nautiloid) ପ୍ରାଣୀଙ୍କର ଆବିର୍ଭାବ ହେଲା, ଯେଉଁମାନେ ସନ୍ତରଣକାରୀ ଥିଲେ । ତା'ପରେ ସଫଳକାମ ପ୍ରାଣୀ ଏମୋନୋଏଡ(Ammonoid) ମାନେ ଆସିଲେ । କ୍ରମେ ସେମାନଙ୍କର ବିଲୋପ ହେଲା ଏବଂ ମାଛ ଜାତିର ଆବିର୍ଭାବ ହେଲା । ମାଛମାନଙ୍କର ହଜାର ହଜାର ଅଲଗା ଜାତି ଅଛି । ଜୀବଜନ୍ତୁ ଜାତିମାନଙ୍କର

ବିଲୋପର କାରଣ କ'ଣ ? ଉଦାହରଣସ୍ୱରୂପ ୨୫୦ ନିୟୁତ ବର୍ଷ ପୂର୍ବେ ପର୍ମିୟାନ ନାମକ ସମୟ (Permian Period) ଶେଷରେ ପୃଥିବୀର ୭୬ ରୁ ୯୬ ଭାଗ ଜାତିର ଜୀବ ନିଶ୍ଚିହ୍ନ ହୋଇଗଲେ । ସେହିପରି ୬୫ ନିୟୁତ ବର୍ଷ ପୂର୍ବେ କ୍ରେଟାସିୟସ୍ ସମୟ(Cretaceous Period)ରେ ଡାଇନୋସରମାନେ ନିଶ୍ଚିହ୍ନ ହୋଇଗଲେ । ଜୀବଜନ୍ତୁଙ୍କର ସଂପୂର୍ଣ୍ଣ ନିଶ୍ଚିହ୍ନତାର କାରଣ ରହସ୍ୟମୟ । କେହି କେହି କହନ୍ତି ପୃଥିବୀର ଜଳବାୟୁ ପରିବର୍ତ୍ତନ ଯୋଗୁଁ ଏହା ହୋଇଛି । କେହି କେହି କହନ୍ତି ମହାଦେଶମାନଙ୍କର ଚଳନ ଗତି ଯୋଗୁଁ ଏହା ହୋଇଛନ୍ତି । କେହି ଅବା କହନ୍ତି ଉଦ୍ଭିଦ ଓ ଜୀବଜନ୍ତୁମାନେ ନୂତନ ପରିବେଶ ସହ ଖାପ ଖୁଆଇପାରିଲେ ନାହିଁ । ତେବେ ଏ କଥା ସତ୍ୟ ଯେ ପୁରାତନ ଜୀବଜନ୍ତୁଙ୍କର ବିଲୋପ ପରେ ନୂଆ ବିବର୍ତ୍ତନ ହୋଇଛି, ଯେଉଁଥିରେ ନୂତନ ପ୍ରକାରର ଜୀବଜନ୍ତୁମାନେ ଜନ୍ମଗ୍ରହଣ କରିଛନ୍ତି ।

ପୃଥିବୀରେ ପ୍ରଥମେ କିପରି ଜୀବନ ସୃଷ୍ଟି ହେଲା, ତାହା କୌତୂହଳପ୍ରଦ । ପୃଥିବୀରେ ବାୟୁମଣ୍ଡଳରେ ବିଭିନ୍ନ ଗ୍ୟାସ୍ ଥିଲା ଓ ଜଳୀୟବାଷ୍ପ ଥିଲା ଏବଂ ବିଜୁଳିପାତ ଯୋଗୁଁ ନୂତନ ରାସାୟନିକ ପଦାର୍ଥମାନ ସୃଷ୍ଟି ହେଲା, ଯାହା ଜୀବମାନଙ୍କ ଠାରେ ଦେଖାଯାଏ । ୧୯୫୦ରେ ଆମେରିକୀୟ ବୈଜ୍ଞାନିକ ଷ୍ଟାନ୍‌ଲେ ମିଲର ତାଙ୍କ ପରୀକ୍ଷାଗାରରେ ପରୀକ୍ଷାମାନ କରିଥିଲେ । ସେ ମିଥେନ୍,ଏମୋନିଆ,ଉଦଜାନ ଏବଂ ଜଳୀୟବାଷ୍ପ ରଖି (ଯାହା ପୃଥିବୀର ପ୍ରଥମ ଅବସ୍ଥାରେ ଥିଲା) ତା' ମଧ୍ୟ ଦେଇ ବିଦ୍ୟୁତ୍ ଶକ୍ତି ପ୍ରବାହ କଲେ । ପରୀକ୍ଷା ଶେଷରେ ଦେଖାଗଲା ଯେ ଯାହା ପ୍ରସ୍ତୁତ ହେଲା, ତାହା ଜୀବନ୍ତ ପଦାର୍ଥରେ ଦେଖାଯାଏ ଅର୍ଥାତ୍ ଏମିନୋ ଅମ୍ଳ । ସମସ୍ତ ଜୀବନ୍ତ ପଦାର୍ଥର କୋଷ (Cell) ଅଛି । ଏକକୋଷରୁ ବହୁକୋଷୀ ଜୀବର ସୃଷ୍ଟି । କେବେ ଜୀବନ୍ତ ପଦାର୍ଥରେ କୋଷ ସୃଷ୍ଟି ହେଲା ତାହା ଜଣାଯାଇ ନାହିଁ । ଇଂରାଜୀ ବୈଜ୍ଞାନିକ ରବର୍ଟ ହୁକ୍ ୧୬୬୫




ଉଦ୍ଭିଦ କୋଷର ବିଭିନ୍ନ ଅଂଶ

ମସିହାରେ ଲେନ୍ସ ଦ୍ୱାରା ଗୋଟିଏ ଗଛର ବଲ୍କଳ ପରୀକ୍ଷା କରୁଥିଲେ । ସେଥିରେ ସେ ମହୁଫେଣାପରି ଅତି କ୍ଷୁଦ୍ର କୋଠରିଗୁଡ଼ିଏ ଦେଖିବାକୁ ପାଇଲେ । ଏହି ପ୍ରତ୍ୟେକ କୋଠରିକୁ ସେ କୋଷ ବା ସେଲ୍ ଭାବରେ ନାମିତ କଲେ । ପରେ ସବୁ ପ୍ରାଣୀ ଓ ଉଦ୍ଭିଦର ଶରୀର ଏହିପରି କୋଷରେ ତିଆରି ହୋଇଥିବାର ପ୍ରମାଣିତ ହେଲା । କିନ୍ତୁ ରବର୍ଟ ହୁକ୍ ଦେଖିଥିବା କୋଷଗୁଡ଼ିକ (ବଲ୍କଳ) ମୃତ ହୋଇଥିବାରୁ ଶୂନ୍ୟ କୋଠରି ବିଶିଷ୍ଟ ଥିଲା । ପରେ ଜୀବନ୍ତ କୋଷକୁ ପରୀକ୍ଷା କରି ତାହା ମୁଖ୍ୟତଃ ଏକ ଅର୍ଦ୍ଧତରଳ ପଦାର୍ଥରେ ଭରି ରହିଥିବାର ଦେଖାଗଲା । ଏହା କୋଷର ସମସ୍ତ ପ୍ରକାର




ପ୍ରାଣୀ କୋଷର ବିଭିନ୍ନ ଅଂଶ

ଜୀବନ ପ୍ରକ୍ରିୟା ସମ୍ପାଦନ କରିଥାଏ । ଉଦ୍ଭିଦ ହେଉ ବା ପ୍ରାଣୀ ହେଉ, ପ୍ରତ୍ୟେକ ଜୀବର ଶରୀର ଏକ ବା ଏକାଧିକ କୋଷଦ୍ୱାରା ଗଠିତ ହୋଇଥାଏ । ଜୀବର ଶରୀର ଏକକୋଷ ବିଶିଷ୍ଟ ହେଲେ , ତାକୁ ଏକକୋଷୀ (Unicellular) ଜୀବ ଏବଂ ଏକାଧିକ କୋଷଦ୍ୱାରା ଗଠିତ ହୋଇଥିଲେ, ତାକୁ ବହୁକୋଷୀ (Multicellular) ଜୀବ କୁହାଯାଏ । ଜୀବକୋଷ କେବଳ ଯେ ଶରୀର ଗଠନର ମୌଳିକ ଅଂଶ ତାହା ନୁହେଁ, ଏହା ସମଗ୍ର ଜୀବର ପ୍ରାଣକେନ୍ଦ୍ର । ସମସ୍ତ ବୀଜାଣୁ (Bacteria), ନୀଳହରିତ୍ ଶୈବାଳ ଓ ଆଦି ପ୍ରାଣୀ କେବଳ ଗୋଟିଏ ଗୋଟିଏ କୋଷକୁ ନେଇ ଗଠିତ ହୋଇଥିଲାବେଳେ, ଉଚ୍ଚଶ୍ରେଣୀର ଉଦ୍ଭିଦ ଓ ବହୁ ପ୍ରାଣୀ ତଥା ମନୁଷ୍ୟର ଶରୀର ଅନେକ କୋଷର



ପ୍ରାଣୀମାନଙ୍କର ସୃଷ୍ଟି ଓ କ୍ରମବିକାଶ

ସମାରୋହରେ ଗଠିତ । ପୁଣି ପୃଥିବୀରେ ପ୍ରଥମେ ମେରୁଦଣ୍ଡବିହୀନ ଜୀବ ଦେଖାଦେଲେ । ପରେ ଦେଖାଦେଲେ ମେରୁଦଣ୍ଡୀ ପ୍ରାଣୀମାନେ ।

ଗ୍ରେଗର ମେଣ୍ଡେଲ (୧୮୨୨ – ୧୮୮୪ ) ଆବିଷ୍କାର କରିଥିଲେ ଯେ ଗୁଣପିଣ୍ଡ (Gene) ଜାତୀୟ ପଦାର୍ଥ ଯୋଗୁଁ ବଂଶଗତ ପ୍ରକୃତି ରହୁଛି । ଏହାକୁ ବଂଶ(Heredity) କହନ୍ତି । ୧୯୨୦ରେ ପ୍ରମାଣିତ ହେଲା ଯେ, ଗୁଣସୂତ୍ର (Chromosome) ବସ୍ତୁରେ ଗୁଣପିଣ୍ଡମାନେ ଅନ୍ତର୍ନିହିତ ଅଛନ୍ତି । ଗୁଣସୂତ୍ରରେ ଡିଅକ୍ସିରାଇବୋନିଉକ୍ଲିକ୍ ଅମ୍ଳ (DNA) ଅଛି ଯେଉଁଥିଯୋଗୁଁ ବଂଶଧରମାନଙ୍କରେ ଅବିକଳ ଜୀବନ ଗଠନ ହେଉଛି । ପ୍ରତି ପ୍ରକାର ଜୀବର ଅଲଗା ଅଲଗା ଡି.ଏନ୍.ଏ. ଅଛି । ଆଉ ଗୋଟିଏ ପଦାର୍ଥ ରାଇବୋନିଉକ୍ଲିକ ଅମ୍ଳ (RNA) ପ୍ରୋଟିନ୍ ପ୍ରସ୍ତୁତ କରେ ।

ପୃଥିବୀର ଇତିହାସ ଭୂତାତ୍ତ୍ୱିକ ସମୟ ଅନୁସାରେ ଭାଗ କରାଯାଇଛି । ଜଳବାୟୁ ଓ ଫସିଲର ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନକୁ ଆଖିରେ ରଖି ଏହା କରାଯାଇଛି । ପୃଥିବୀର ଇତିହାସକୁ ପାଞ୍ଚୋଟି ଯୁଗରେ ବିଭକ୍ତ କରାଯାଇଛି । ସବୁଠାରୁ ପୁରୁଣା ଯୁଗ ହେଲା ଆର୍କିଓଜୋଇକ୍(Archaeozoic), ଯେଉଁ ସମୟରେ ପ୍ରଥମେ ସଂସାରରେ ଜୀବନ ଦେଖାଗଲା । ପ୍ରୋଟେରୋଜୋଇକ୍ (Proterozoic) ଯୁଗରେ, କଠିନ ଖୋଳ ଥିବା ଫସିଲ ଦେଖା ଦେଇ ନ ଥିଲା । ତା'ପରେ ଆସିଲା 'ପାଲିଓଜୋଇକ୍' (Palaeozoic) ସମୟ ଯେତେବେଳେ ଖୋଳ ଥିବା ଜୀବଙ୍କର ଆବିର୍ଭାବ ହେଲା । 'ପର୍ମିଆୟାନ' ଯୁଗରେ ଜୀବଜଗତର ସମୂହ ବିଲୋପ ହେଲା । 'ମେସୋଜୋଇକ୍' (Mesozoic) ଯୁଗରେ ପୁଣି ନୂଆ ଜୀବଜନ୍ତୁ ବିବର୍ତ୍ତନ ହୋଇ ଆବିର୍ଭାବ ହେଲା । 'କ୍ରେଟାସିୟସ' ଯୁଗରେ ଡାଇନୋସରମାନଙ୍କର ବହୁଳ ମୃତ୍ୟୁ ହେଲା । 'ସେନୋଜୋଇକ ' (Coenozoic) ଯୁଗ ଏପର୍ଯ୍ୟନ୍ତ ଚାଲିଛି । ତେବେ ମୋଟାମୋଟି ପାଲିଓଜୋଇକ୍ ସମୟରେ ବିଭିନ୍ନ ଆଦି ପ୍ରାଣୀ ଓ ମାଛ ପରି ମେରୁଦଣ୍ଡୀ ପ୍ରାଣୀମାନେ ଆବିର୍ଭାବ ହୋଇଥିଲେ । ମେସୋଜୋଇକ୍ ସମୟରେ ସରୀସୃପ ଏବଂ ଶେଷରେ ସିନୋଜୋଇକ୍ ସମୟରେ ପଦାର୍ପଣ କରିଥିଲେ ସ୍ତନ୍ୟପାୟୀ ପ୍ରାଣୀମାନେ । କ୍ରମାନ୍ୱୟ ଆବିର୍ଭାବ ହିଁ ସୂଚନା ଦିଏ ଜୀବ ଉତ୍ପତ୍ତିର କ୍ରମବିକାଶ । ଏକ ସମୟରେ ସମସ୍ତ ପ୍ରାଣୀ ବା ଉଦ୍ଭିଦ ଦେଖାଦେଇ ନ ଥିଲେ । ଆଉ ପ୍ରାଣୀଜଗତ୍‌ର ଶେଷରେ ପ୍ରତୀୟମାନ ହୋଇଥିଲେ ଶ୍ରେଷ୍ଠ ସ୍ତନ୍ୟପାୟୀ ପ୍ରାଣୀ ମନୁଷ୍ୟ । ଆଉ ମନୁଷ୍ୟ ପରେ କଣ ବା କେଉଁ ପ୍ରାଣୀ ଦେଖାଦେବ ତାହା ହିଁ ଜୀବବିତ୍‌ମାନଙ୍କ ପାଇଁ ହୋଇଛି ଗୋଟିଏ ବିରାଟ ଭାବନା ।



# ନ ଥାଏ କାହାକୁ ଭୟ, ସିଏ ପଶୁରାଜ ସିଂହ

## ସିଂହ : ଏକ ଅସାଧାରଣ ପ୍ରାଣୀ

ସର୍କସର ସିଂହର ଖେଳ ସତରେ କେତେ ମନମତାଣିଆ ! ହେଁ ଦେଖିଲେ ବଡ଼ ଭୟ ଲାଗେ । ସର୍କସରେ ସେଥିପାଇଁ ସିଂହ ବା ବାଘର ଖେଳ ଦେଖାଇବା ବେଳକୁ ଶକ୍ତ ଲୁହା ଜାଲି ମଧ୍ୟରେ ରଖି ଏମାନଙ୍କୁ ବିଭିନ୍ନ ଖେଳ ପ୍ରଦର୍ଶନ କରାଇବାକୁ ପଡ଼ିଯାଏ । ସେଥିପାଇଁ ଦର୍ଶକମାନେ ନିର୍ଭୟରେ ଖେଳ ଦେଖିଥାଆନ୍ତି । ଆଉ ତା ଛଡ଼ା ଜୀବ ଉଦ୍ୟାନ, ଅଭୟାରଣ୍ୟ ଓ ଜାତୀୟ ଉଦ୍ୟାନ ଆଦିରେ ମଧ୍ୟ ସିଂହମାନଙ୍କୁ ଦେଖିବାକୁ ମିଳେ । ସମୟ ଥିଲା ଏମାନଙ୍କ ସଂଖ୍ୟା ଅଧିକ ଥିଲାବେଳେ ଏମାନେ ଥିଲେ ଆମର ଜାତୀୟ ପଶୁ । କ୍ରମେ ଏମାନଙ୍କ ସଂଖ୍ୟା ଏପରି ଭାବରେ କମିଗଲା ଯେ, ତାହା ଏବେ ଆଉ ଆମ ଦେଶର ଜାତୀୟ ପଶୁ ଭାବରେ ପରିଗଣିତ ହୋଇ ନ ପାରି ତା ସ୍ଥାନ ଅଧିକାର କରିଛି ବାଘ । ଚାଲି ଚଳଣି,ଠାଣି, କାରବାର, ବ୍ୟବହାର ଓ ପ୍ରକୃତି ଆଦି ସତରେ ଅତି ଭିନ୍ନ ରକମର ଏ ସିଂହର । ପୁରାଣ, କବିତା, ଗପ ଓ ପଞ୍ଚତନ୍ତ୍ର ଆଦି ସବୁଠାରେ ଏ ପ୍ରାଣୀର ବର୍ଣ୍ଣନା ଲିପିବଦ୍ଧ ହୋଇଥିବାର ଦେଖାଯାଏ । ପ୍ରାଣିଜଗତ୍‌ର ନିର୍ଭୀକ ପ୍ରାଣୀ ଭାବରେ କିଏ ବୋଲି ପ୍ରଶ୍ନ କରାଗଲେ ତାର ଉତ୍ତର ହେଉଛି ସିଂହ । ଘଞ୍ଚ ଅରଣ୍ୟ ଅଭ୍ୟନ୍ତରରେ ଲୁଚି ଆତଯାତ ହେବା ତାଙ୍କର ଆଭିଜାତ୍ୟ ପଣିଆ ପ୍ରମାଣ କରିବ ନାହିଁ । ତେଣୁ ଜଙ୍ଗଲର ଖୋଲା ସ୍ଥାନରେ ତାଙ୍କ ନଅର ।


ସିଂହ

## ସିଂହର ବିସ୍ତୃତି

ସେ ଦିନ ଆଜି ନାହିଁ । ଦିନ ଥିଲା, ଯେତେବେଳେ ଏସିଆ ମାଇନର, ତୁର୍କୀ ଦକ୍ଷିଣରେ ସାଉଦି ଆରବ, ପଶ୍ଚିମରେ ଇରାକ, ଇରାନ ଓ ଆଫଗାନିସ୍ଥାନ ଓ ଭାରତର ଗୁଜରାଟ ଓ ମଧ୍ୟପ୍ରଦେଶାନ୍ତର୍ଗତ ନର୍ମଦା ନଦୀ ପର୍ଯ୍ୟନ୍ତ ଥିଲା ତାଙ୍କର ଚରା ଭୂମି । ତାଙ୍କରି ବଂଶଧର ସବୁ ଏବେବି ଆଫ୍ରିକା ମହାଦେଶର ଜଙ୍ଗଲରେ ରାଜୁତି କରୁଛନ୍ତି । ଗୁଜରାଟ ପ୍ରଦେଶ ସୌରାଷ୍ଟ୍ର ଅଞ୍ଚଳର ଗିର ଅଭୟାରଣ୍ୟକୁ ଛାଡ଼ିଦେଲେ ସେମାନଙ୍କର ବଂଶଧରମାନେ ଭାରତର ଅନ୍ୟ ଅଞ୍ଚଳରୁ ଲୋପ ପାଇଗଲେଣି । ଗିର ଜଙ୍ଗଲରେ ସେମାନଙ୍କର ସଂଖ୍ୟା କ୍ରମଶଃ ବଢ଼ିବାରେ ଲାଗିଛି । କିନ୍ତୁ ଉତ୍ତର ପ୍ରଦେଶର ଚନ୍ଦ୍ରପ୍ରଭା ଅଭୟାରଣ୍ୟରେ ସେମାନେ ନୂଆ ରାଜ୍ୟ ସ୍ଥାପନ କରିଛନ୍ତି । ତେବେ ଏସିଆ ମହାଦେଶର ଗିର ଜଙ୍ଗଲ ହିଁ ସିଂହମାନଙ୍କର ଶେଷ ପ୍ରାକୃତିକ ସ୍ଥାନ ।

ପଶୁରାଜ ସିଂହ ଭାରତର ଆଦିମ ପ୍ରାଣୀ କି ଅନ୍ୟ କେଉଁଠୁ ଆସି ଏହା ଭାରତରେ ପ୍ରବେଶ କରିଛି, ତା' କହିବା କଷ୍ଟକର । ସେ ଯାହାହେଉ, ଆଫ୍ରିକା କିମ୍ବା ଭାରତର ସମତଳ ଅଞ୍ଚଳ ହିଁ ସିଂହର ଆଦି ବାସସ୍ଥଳୀ ଥିବାର ମନେହୁଏ । ସିଂହଳ (ଏବର ଶ୍ରୀଲଙ୍କା ) ଦ୍ୱୀପର ନାମକରଣ ସିଂହ ହିଁ ପ୍ରକୃତ ସିଂହ ସହିତ କୌଣସି ସମ୍ପର୍କ ନାହିଁ । କାରଣ ସିଂହର ସେ ଦ୍ୱୀପରେ ଆଦୌ ପ୍ରବେଶ ହୋଇ ନାହିଁ ।

## ସିଂହର ବ୍ୟବହାର, ପରିବାର ଓ ଆକାର

ସିଂହ ନିଶାଚର । ଦିବାକାଳ ସେମାନଙ୍କର ବିଶ୍ରାମ ସମୟ । ରାତ୍ରି ଉପଗତ ହେଲେ ସେମାନଙ୍କର ଦୃଷ୍ଟିଶକ୍ତି, ଶ୍ରବଣଶକ୍ତି ଓ ଘ୍ରାଣଶକ୍ତି ଉଜ୍ଜୀବିତ ହୋଇ ଉଠେ । ତେଣୁ ରାତ୍ରିକାଳରେ ହିଁ ମୃଗପତି ମୃଗୟା ଉଦ୍ଦେଶ୍ୟରେ ଅଭିଯାନ କରେ । ପାଦରେ ତା'ର ପ୍ରକୃତିପ୍ରଦତ୍ତ ମାଂସଳ ଚର୍ମ ପାଦୁକା । ତେଣୁ ତାର ସତର୍କ ପଦକ୍ଷେପ କୌଣସି ଶବ୍ଦ ସୃଷ୍ଟି କରିବାର ସମ୍ଭାବନା ନ ଥାଏ ।

ପଶୁରାଜ ସିଂହର ପରିବାର କ୍ଷୁଦ୍ର । ଶାବକମାନଙ୍କୁ ଛାଡ଼ିଦେଲେ ପରିବାର ବୋଇଲେ ସେ ନିଜେ ଓ ଅନ୍ତଃପୁର ମଣ୍ଡନ କରୁଥିବା ଦୁଇ ତିନିଟି ସିଂହୀ । ପରିବାରର ସର୍ବକନିଷ୍ଠ ବୟସ ହୁଏତ ୨ରୁ ୩ ବର୍ଷ ମଧ୍ୟରେ ହୋଇଥାଏ । ୪/୫ ମାସର ସିଂହ ଶାବକ ସେମାନଙ୍କର ମା'ର ଗହଣରେ ଚଳପ୍ରଚଳ ହେଉଥିବାର ଦେଖାଯାଏ । ସିଂହୀ ଜଙ୍ଗଲର ରାଜେଶ୍ୱରୀ, ଲାଳିତ୍ୟମୟୀ ତଥା ଦାମ୍ପାର୍ଯ୍ୟଗର୍ବିଣୀ । ରାଜମହିଷୀ ସେ । ତେଣୁ ତା'ର ସମ୍ମୁଖକୁ ଆସିଯିବା ଭଳି ଅସମ୍ମାନଜନକ ଓ ଅଶୋଭନୀୟ ଆଚରଣ ପ୍ରଦର୍ଶନର ପରିଣାମ ପ୍ରତି ସତର୍କ କରାଇ ଦେବାପାଇଁ ତା'ର ଦୀପ୍ତିମନ୍ତ ଚକ୍ଷୁ ଯୁଗଳ ସଦା ଜାଗ୍ରତ ।

ସିଂହ ବପୁବନ୍ତ । ସେ ଏକ ଦୁର୍ଦ୍ଧର୍ଷ ଯୋଦ୍ଧା । ଗ୍ରୀବା ଦେଶର ତେଜୋଦୀପ୍ତ କେଶର ତା'ର ଶୋଭା ସୌଷ୍ଠବକୁ ଆହୁରି ଆକର୍ଷଣୀୟ କରି ତୋଳେ । ଅପ୍ରାପ୍ତବୟସ୍କ ସିଂହମାନଙ୍କର କେଶର ଫିକା ବାଦାମୀ ରଙ୍ଗର ହୋଇଥିବା ସ୍ଥଳେ ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଏହା ଗାଢ଼ ଧୂସର ବର୍ଣ୍ଣ ଧାରଣ କରେ । ସିଂହୀ କେଶର ଭୂଷଣରୁ ବଂଚିତ । ସିଂହ ଓ ସିଂହୀ ଉଭୟଙ୍କର ଚିବୁକ,ଗଳାଦେଶ ଏବଂ ଚକ୍ଷୁର ଚତୁଃପାର୍ଶ୍ୱରେ କ୍ଷୁଦ୍ର କ୍ଷୁଦ୍ର କେଶରାଜି ଶୋଭା ପାଉଥାଏ । ଚକ୍ଷୁଦ୍ୱୟ ତୀର୍ଯ୍ୟକ୍ ଭାବରେ ଅବସ୍ଥାପିତ । ଚକ୍ଷୁ ତୋଳାର ବର୍ଣ୍ଣ ପୀତ କିମ୍ବା ବାଦାମୀ । ଦୀର୍ଘ ଲାଞ୍ଜର ଅଗ୍ର ଭାଗରେ ଶୋଭାପାଏ କୃଷ୍ଣ ରଙ୍ଗର କେଶଗୁଚ୍ଛ । ଏମାନେ ଲାଞ୍ଜ ହଲାଇବା ଶୁଭସୂଚନା ନୁହେଁ । ଏହା ସେମାନଙ୍କର ଅସ୍ୱସ୍ତି ବା କ୍ରୋଧର ସୂଚନା ଦେଇଥାଏ । ପ୍ରାପ୍ତବୟସ୍କ ସିଂହର ଲମ୍ୱ ଅଢ଼େଇ ମିଟରରୁ ତିନି ମିଟର ପର୍ଯ୍ୟନ୍ତ ଓ ଉଚ୍ଚତା,ଭୂମିଠାରୁ କାନ୍ଧ ପର୍ଯ୍ୟନ୍ତ ପ୍ରାୟ ଏକ ମିଟରରୁ କିଛି ଊର୍ଦ୍ଧ୍ୱ ହୋଇଥାଏ । ସେହି ଅବସ୍ଥାରେ ଏହାର ଓଜନ ୧୮୦ ରୁ ୨୨୫ କିଲୋଗ୍ରାମ ପର୍ଯ୍ୟନ୍ତ ହୋଇପାରେ । ସିଂହର ଜୀବନକାଳ ୨୫ ରୁ ୩୦ ବର୍ଷ ।

## ସିଂହର ଶିକାର

ଗିର ଅରଣ୍ୟରେ ସିଂହ ନିଜର ପରିବାର ନେଇ ବାସ କରେ । ଏମାନେ ସାଧାରଣତଃ ହରିଣ ,ସମ୍ବର,ନୀଳଗାଈ,ବାର୍‌ହା,ଗାଈ ଓ ମଇଁଷିମାନଙ୍କୁ ଶିକାର କରିଥାନ୍ତି । ସିଂହ ଓ ସିଂହୀ ଏକତ୍ର ଶିକାର ପର୍ବରେ ଭାଗ ନିଅନ୍ତି । ବାଦ୍ୟ ବଜାଇ ପଶୁ ଘଉଡ଼ାଇ ଶିକାର କରିବା ରୀତିରେ ସିଂହ ଗର୍ଜନ କରି ପଶୁମାନଙ୍କୁ ଘଉଡ଼ାଇ ଆଣେ । ପଶୁମାନଙ୍କର ଖସିଯିବା ରାସ୍ତାଗୁଡ଼ିକରେ ସିଂହୀମାନେ ଛକି ରହିଥାନ୍ତି । ଶିକାର ଛାନିଆରେ ଦୌଡ଼ି ପଳାଉଥିବା ବେଳେ ନିକଟସ୍ଥ ସିଂହୀଟି ଶିକାର ଉପରକୁ ଲମ୍ଫ ମାରି ଶିକାରକୁ କରାଗତ କରିଥାଏ । ପ୍ରାପ୍ତବୟସ୍କା ସିଂହୀଟି ମୁଖ୍ୟତଃ ଶିକାର କରିବାର ଦାୟିତ୍ୱ ବହନ କରେ । ଅନ୍ୟମାନେ କଦବା କେମିତି ତା'ର ସହାୟତା କରିଥାନ୍ତି । ମାତ୍ର ଶିକାରକୁ ଉପଭୋଗ କରିବାରେ ସିଂହର ପାଳି ଆଗ । ସେ ନିଜେ ଆଗେ ପେଟେ ଖାଇସାରିଲା ପରେ ସିଂହୀ ବା ତା'ର ଶାବକଗୁଡ଼ିକ ଖାଇବାର ସୁଯୋଗ ପାଆନ୍ତି । କିଛି ଖାଦ୍ୟ ଗ୍ରହଣ ନ କରି ସିଂହ ପରିବାର ଅନ୍ତତଃ ୫/୬ ଦିନ ଏପରିକି ୧୦ ଦିନ ପର୍ଯ୍ୟନ୍ତ ଉପବାସ ସହ୍ୟ କରିପାରେ । କିନ୍ତୁ ଖାଦ୍ୟ ମିଳିଲେ ଏତେ ପରିମାଣରେ ଭକ୍ଷଣ କରିଥାଏ ଯେ, ଚଳପ୍ରଚଳ ହେବା କଷ୍ଟକର ହୋଇପଡ଼େ । ଗୋଟିଏ ଗୋଟିଏ ସିଂହ ୨୭ ରୁ ୩୬ କେଜି ପର୍ଯ୍ୟନ୍ତ ମାଂସ ଅନାୟାସରେ ଖାଇଦେଇପାରେ । ସିଂହର ଏତେ ବଳ ଯେ, ତା'ର ଶରୀର ଓଜନର ଦୁଇଗୁଣ ଓଜନ ବିଶିଷ୍ଟ ଶିକାରକୁ

ପାଟିରେ କାମୁଡ଼ି ଧରିବା ସଙ୍ଗେ ସଙ୍ଗେ ପିଠିରେ ପକାଇ ଖୁବ୍ ଦ୍ରୁତ ବେଗରେ ଦୌଡ଼ି ପଳାଇବା ତା' ପକ୍ଷେ ଅତି ସହଜ । ତେବେ ସିଂହ ନିଜର ଖାଦ୍ୟପାଇଁ ହିଁ କେବଳ ଶିକାର କରିଥାଏ । ଅନ୍ୟ ପଶୁମାନଙ୍କୁ ଅଯଥା ମାରିପକାଏ ନାହିଁ ।

## ସିଂହର ପରିସର

ସିଂହ ନିଜ ରାଜ୍ୟର ଅଖଣ୍ଡତା ରକ୍ଷା କରିବାରେ ସର୍ବଦା ଆଗ୍ରହୀ । ନିଜ ରାଜ୍ୟର ସୀମା ଭିତରକୁ ଅନ୍ୟ ସିଂହର ଅନୁପ୍ରବେଶକୁ ବାଧା ଦେବାବେଳେ ସେ ବଡ଼ ହିଂସ୍ର ହୋଇପଡ଼େ । ସେମାନଙ୍କର ଗର୍ଜନରେ ବନଭୂମି ଥରିଉଠେ । ପଶୁପକ୍ଷୀ ତ୍ରସ୍ତ ଚକିତ ହୋଇ ପଳାୟନ କରନ୍ତି । ନିଜ ରାଜ୍ୟର ସୀମା ସାବ୍ୟସ୍ତ କରିବାପାଇଁ ବୁଦା ବା ଉଚ୍ଚାଳିଆ ସ୍ଥାନରେ ମୂତ୍ରତ୍ୟାଗ କରି ତା'କୁ ସୀମାନ୍ତ ସୂଚନା ସ୍ତମ୍ଭ ରୂପେ ପ୍ରତିପାଦିତ କରିଥାଏ ସେ । ତା'ର ମୂତ୍ରର ଗନ୍ଧ ଅତି ଉଗ୍ର । ଅନ୍ୟ ସିଂହର ମୂତ୍ରର ଗନ୍ଧ ସହ ଏହାର ଗୁଣାଗତ ପାର୍ଥକ୍ୟ ଥିବାରୁ କୌଣସି ସିଂହର ଇଲାକା ବାରିବାରେ ଅନ୍ୟ ସିଂହମାନେ ଅସୁବିଧାରେ ପଡ଼ନ୍ତି ନାହିଁ । ସିଂହର ହୃଦୟଥରା ଗର୍ଜନ ମାଇଲ ମାଇଲ ଧରି ଶୁଣାଯାଇପାରେ । ଏହା ମୁଖ୍ୟତଃ ନିଜ ରାଜ୍ୟର ଅଧିକାରକୁ ସାବ୍ୟସ୍ତ କରିବା ପାଇଁ ଉଦ୍ଦିଷ୍ଟ । ନିଜର ସ୍ଥିତି ସମ୍ପର୍କରେ ସୂଚନା ଦେବା ସଙ୍ଗେ ସଙ୍ଗେ ଶିକାରକୁ ଭୟଭୀତ କରାଇ ଛକିଥିବା ସିଂହୀ ଆଡ଼କୁ ଘଉଡ଼ାଇ ଆଣିବାରେ ଏହା ସହାୟକ ହୋଇଥାଏ । ସିଂହୀକୁ ସଙ୍ଗରେ ନ ନେଇ ଏକୁଟିଆ ବାହାରି ଯାଇଥିଲେ ସିଂହ ନିଜେ ଶିକାର କରିବାକୁ ବାଧ ହୁଏ । ବେଳେବେଳେ ଦୁଇ ତିନି ଭାଇ ଏକତ୍ର ବୁଲି ବାହାରିବା ଅବକାଶରେ ମିଳିମିଶି ଶିକାର କରିଥାନ୍ତି ଓ ସମାନ ଭାଗରେ ଭାଗକରି ଶିକାରକୁ ଉପଭୋଗ କରନ୍ତି । ସିଂହ ଦୁଇଭାଇଙ୍କ ମଧ୍ୟରେ ରହିଥିବା ଶୃଙ୍ଖଳା ଦେଖିଲେ ବିସ୍ମିତ ହେବାକୁ ପଡ଼େ । ଜଣେ ଭାଇ ଶିକାର ଭକ୍ଷଣ କରୁଥିବା ସମୟରେ ଅନ୍ୟ ଭାଇଟି ଶିକାରଠାରୁ ଖଣ୍ଡେ ଦୂରରେ ବିପରୀତ ଦିଗକୁ ମୁହଁ କରି ବସିଥାଏ । ପ୍ରଥମ ସିଂହଟି ଶିକାରର ଠିକ୍ ଅର୍ଦ୍ଧେକ ଖାଇସାରି ଉଠି ଛିଡ଼ା ହୋଇପଡ଼େ । ଆସ୍ତେ ଆସ୍ତେ ତା'ର ଭାଇ ପାଖକୁ ଯାଇ ଭାଇ ଦେହରେ ମୁଣ୍ଡ ଘଷି "ମୋର ଖିଆ ସରିଲା, ଏବେ ତୁ ଖାଇ ବସ" ବୋଲି ସୂଚନା ଦିଏ । ପରିବାରର ଗହଣରେ ଥିଲାବେଳେ,ଶିକାର ହେଲା କି ନ ହେଲା ବା ଆଜି କି ପ୍ରକାର ମଣୋହି ହେବ ସେ ସଂକ୍ରାନ୍ତରେ ସିଂହର କୌଣସି ମୁଣ୍ଡବଥା ନ ଥାଏ । ଖାଦ୍ୟ ବ୍ୟବସ୍ଥାର ଦାୟିତ୍ୱ ପୂରାପୂରି ସିଂହୀର କହିଲେ ଚଳେ । ସିଂହର ବିରାଟ ବପୁ ଶତ୍ରୁଠାରେ ଭୀତସଞ୍ଚାର କରିବା ପାଇଁ ଓ ସିଂହୀ ମନରେ ନିଜର ଆଞ୍ଚଳିକ ଅଖଣ୍ଡତାର ସୁରକ୍ଷା ପାଇଁ ସାମର୍ଥ୍ୟର ପ୍ରତିଶ୍ରୁତି ଦେବାପାଇଁ ଅଭିପ୍ରେତ । କିନ୍ତୁ ସିଂହୀର

କ୍ଷୀଣକାୟ ଶରୀର ବୁଦା ସନ୍ଧିରେ ଲୁଚି ରହିବା ଓ ଶିକାରର ପଶ୍ଚାଦ୍ଧାବନ କରି ଶିକାରକୁ କରାୟତ୍ତ କରିବା ପାଇଁ ଉଦ୍ଦିଷ୍ଟ ।

ଗିର ଜଙ୍ଗଲରେ କେତେକ ସିଂହ ଯାଯାବର ଜୀବନ ଯାପନ କରୁଥିବାର ଦେଖାଯାଏ । ଦୀର୍ଘ ୧୫୦୦ ବର୍ଗ କିଲୋମିଟର ଅଞ୍ଚଳରେ ବର୍ଷ ସାରା ସେମାନେ ଘୂରି ବୁଲିବାର ଦେଖାଯାନ୍ତି । ମୁଖ୍ୟତଃ ଅପ୍ରାପ୍ତ ବୟସ୍କ ସିଂହମାନଙ୍କଠାରେ ଏହିଭଳି ବ୍ୟବହାର ପରିଲକ୍ଷିତ ହୋଇଥାଏ । ପରିବାରରେ ରହିବା ପାଇଁ ସେମାନେ ବୋଧହୁଏ ବୀତସ୍ପୃହ । ଦ୍ୱିତୀୟତଃ ଅଢେଇ ବର୍ଷରୁ ବେଶି ବୟସ ହୋଇଗଲେ ସେମାନଙ୍କୁ ପରିବାରରୁ ବହିଷ୍କାର କରି ଦିଆଯାଏ । ଶୌର୍ଯ୍ୟର ପରାକାଷ୍ଠା ବଳରେ ସେମାନେ ହୁଏତ ଅନ୍ୟ କୌଣସି ଅଞ୍ଚଳରେ ନିଜର ରାଜ୍ୟ ପ୍ରତିଷ୍ଠା କରନ୍ତି ବା ମୃତ୍ୟୁଯୋଗୁଁ ପୁରୁଷବିହୀନ ହୋଇପଡ଼ିଥିବା କୌଣସି ସିଂହ ପରିବାରର ନେତୃତ୍ୱ ଗ୍ରହଣ କରନ୍ତି ବା ସମ୍ମୁଖ ସଂଗ୍ରାମରେ ଅନ୍ୟ ପୁରୁଷ ସିଂହକୁ ପରାସ୍ତ କରି ତା' ରାଜ୍ୟରେ ଅଧିଷ୍ଠିତ ହୁଅନ୍ତି ।

ଗିର ଅରଣ୍ୟର ସିଂହ ବଡ଼ ରୁଚିମନ୍ତ ଓ ପରିଷ୍କାର ପରିଚ୍ଛନ୍ନ । ସେମାନେ ସାଧାରଣତଃ ସଦ୍ୟ ଶିକାରର ମାଂସ ହିଁ ଖାଇଥାନ୍ତି । ଶିକାରଟି ସୁସ୍ଥ ସବଳ ହୋଇ ନ ଥିଲେ ତା ପରେ କୌଣସି ରୋଗ ଲକ୍ଷଣର ସୂଚନା ମିଳୁଥିଲେ, ସିଂହୀ ସେପରି ଜନ୍ତୁକୁ ଶିକାର କରେ ନାହିଁ । କିନ୍ତୁ ଆଫ୍ରିକା ଜଙ୍ଗଲର ସିଂହ ପଚିସଢ଼ି ଯାଇଥିବା ମୃତ ଜନ୍ତୁଙ୍କୁ ମଧ ଭକ୍ଷଣ କରିବାର ଦେଖାଯାଏ ।

## ସିଂହର ପ୍ରଜନନ ଓ ଛୁଆ

ପାଞ୍ଚ ବର୍ଷ ବୟସ ବେଳକୁ ସିଂହ ସନ୍ତାନ ଉତ୍ପାଦନକ୍ଷମ ହେଉଥିବା ବେଳେ ସିଂହୀ ତିନି ଚାରି ବର୍ଷ ବେଳକୁ ସନ୍ତାନକ୍ଷମ ହୋଇଥାଏ । ଋତୁକାଳ ଉପସ୍ଥିତ ହେଲେ ଅଭିସାରିକା ସିଂହୀ ଏକ ନିର୍ଦ୍ଦିଷ୍ଟ ଧରଣର ଶବ୍ଦ କରିଆରେ ପୁରୁଷ ସିଂହକୁ ପ୍ରେମ ସମ୍ଭାଷଣ ଜଣାଏ । ଏହି ସମୟରେ ସିଂହୀ ଶରୀରରୁ ଏକ ନିର୍ଦ୍ଦିଷ୍ଟ ଧରଣର ଗନ୍ଧ ବାହାରେ । ଏହି ଗନ୍ଧ ଦ୍ୱାରା ଆକୃଷ୍ଟ ହୋଇ ସିଂହ ତା'ର ପ୍ରେମିକା ସହିତ ମିଳିତ ହେବାପାଇଁ ଉତଲା ହୋଇଉଠେ । ବେଳେବେଳେ ନିଜର ମୂତ୍ର ଓ ମଳଦ୍ୱାର ସନ୍ନିକଟ ଗ୍ରନ୍ଥିମାନଙ୍କରୁ କ୍ଷରିତ ଏକ ରସର ମିଶ୍ରଣକୁ ସିଂହୀ ଆଖପାଖର ବଣ ବୁଦାରେ ଲେପିଦିଏ । ଏହି ଗନ୍ଧ ବାରି ପୁରୁଷ ସିଂହ ସିଂହୀର ସନ୍ଧାନରେ ତତ୍ପର ହୋଇପଡ଼େ । ସିଂହୀ ମନଲାଖି ସିଂହ ମିଳିଗଲେ ସେ ଉଭୟ ସେମାନଙ୍କ ଅକ୍ତିଆରରେ ରହିଥିବା ଅଞ୍ଚଳର କୌଣସି ଏକ ଜଳଉତ୍ସର ନିକଟବର୍ତ୍ତୀ ନିଭୃତ ସ୍ଥାନକୁ ଅଭିସାର ପାଇଁ ଅପସରି ଯାଆନ୍ତି । ଏହି ମିଳନ ବେଳାରେ ସିଂହ ଆଦୌ ସିଂହୀର ପାଖଛଡ଼ା ହୁଏ ନାହିଁ । ନିଜର ଅମାପ

ସ୍ନେହଶ୍ରଦ୍ଧା ସେ ସିଂହୀ ଉପରେ ଢାଳିଦିଏ । ତା'ର ପୌରୁଷ ତଥା ସିଂହୀ ପ୍ରତି ତା'ର ସାମାଜିକ କର୍ତ୍ତବ୍ୟ ପାଳନ କରିବାରେ ପ୍ରତିଶ୍ରୁତି ଦେଇପାରିବ ବୋଲି ସେ ସୂଚେଇ ଦିଏ । ପ୍ରେମର ନିଦର୍ଶନ ସ୍ୱରୂପ ସିଂହୀର ପୃଷ୍ଠ ଓ ଗ୍ରୀବାଦେଶକୁ ସେ ବାରମ୍ବାର ଚାଟିବାରେ ଲାଗେ । ସିଂହୀର ମନୋରଞ୍ଜନ ପାଇଁ ତା' ସାଙ୍ଗରେ ବିଭିନ୍ନ କ୍ରୀଡ଼ାରେ ମଜ୍ଜିଯାଏ ସେ । ସେମାନଙ୍କର ଏହି ଅଭିସାର ସମୟରେ ପରିବାରର ଅନ୍ୟମାନେ ଏହି ଗୋପନୀୟ ବ୍ୟାପାରରେ କୌଣସି ବ୍ୟାଘାତ ସୃଷ୍ଟି କରନ୍ତି ନାହିଁ । ସେମାନଙ୍କର ମିଳନ ପ୍ରକ୍ରିୟା ତିନିରୁ ସାତିଦିନ ଧରି ଲାଗିରହେ । ମିଳନାନ୍ତେ ସିଂହ ଓ ସିଂହୀ ପରସ୍ପର ଠାରୁ ବିଚ୍ଛିନ୍ନ ହୋଇଯାଆନ୍ତି । ସିଂହୀ ତା'ର ପରିବାର ସହ ଯୋଗ ଦିଏ,କିନ୍ତୁ ସନ୍ତାନ ଜନ୍ମ ସମୟ ଉପସ୍ଥିତ ହେବାମାତ୍ରେ ସେ ଏକୁଟିଆ ଏକ ବୁଦା ଉହାଡ଼କୁ ଚାଲିଯାଏ ।

ସିଂହୀର ଗର୍ଭକାଳ ୯୨ ରୁ ୧୧୩ ଦିନ, ଥରକେ ଏହା ଏକରୁ ଚାରିଟି ପର୍ଯ୍ୟନ୍ତ ବା ବେଳେବେଳେ ପାଞ୍ଚ ଛଅଟି ପର୍ଯ୍ୟନ୍ତ ଶାବକଙ୍କୁ ଜନ୍ମ ଦିଏ । ଜନ୍ମ ହେବାର ୨୪ ଘଣ୍ଟା ପର୍ଯ୍ୟନ୍ତ ଶାବକଗୁଡ଼ିକ ବଡ଼ ଦୁର୍ବଳ ହୋଇଥାଆନ୍ତି ଓ ସେମାନଙ୍କର ଆଖି ଫିଟି ନ ଥାଏ । କିନ୍ତୁ ତିନି ଦିନ ପରେ ସେମାନଙ୍କର ଆଖି ସମ୍ପୂର୍ଣ୍ଣ ଖୋଲିଯାଏ । ଶୈଶବାବସ୍ଥାରେ ମା'ର ସ୍ତନ୍ୟପାନ ହିଁ ଶାବକମାନଙ୍କର ମୁଖ୍ୟ ଖାଦ୍ୟ ।

ମା' ସିଂହୀ ବେଳେବେଳେ ନିଜର ଛୁଆମାନଙ୍କୁ ଛାଡ଼ି ଖାଦ୍ୟ ଅନ୍ୱେଷଣରେ କିମ୍ବା ତୃଷାନିବାରଣ ପାଇଁ ଅଳ୍ପ ସମୟ ପାଇଁ ବାହାରକୁ ଯାଇଥାଏ । ତା'ର ଏହି ଅନୁପସ୍ଥିତି କାଳରେ ପରିବାରର ଅନ୍ୟ କେହି ଶାବକମାନଙ୍କର ଦେଖାଶୁଣା କରେ । ଅନ୍ୟ କେହି ନ ମିଳିଲେ, ଶାବକମାନଙ୍କର ଚାରିପଟେ ସିଂହୀ ବୃତ୍ତାକାରରେ ମୂତ୍ରତ୍ୟାଗ କରି ଚାଲିଯାଏ । ଏହି ମୂତ୍ରଗନ୍ଧ ଯୋଗୁଁ ଚିତାବାଘ ବା ଗଧିଆ ଆଦି ଶାବକମାନଙ୍କ ନିକଟକୁ ଆସିବା ପାଇଁ ଭୟ କରନ୍ତି ।

## ସିଂହର ଅପତ୍ୟ ଯତ୍ନ

ସିଂହୀ ପରିବାରରେ ପରସ୍ପର ପ୍ରତି ସମ୍ପର୍କ ବଡ଼ ନିବିଡ଼ । ଛୁଆଛାଡ଼ି ସିଂହୀ ଶିକାର ଉଦ୍ଦେଶ୍ୟରେ ବାହାରକୁ ଯାଇଥିବା ସମୟରେ ଅନ୍ୟ ସିଂହୀମାନେ ଛୁଆମାନଙ୍କର ଦେଖାଶୁଣା କରନ୍ତି । ତେଣୁ ଛୁଆମାନଙ୍କୁ ଧରି ବୁଲୁଥିବା ସିଂହୀ ସବୁ ସମୟରେ ସେମାନଙ୍କର ମା' ବୋଲି ଧରିନେବା ଭୁଲ୍ ହେବ । ସିଂହୀ ବଡ଼ ଶୃଙ୍ଖଳାପ୍ରିୟ । ତା'ର ଦୃଢ଼ ଶୃଙ୍ଖଳାର ନିୟମଗୁଡ଼ିକୁ ଶିଶୁମାନେ ପାଳନ କରିବାକୁ ବାଧ୍ୟ । ମା' ନ ଥିଲା ବେଳେ ଶିଶୁମାନେ କୌଣସି ଶବ୍ଦ କରିବା ନିୟମବିରୁଦ୍ଧ । କାରଣ ମା'ର ଅନୁପସ୍ଥିତିରେ ସେମାନଙ୍କର ଏହି ଶବ୍ଦ ସେମାନଙ୍କୁ ବିପଦରେ ପକାଇବାର ସମ୍ଭାବନା ଥାଏ । ଏକ

ଧୀର ଶବ୍ଦରେ ନିଜର ଉପସ୍ଥିତି ଜଣାଇସାରିଲା ପରେ ସିଂହ ଶାବକମାନେ କ୍ଷୀଣ 'ମି...ଆ...ଉ' 'ମି...ଆ...ଉ' ଶବ୍ଦ କରି ବୁଦା ଉହାଡ଼ରୁ ମା' ନିକଟକୁ ଆସିଯାଆନ୍ତି । ମା'କୁ ଛାଡ଼ି କିଛି ଦୂର ଖେଳିବାକୁ ଚାଲିଯାଇଥିଲେ ବି ପ୍ରତି ଚାରି ପାଞ୍ଚ ମିନିଟ୍‌ରେ ଥରେ ଲେଖାଏଁ ମା' ପାଖକୁ ଦୌଡ଼ି ଆସି ହାଜିରା ପକାଇ ପୁଣି ଖେଳିବା ପାଇଁ ବାହାରି ଯାଆନ୍ତି । ଫେରିବାରେ ଡେରି ହେଲେ ମା' ରାଗରେ ଘୁମୁରି ଉଠେ ଓ ସାଙ୍ଗସାଥୀ ଶାବକମାନେ ମା' ପାଖକୁ ଦୌଡ଼ିଆସି ଅନୁତପ୍ତ ହେଲାଭଳି ବ୍ୟବହାର ପ୍ରଦର୍ଶନ କରନ୍ତି । ସେମାନଙ୍କର ଖେଳକୁଦ ବଡ଼ ଆମୋଦଜନକ । କେତେ ରଙ୍ଗରେ ସେମାନେ ଖେଳରେ ମାତି ଥାଆନ୍ତି, ତା' ଦେଖିବାର କଥା । ବେଳେବେଳେ ସେମାନେ ମା' ଉପରକୁ ଚଢ଼ିଯାଆନ୍ତି । ମା'ର ଲାଞ୍ଜ ଓ କାନକୁ କାମୁଡ଼ି ଧରନ୍ତି ଓ ମା' ସହିତ ଲୁଚକାଳି ଖେଳ ଆରମ୍ଭ କରି ଦିଅନ୍ତି ।

ଗିର ଜଙ୍ଗଲରେ ଏହି ରାଣୀ ବଡ଼ ମମତାମୟୀ । ଶିଶୁମାନଙ୍କର ରକ୍ଷଣାବେକ୍ଷଣ ଓ ଖାଦ୍ୟ ବ୍ୟବସ୍ଥାର ତଦାରଖ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଶିକାର କରିବା ଓ ଜଙ୍ଗଲ ଜୀବନକୁ ଆଦରି ବଞ୍ଚି ରହିବା ପାଇଁ ଦରକାର ପଡୁଥିବା ସମସ୍ତ କଳା ସମ୍ବନ୍ଧରେ ସେ ସେମାନଙ୍କୁ ଶିକ୍ଷା ଦେଇଥାଏ । ତା'ର ଶାବକମାନଙ୍କୁ ଆକ୍ରମଣ କରି ସିଂହୀ କବଳରୁ ବର୍ତ୍ତିଯିବା ପ୍ରାୟ ବିରଳ । ସିଂହ ଛୁଆଗୁଡ଼ିକ ମାଆ ପାଖରେ ପ୍ରାୟ ଦୁଇରୁ ଅଢ଼େଇ ବର୍ଷ ପର୍ଯ୍ୟନ୍ତ ରହନ୍ତି । ତିନିବର୍ଷ ବେଳକୁ ଅଣ୍ଡିରା ଛୁଆଗୁଡ଼ିକର ବେକରେ କେଶର ଉଠିବାକୁ ଆରମ୍ଭ କରେ ଓ ପାଞ୍ଚ ବର୍ଷ ବୟସ ବେଳକୁ ସେମାନଙ୍କର ଶରୀରର ପୂର୍ଣ୍ଣ ବିକାଶ ଘଟିଥାଏ ।



## ସିଂହର ପ୍ରାଧାନ୍ୟ

ନିଜର ସୁରକ୍ଷା ପାଇଁ ବାଘ ତତ୍ପରତାରେ କୌଣସି ତ୍ରୁଟି କରେ ନାହିଁ । କିନ୍ତୁ ସିଂହ ନିଜପ୍ରତି ବଡ଼ ବୀତସ୍ପୃହ । ତା'ର ଏହି ବେଖାତିରପଣିଆଁ ଓ ଆଭିଜାତ୍ୟର ଢଙ୍ଗ ଯୋଗୁଁ ସିଂହ ଶିକାର କିଛି କଷ୍ଟକର ବ୍ୟାପାର ନୁହେଁ । ତା'ର ଗର୍ବ ଓ ଦାମ୍ଭିକତା ଦୋଷରୁ ହିଁ ତା'ର

ବଂଶ ଆଜି ଲୁପ୍ତ ପ୍ରାୟ । ସିଂହ ବଡ଼ ନିରୀହ ପ୍ରାଣୀ । ତେଣୁ ତାକୁ ପୋଷା ମନାଇବା ବଡ଼ ସହଜ । ଏଇଥିପାଇଁ ସର୍କସ ପାର୍ଟିରେ ବାଘ ଅପେକ୍ଷା ସିଂହକୁ ଅଧିକ ପସନ୍ଦ କରାଯାଏ ।

ବେଦ ଓ ଅନ୍ୟାନ୍ୟ ଶାସ୍ତ୍ରରେ ସିଂହ ସମ୍ବନ୍ଧରେ ବହୁ ଉଲ୍ଲେଖ ରହିଛି । ମା' ଦୁର୍ଗା ସିଂହବାହିନୀ । ଦଶାବତାର କଳ୍ପନାର ଏକ ଅବତାରରେ ଭଗବାନ୍ ସିଂହ ଶରୀର ଧାରଣ କରି ନରସିଂହ ରୂପେ ଅବତୀର୍ଣ୍ଣ ହୋଇଥିଲେ । ସିଂହ ସାହସ ଓ ଶୌର୍ଯ୍ୟର ପ୍ରତିନିଧି । ତେଣୁ ରାଜପୁତ,ଶିଖ ଓ କ୍ଷତ୍ରିୟମାନେ ନିଜ ନାମ ସହ ''ସିଂହ'' ବା ''କେଶରୀ'' ଆଦି ବଂଶ ଉପାଧି ଧାରଣ କରିଥାନ୍ତି । ''ସିଂହ'' ଶବ୍ଦର ସଂଯୋଗ ଶ୍ରେଷ୍ଠତ୍ୱ ଓ ଗୁରୁତ୍ୱ ପ୍ରତିପାଦନ କରିବାକୁ ଉଦ୍ଦିଷ୍ଟ । ପ୍ରଧାନ ପ୍ରବେଶ ଦ୍ୱାରକୁ ''ସିଂହଦ୍ୱାର'', ବୀରର ହୁଙ୍କାରକୁ ''ସିଂହନାଦ'',ସର୍ବାଙ୍ଗ ସୁନ୍ଦର ଦୃଢ଼ ବପୁ ବିଶିଷ୍ଟ ଶରୀରକୁ ''ସିଂହସଂହନନ'', ରାଜଗାଦିକୁ ''ସିଂହାସନ'' ଓ ପୁଙ୍ଖାନୁପୁଙ୍ଖ ପର୍ଯ୍ୟାଲୋଚନାକୁ ''ସିଂହାବଲୋକନ'' ଭାବରେ ନାମିତ କରି ଆମେ ପଶୁରାଜ ସିଂହ ପ୍ରତି ଆମର ସମ୍ମାନ ପ୍ରଦର୍ଶନର ସୂଚନା ଦେଇଛୁ । ସାହସୀ ଓ ବଳବାନ୍ ଯୋଗୁଁ ପୁରୀ ଶ୍ରୀମନ୍ଦିର ପୂର୍ବ ଦ୍ୱାରରେ ଅବସ୍ଥାନ କରିଥିବା ସିଂହ ଦୁଇଟି ମନ୍ଦିରର ଶୋଭା ବର୍ଦ୍ଧନ କରିବା ସହ ମନ୍ଦିରର ଜଗୁଆଳି ବା ସୁରକ୍ଷାକାରୀ ଭାବରେ ଦିନରାତି ଅନାଇ ରହିଥାଏ । ଏହି ସିଂହମାନଙ୍କ ଯୋଗୁଁ ପୂର୍ବ ଦ୍ୱାରଟି ଜଗନ୍ନାଥ ମନ୍ଦିରର ସିଂହଦ୍ୱାର ଭାବରେ ପରିଚିତ ତଥା ସମସ୍ତ ଯାତ୍ରୀମାନଙ୍କର ପ୍ରବେଶ ଦ୍ୱାର । ରଥଯାତ୍ରା ସମୟରେ ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ର ଠାକୁରଙ୍କର ଏ ଦ୍ୱାର ହୋଇଥାଏ ଯାତାୟତ ପଥ । ସିଂହ ଅବସ୍ଥାନ କରିଥିବା ଶ୍ରୀମନ୍ଦିରର ପୂର୍ବମୁହାଁ ସିଂହଦ୍ୱାର ନାମରେ ଗୀତ, ଗପ, ଲୋକକଥା, ପୁରାଣ ଓ ଏକାଙ୍କିକା ଆଦି ହିଁ ଏ ମୁଖ୍ୟଦ୍ୱାରର ପ୍ରାଧାନ୍ୟ ବଢ଼ାଇବାର କାରଣ ଏ ସିଂହମାନେ । ଏତିକିରେ ବି ସିଂହର ସ୍ଥିତି, ଅବସ୍ଥିତି ଓ ପରିସ୍ଥିତିର ସମାପ୍ତି ଘଟି ନାହିଁ । ଓଡ଼ିଶାର ସମସ୍ତ ଦେବାଳୟର କୌଣସି ନା କୌଣସି ସ୍ଥାନରେ ଏ ସିଂହ ସ୍ଥାନ ପାଇଥାଏ । ସିଂହ ଜାତୀୟ ପଶୁର ସମ୍ମାନରୁ ବଞ୍ଚିତ ହୋଇଥିଲେ ମଧ୍ୟ ଅଶୋକ ସ୍ତମ୍ଭର ଚତୁର୍ମୁଖୀ ସିଂହ ଓ ତା'ର ନିମ୍ନାଂଶରେ ଉଲ୍ଲିଖିତ ସୂକ୍ତି ''ସତ୍ୟମେବ ଜୟତେ'' ଆମର ଜାତୀୟ ପ୍ରତୀକ ସ୍ୱୀକୃତ । ସବୁଠାରୁ ବିସ୍ମୟର କଥା ଯେ ପୁରୀର ଗଜପତି ରାଜା ରଥଯାତ୍ରା ସମୟରେ 'ତାମଜାନ' ନାମକ ଯେଉଁ ପାଲିଙ୍କିରେ ବସି ଛେରାପହଁରା କରିବାକୁ ଯାଆନ୍ତି ସେ ପାଲିଙ୍କିର ସାମନାରେ ମଧ ଦୁଇ ପାର୍ଶ୍ୱରେ ଗୋଟିଏ କରି ସିଂହ ଥାଆନ୍ତି । ତାର ସୁରକ୍ଷା, ତାର ବଂଶବୃଦ୍ଧି ଓ ତାର ଆତଯାତ ପାଇଁ ଉପଯୁକ୍ତ ପରିବେଶର ସୃଷ୍ଟି ହିଁ ଆମ ସମସ୍ତଙ୍କ ଦାୟିତ୍ୱ ।



# ଟିକି ପୋକର ଦାମିକା ସୂତା

## ରେଶମ ସୂତା କଅଣ ?

ସେଦିନ ହୋଇଥାଏ ଗହ୍ମା ପୂର୍ଣ୍ଣମୀ । ଲୁସି ତା' ଭାଇ ସାନୁ ହାତରେ ବାନ୍ଧିଦେଲା ରାକ୍ଷୀଟିଏ । ମୁଣ୍ଡରେ ଚନ୍ଦନ ସିନ୍ଦୂର ଲଗାଇ ମିଠା ଖୁଆଇଦେଲା ସାନୁକୁ ।

ସାନୁ ହଠାତ୍ ଲୁସିକୁ ପଚାରିଲା- ''ଅପା ! ଏଇଟା କଅଣ ବାନ୍ଧିଦେଲୁ ମୋ ହାତରେ ?''

ଲୁସି କହିଲା-''ଏଇଟା ରାକ୍ଷୀ,ରେଶମ ସୂତାରେ ବନ୍ଧା ହେଇଛି । ରାକ୍ଷୀ ପୂର୍ଣ୍ଣମୀ ଦିନ ଭଉଣୀ ଏହାକୁ ଭାଇ ହାତରେ ସ୍ନେହରେ ବାନ୍ଧିଦିଏ ।''

''ରେଶମ ସୂତା କଅଣ୍ ? କେମିତି ତିଆରି ହୁଏ ?'' ସାନୁ ପୁଣି ପ୍ରଶ୍ନ କଲା ତା ଭଉଣୀକୁ ।

## ରେଶମ ସୂତାର ପ୍ରକାର

ଲୁସି କହିଲା-''ରେଶମ ସୂତା ଗୋଟିଏ ପୋକର ଖୋଳପା ବା କୋଷାରୁ ମିଳିଥାଏ । ସେ ପୋକର ନାଁ ''ରେଶମ ପୋକ'' ବା ''ସିଲ୍କ ମଥ୍'' । ଏ ପୋକ କୀଟପତଙ୍ଗ ଶ୍ରେଣୀର । ଦେଖିବାକୁ ପ୍ରଜାପତି ପରି । ଚାରିପ୍ରକାର ପୋକ ଏ ରେଶମ ପ୍ରସ୍ତୁତ କରିଥାଆନ୍ତି । ସେମାନେ ହେଲେ -ମୁଗା ରେଶମ,ଟସର ରେଶମ,ଏରି ରେଶମ ଓ ତୁତ୍ ବା ମଲ୍‌ବେରୀ ରେଶମ । ଏଗୁଡ଼ିକ ଭିନ୍ନ ରକମର । ରେଶମ ପୋକ ଲମ୍ବରେ ପ୍ରାୟ ଗୋଟିଏ ଇଞ୍ଚ । ଡେଣା



ଟିକି ପୋକ

ମେଲେଇ ବସିଲେ ତାଙ୍କ ଲମ୍ବ ୨ ରୁ ୩ ଇଞ୍ଚ ପର୍ଯ୍ୟନ୍ତ ହେବ । ଦେହର ରଙ୍ଗ ଦୁଧସର ପରି । ଡେଣା ଓ ଦେହସାରା ଧୂଳିପରି ଛୋଟ ଛୋଟ କାତି ଥାଏ । ଧରି ପକାଇଲେ ହାତରେ ଧଳା ଧଳା ଗୁଣ୍ଡ ଲାଗିଯାଏ ।

## ରେଶମ ମଥ୍‌ର ଜୀବନ ଚକ୍ର

ମାଈ ପୋକର ପେଟ ମୋଟା ଓ ଚଉଡ଼ା । ପେଟରେ ଥାଏ ପ୍ରାୟ ତିନି ଶହ ପର୍ଯ୍ୟନ୍ତ ଅଣ୍ଡା । ସେ ଅଣ୍ଡାଗୁଡ଼ିକ ପତ୍ର ଉପରେ ଦେଇଥାଏ । ଅଠାଳିଆ ହୋଇଥିବାରୁ ସେଗୁଡ଼ିକ ପତ୍ର ଉପରେ ମେଞ୍ଚା ହୋଇ ଲାଖିରହନ୍ତି । ପ୍ରଥମେ ଗୋଲାକାର ଅଣ୍ଡାଗୁଡ଼ିକ ଟିକିଏ ହଳଦିଆ ଦେଖାଯାଏ । ପରେ ଆସ୍ତେ ଆସ୍ତେ ସେଗୁଡ଼ିକ କଳା ପଡ଼ିଯାଏ । ଡିମ୍ବ ଗୁଡ଼ିକ ଫୁଟି ସେଥିରୁ ଶୁଁବାଳୁଆ ବାହାରନ୍ତି । ଏ ଶୁଁବାଳୁଆର ଦେହ ୧୨ ଭାଗରେ ବିଭକ୍ତ । ଏମାନେ ଏ ସମୟରେ ବହୁତ ଖାଆନ୍ତି । ଜଡ଼ା, ଶାଳ,ଓକ୍,ଡିମ୍ବିରି ଓ ବରପତ୍ର ଏମାନଙ୍କର ଖାଦ୍ୟ । ଏତେ ପରିମାଣରେ ଗଛଗୁଡିକର ପତ୍ର ଏମାନେ ଖାଆନ୍ତି ଯେ ଗଛକୁ ପୂରା ଲଣ୍ଡା କରିଦିଅନ୍ତି । ତେଣୁ ଏମାନଙ୍କୁ ପେଟୁ ଶୁଁବାଳୁଆ ମଧ୍ୟ କୁହାଯାଏ । ଚାରି ପାଞ୍ଚ ଦିନ ପରେ ଆଉ ନ ଖାଇ ଚୁପ୍ ଚାପ୍ ରହିଯାଆନ୍ତି । ତା'ପରେ ଏମିତି ଅବସ୍ଥାରେ ୩/୪ ଥର ଚୋପା ଛାଡ଼େ । ଏ ସମୟରେ ଦେଢ଼ମାସ ବା ୪୫ ଦିନ ରହିବା ପରେ ଏକ ବଡ ଶୁଁବାଳୁଆ ହୋଇଯାଏ ।

## କୋଷାରୁ ସୂତା



ବଡ଼ ହୋଇ ଯିବାପରେ ଶୁଁବାଳୁଆ ବା ଲାର୍ଭା ଆଦୌ ନ ଖାଇ କୁଆଡ଼େ ଚଲାବୁଲା ନ କରି ପତ୍ରର ଗୋଟିଏ କଣକୁ ଚାଲି ଆସେ । ଚୁପ୍‌ଚାପ୍ ସେଠାରେ ରହି ତା ପାଟି ଭିତରୁ ଅଠାଳିଆ ଲାଳ ବାହାର କରେ । ଏହି ଅଠାଳିଆ ଲାଳ ପବନ ବାଜି ଟାଣୁଆ ସୂତା ହୋଇଯାଏ । ଆସ୍ତେ ଆସ୍ତେ ଏହିପରି ଲାଳ ସେ ତା'ର ଦେହ ଚାରିପଟେ ଝରାଇବାକୁ ଲାଗେ । ୩/୪ ଦିନ ଝରିବା ପରେ ପୋକଟି ଗୋଟାଏ ମୋଟା ଖୋଳପା ଭିତରେ ରହିଯାଏ । ଏହି ଖୋଳପାକୁ କୁହାଯାଏ ''କୋଷା'' ବା ''ଖୋସା'' । ଏହା ଦେଖିବାକୁ ଅଣ୍ଡାପରି । ରଙ୍ଗ ଧଳା ବା ଅଳ୍ପ ହଳଦିଆ ।

ଗୋଟିଏ ପୋକ ଏପରି ଏକହଜାର ଫୁଟ ପର୍ଯ୍ୟନ୍ତ ଲାଳୁଆ ସୂତା ବାହାର କରିପାରେ । ତା’ ପାଟିରୁ ଝରୁଥିବା ଲାଳ ହିଁ ‘‘ରେଶମ ସୂତା’’ ବା‘‘ସିଲ୍କ ସୂତା’’ । ସୂତା ଗୁଡ଼ାଇ ହୋଇଥିବା କୋଷାଗୁଡ଼ିକ ଗଛରେ ଫଳ ଝୁଲିବା ପରି ଓହଳିଥାଏ । କିନ୍ତୁ ସତରେ ସେଗୁଡ଼ିକ ପୋକର କୋଷା । ତା ଭିତରେ ପୋକ ନିର୍ଜୀବ ପରି ରହିଥାଏ- ପବନରେ ଝୁଲୁଥାଏ ।

୧୫ ଦିନ ମଧ୍ୟରେ ପୋକଟି ମାଟିଆ ପୋକ ହୋଇଯାଏ । ତାହାକୁ ‘‘ପ୍ୟୁପା’’ କୁହାଯାଏ । କୋଷାରୁ ହିଁ ତା’ପରେ ସୂତା ବାହାର କରାଯାଏ । ସେଥିପାଇଁ କୋଷାଗୁଡ଼ିକୁ ଗରମ ପାଣିରେ ପକାଇ ତା ଭିତରେ ଥିବା ଜୀଅନ୍ତା ପ୍ୟୁପାକୁ ମାରିଦିଆଯାଏ । ପ୍ୟୁପାକୁ ମାରିଦେଲେ ଗୋଟିଏ ଲମ୍ବା ସୂତା ମିଳିବ । କିନ୍ତୁ ପ୍ୟୁପା ଯଦି କୋଷା ଫୁଟାଇ ବାହାରିଯାଏ ତେବେ ସୂତା ଖଣ୍ଡ ଖଣ୍ଡ ହୋଇଯିବ । ଶାଢ଼ି ଓ ପାଟ ଉଦ୍ଦେଶ୍ୟରେ ପ୍ୟୁପାକୁ ମାରି ଗୋଟାଏ କୋଷାରୁ ଲମ୍ବା ଲମ୍ବା ସୂତା ସଂଗ୍ରହ କରାଯାଏ । ପ୍ୟୁପାକୁ ଗରମ ପାଣିରେ ପକାଇ ମାରିବା ପରେ ହାତରେ ହେଉ ବା ଯନ୍ତ୍ର ସାହାଯ୍ୟରେ ହେଉ ସୂତାକୁ କୋଷାରୁ ବାହାର କରି ଗୁଡ଼ାଇ ରଖାଯାଏ । ପରେ ଏ ସୂତାକୁ ଇଚ୍ଛା ଅନୁସାରେ ଲୁଗା,ପାଟ ବା ଚଦର ଆଦି ତିଆରି କରାହୁଏ । ଅବଶ୍ୟ ସବୁ କୋଷାକୁ ଏପରି ନଷ୍ଟ କରାଯାଏ ନାହିଁ । କିଛି କୋଷାକୁ ପୁଣି ରେଶମ ଅଣ୍ଡା ସଂଗ୍ରହ କରିବା ପାଇଁ ବଞ୍ଚାଇ ରଖାଯାଏ । ଯେଉଁ କୋଷାଗୁଡ଼ିକୁ ରଖାଯାଏ ସେଗୁଡ଼ିକୁ ଫୁଟାଇ ମଥ୍ ବାହାରି ଆସେ । ବାହାରି ଆସିବା ସମୟରେ ତା’ର ଡେଣା ଦୁଇଟି ମଧ ଥାଏ । ଏହାକୁ ଛୋଟ ରେଶମ ପୋକ ବା ‘‘ମଥ୍’’ ବୋଲି କୁହାଯାଏ । ଏ ମଥ୍ ପୂର୍ବପରି ପୁଣି ଅଣ୍ଡାଦେଇ କୋଷା ବାନ୍ଧିବାରେ ଲାଗିଯାଏ । ଏହିପରି ପ୍ରତିଥର ହଜାର ହଜାର ସଂଖ୍ୟାରେ କୋଷା ସଂଗ୍ରହ କରି ସୂତା ବାହାର କରାଯାଏ ଓ ଅବଶିଷ୍ଟ କିଛି କୋଷାରୁ ଭବିଷ୍ୟତରେ ଅଣ୍ଡା ପାଇବା ପାଇଁ ବଞ୍ଚାଇ ରଖାଯାଏ ।

## ରେଶମ ସୂତାର ଆଦର

ଏପରି ଭାବରେ ରେଶମ ପୋକ କୋଷାରୁ ରେଶମ ସୂତା ସଂଗ୍ରହ କରାଯାଏ । ପାଟ,ସିଲ୍କ ଶାଢ଼ୀ,ଚଦର ଓ ଅନ୍ୟାନ୍ୟ ପୋଷାକ ଏଥିରୁ ପ୍ରସ୍ତୁତ କରାଯାଏ । ଆମ ଦେଶରେ ଏ ରେଶମ ଚାଷ ବହୁ ପରିମାଣରେ କରାଯାଉଛି । ରେଶମ ବସ୍ତ୍ର ଓ ଶାଢ଼ି ମଧ ବିଦେଶକୁ ରପ୍ତାନୀ କରାଯାଉଛି । ଠିକ୍ ସେହିପରି ରେଶମ ସୂତାରୁ ରାକ୍ଷୀ ମଧ ତିଆରି ହେଉଛି ।

ଏଥର ବୁଝିଲୁ ତ ରେଶମ କଅଣ ? ଏଡ଼ିକି ଟିକିଏ ପୋକ ହେଲେ କଅଣ ହେବ; ତା’ର କରାମତି କେତେ !!’



# ଦାନ୍ତ ଯାହାର ଭୟଙ୍କର

## ସାପକୁ କାହିଁକି ଡରନ୍ତି ?

ସାପ ଦେଖିଲେ କିଏ ବା ନ ଡରେ ? ତାର ଦେହଟି ଏମିତି ଯେ ଛୋଟ ପିଲାଠାରୁ ଆରମ୍ଭ କରି ବୁଢ଼ା-ବୁଢ଼ି ପର୍ଯ୍ୟନ୍ତ ସମସ୍ତେ ଦେଖିଲେ ଏପରିକି ଶୁଣିଲେ ମଧ୍ୟ ଡରି ଯାଆନ୍ତି । କିନ୍ତୁ ଡରିବାର କାରଣ କ'ଣ ? ଡରିବାର ମୁଖ୍ୟ କାରଣ ହେଲା ତାର କାମୁଡ଼ା ଗୁଣ ଯୋଗୁଁ । ଆଉ ଲୋକମାନଙ୍କର ବିଶ୍ୱାସ ଯେ ସାପ କାମୁଡ଼ିଲା ଅର୍ଥ ମଣିଷ ନିଶ୍ଚୟ ମରିବ । କିନ୍ତୁ ଗୋଟିଏ କଥା ଯେ, ସବୁ ସାପ କାମୁଡ଼ିଲେ ମଣିଷ ବା ଜୀବଜନ୍ତୁ ମରିଯାଆନ୍ତି ନାହିଁ । କାରଣ ସମସ୍ତ ସାପ ବିଷାକ୍ତ ନୁହନ୍ତି । ବିଷାକ୍ତ ବା ବିଷଧର ସାପ କାମୁଡ଼ିବା ଦେହପାଇଁ ଖରାପ । ସାପ ବିଷ ଦେହ ମଧ୍ୟକୁ ଗଲେ ଦେହର କ୍ଷତି କରିଥାଏ ବା ମଣିଷ ଅଥବା ଜୀବଜନ୍ତୁ ମରିଯାଆନ୍ତି ମଧ୍ୟ । ଆମ ପୃଥିବୀରେ ବିଷାକ୍ତ ସାପମାନଙ୍କ ସଂଖ୍ୟା ବହୁତ କମ୍ ଓ ବିଷହୀନ ସାପମାନେ ଅନେକ ଓ ବିଭିନ୍ନ ପ୍ରକାରର । କିନ୍ତୁ ମଣିଷ ସାପମାନଙ୍କୁ ଖାଲି ମନ ଭିତରେ ଭାବିଥାଏ ଯେ ସବୁ ସାପ ଗୁଡ଼ିକ ବିଷାକ୍ତ । ଏହା ଏକ ଭୁଲ୍ କଥା ।

## ସାପ କିପରି ପ୍ରାଣୀ ?

ସାପ ଅନ୍ୟ ପ୍ରାଣୀମାନଙ୍କ ପରି ଗୋଟିଏ ପ୍ରାଣୀ । ଏହା ଏକ ସରୀସୃପ । ପେଟକୁ ଘୋଷାରି ଘୋଷାରି ଭୂଇଁ ଉପରେ ଚାଲିବା ଏମାନଙ୍କ ଅଭ୍ୟାସ । ସାମନାରେ କୌଣସି ପ୍ରାଣୀ ବା ମଣିଷ ଆକ୍ରମଣ କରିବାର ଆଭାସ ପାଇଲେ ସେ କାମୁଡ଼ି ଦେଇଥାଏ ବା ଚୋଟ ମାରିଦିଏ । ବିଷଧର ହେଉ ବା ବିଷହୀନ ହେଉ, କିପରି ଜାଣିବା ଯେ ସାପ କାମୁଡ଼ିବା ପରେ କେଉଁ ପ୍ରକାରର ସାପ କାମୁଡ଼ିଛି । ପ୍ରତ୍ୟେକ ସାପର ପାଟିରେ ଦାନ୍ତ ଥାଏ । ଆଉ ଏହି ଦାନ୍ତ ପାଇଁ ସାପ ପ୍ରସିଦ୍ଧ ବା ସାପକୁ ପ୍ରକୃତରେ ସମସ୍ତେ ଡରିଥାଆନ୍ତି ।

## ସାପର ଦାନ୍ତ

ସାପର ଦୁଇ ପାଟିରେ ଦାନ୍ତ ଥାଏ । ତା ଛଡ଼ା ତାଳୁରେ ମଧ୍ୟ ଦାନ୍ତ ଥାଏ । ବିଷହୀନ ସାପର ଦାନ୍ତଗୁଡ଼ିକ ଛୋଟ ଛୋଟ । କାମୁଡ଼ିଲେ ଇଂରାଜୀ ଅକ୍ଷର 'V'ପରି ଦାଗ ପଡ଼ିଯାଏ । ଏହି ଦାଗରୁ ଜଣେ ଦେଖିଲେ ଜାଣିପାରିବ ଯେ ଏ କାମୁଡ଼ା ହେଉଛି ବିଷହୀନ ସାପର । ତେଣୁ ଏଥିପାଇଁ ଏତେ ବ୍ୟସ୍ତ ହେବାର ନାହିଁ । କାରଣ ଏ ବିଷହୀନ

ସାପ କାମୁଡ଼ା ହେହର କିଛି କ୍ଷତି କରେ ନାହିଁ । କାରଣ ଏ କାମୁଡ଼ାରେ ଦେହକୁ ବିଷ ଯାଇନଥାଏ ।

## ସାପ କାମୁଡ଼ା ଓ ଚିହ୍ନଟ

ଆଉ ବେଳେବେଳେ ବିଷଧର ସାପ କାମୁଡ଼ି ପକାନ୍ତି । ଏମାନେ କାମୁଡ଼ିଲେ ବା ଦଂଶନ କଲେ ଶରୀରରେ ଦୁଇଟି ବଡ଼ ଦାଗ ଦେଖାଯାଏ । ଏ ଦାଗ ଦୁଇଟି ଖୁବ୍ ଗଭୀର ଭାବରେ ଦୁଇକଡ଼ରେ ଦୁଇଟି ଦେଖିବାକୁ ମିଳେ । କାରଣ ଏ ଦାଗ ଦୁଇଟି ହେଉଛି ବିଷଦାନ୍ତର ଚିହ୍ନ । ବିଷଦାନ୍ତ ଜୋର୍‌ରେ ଦେହ ମଧ୍ୟକୁ ଗଳିଯାଇଥିବାରୁ ଦାଗ ଦୁଇଟି ସ୍ପଷ୍ଟରୂପେ ଜଣାପଡ଼ିଯାଏ । ତେଣୁ ସେଠାରୁ ରକ୍ତ ମଧ୍ୟ ବହୁତ ଝରିବାର ଦେଖାଯାଏ । ମାତ୍ର ବିଷହୀନ ସାପ କାମୁଡ଼ିଲେ ଛୋଟ ଦାଗ ପଡ଼ିଥାଏ । ଦୁଇଟି ଦାଗ ପରିବର୍ତ୍ତେ ଅନେକ ଦାଗ ଧାଡ଼ିକରି ଦେଖାଯାଏ । ତେଣୁ ଏହି ଉପାୟରେ ସାପକାମୁଡ଼ାରୁ ବିଷହୀନ ସାପ କି ବିଷଧର ସାପ ଜଣା ପଡ଼ିଯାଇପାରେ ।

## ବିଷଦାନ୍ତର ଆକାର ଓ ଗଠନ

ସବୁ ବିଷାକ୍ତ ସାପଙ୍କର ଦୁଇଟି ବିଷ ଦାନ୍ତ ଥାଏ । ଏ ଦୁଇଟି ଉପର ପାଟିରେ ଥାଏ । ତଳ ପାଟିରେ ଆଦୌ ବିଷ ଦାନ୍ତ ନ ଥାଏ । ତା ଛଡ଼ା ଅନ୍ୟ ଛୋଟ ଛୋଟ ଦାନ୍ତ ମଧ୍ୟ ପାଟିରେ ଥାଏ । ମାତ୍ର ସାପ କାମୁଡ଼ିଲେ ତାର ବିଷ ଦାନ୍ତ ଅନ୍ୟ ଦାନ୍ତ ଅପେକ୍ଷା ବହୁତ ବଡ଼ ହୋଇଥିବାରୁ କେବଳ ଏହି ବିଷ ଦାନ୍ତ ଦୁଇଟିର ଦାଗ ଛଡ଼ା ଅନ୍ୟଦାନ୍ତ ମାନଙ୍କର ଚିହ୍ନ ପଡ଼େ ନାହିଁ । ତେଣୁ ବିଷାକ୍ତ ସାପ କାମୁଡ଼ିଲେ ନିଶ୍ଚିତ ଭାବରେ ବିଷଦାନ୍ତ ଦୁଇଟିର ଚିହ୍ନ ଦେଖାଯିବ । ଅବଶ୍ୟ ବେଳେବେଳେ ମଧ୍ୟ ଅନ୍ୟ ଦାନ୍ତ ଚିହ୍ନ ଦେଖାଯାଇପାରେ । ଅନ୍ୟ ଦାନ୍ତ ଚିହ୍ନ ଦେଖାଗଲେ ମଧ୍ୟ ବିଷ ଦାନ୍ତ ଦାଗ ଖୁବ୍ ବେଶି ଦେଖାଯାଏ । ଏହି ବିଷଦାନ୍ତ ଦୁଇଟି ଇଂରାଜୀ ଅକ୍ଷର 'C' ପରି, ଅର୍ଥାତ୍ ବଙ୍କା ଅବସ୍ଥାରେ ପାଟି ମଧ୍ୟରେ ଥାଏ । ବିଷଦାନ୍ତ ମୂଳରେ ମଧ୍ୟ ନୂତନ ବିଷଦାନ୍ତ ଗଜୁରି ରହିଥାଏ । ବିଷଦାନ୍ତଟିଏ ଭାଙ୍ଗିଗଲେ ଏହି ଛୋଟ ଦାନ୍ତଟି ବଢ଼ି ପୁଣି ବିଷଦାନ୍ତର କାର୍ଯ୍ୟ କରେ । ତେଣୁ ଅନେକ ସମୟରେ ସାପୁଆ କେଳାମାନେ ବିଷଦାନ୍ତ ଭାଙ୍ଗି ସାପକୁ ଛାଡ଼ିଦେଲେ ମଧ୍ୟ ସେ ସାପ ଆଉ ବିଷାକ୍ତ ସାପ ନୁହେଁ ବୋଲି କହିବା ଭୁଲ କଥା । ବିଷଦାନ୍ତ ନ ଥିବା ସାପ ପାଟିରେ ବିଷ ଦାନ୍ତ ଶୀଘ୍ର ଗଜୁରି ଉଠେ ।

ଗୋଖର ଓ ବୋଡ଼ା ସାପର ବିଷଦାନ୍ତ ଆଗକୁ ଥାଏ । ମାତ୍ର ଅନେକ ସମୁଦ୍ର ସାପମାନଙ୍କର ପାଟିର ଟିକିଏ ଭିତରକୁ ରହିଥାଏ । ସାପର ବିଷଦାନ୍ତ ଭିତରେ ନାଳୀ ଥାଏ । ଏହି ନାଳି ଦୁଇ ପ୍ରକାର – ଗୋଟିଏ ହେଲା ପୋଲା, ଠିକ୍ ଇଞ୍ଜେକ୍‌ସନ ଛୁଞ୍ଚ ପରି । ଚନ୍ଦ୍ରବୋଡ଼ାର ବିଷଦାନ୍ତ ଏହିପରି । ମାତ୍ର ଗୋଖରର ବିଷଦାନ୍ତ ଅଲଗା




Jaw and Teeth of a Viper showing the venom ducts and venom glands.
ସାପର ମୁଣ୍ଡ, ବିଷଥଳୀ ଓ ବିଷଦାନ୍ତ



Poison Fangs
ସାପର ବିଷଦାନ୍ତର ଗଠନ



Teeth of non-poisonous snakes
ବିଷହୀନ ସାପର ଦାନ୍ତ ଗଠନ



Punctures made by
the poisonous snake
ବିଷାକ୍ତ ସାପ କାମୁଡ଼ାର ଚିହ୍ନ



Punctures made by
non-poisonus snake.
ବିଷହୀନ ସାପ କାମୁଡ଼ାର ଚିହ୍ନ

ପ୍ରକାରର । ଏହାର ଦାନ୍ତ ଉପର ଅଂଶ ପୋଲା ନାଳୀ ତିଆରି କରିଥାଏ । ଯାହା ହେଲେ ମଧ୍ୟ ନାଳୀ ପରି ଆକାର ଏ ବିଷଦାନ୍ତରେ ଥିବାରୁ ନାଳୀ ମଧ୍ୟ ଦେଇ ବିଷଗ୍ରନ୍ଥିରୁ ବିଷଆସି କାମୁଡ଼ିବା ପ୍ରାଣୀ ଦେହକୁ ଚାଲିଯାଏ । ମୁଣ୍ଡ ଉପରେ ସାପର ବିଷଦାନ୍ତକୁ ଲାଗି ଛୋଟ ଥଳି ପରି ଗୋଟିଏ ବିଷ ଗ୍ରନ୍ଥି ଥାଏ । ସାପ ରାଗିଗଲେ ଫଣା ଉଠାଇବା ସମୟରେ ଏହି ବିଷଗ୍ରନ୍ଥିରୁ ବିଷ ଚିପି ହୋଇଆସି ବିଷଦାନ୍ତର ନାଳୀ ଦେଇ ବାହାରକୁ ଆସିଥାଏ । ତେଣୁ ଜିଅନ୍ତା ସାପର ମୁଣ୍ଡକୁ ଚିପିଲେ ତା ପାଟିରେ ଥିବା ବିଷଦାନ୍ତ ମଧ୍ୟ ଦେଇ ବିଷ ଝରିଆସିବାର ଦେଖାଯାଏ ।

ଏହିପରି ଭାବରେ ସାପ କାମୁଡ଼ାରୁ ବା ତାର କାମୁଡ଼ିବା ଚିହ୍ନରୁ ବିଷଧର କି ନା ଜଣାଯାଇପାରେ । ତେଣୁ ଆମେ ସମସ୍ତେ ଏ ସାଧାରଣ କଥାଟିକୁ ମନେରଖିଲେ ଅନେକ ସମୟରେ କାମରେ ଆସିବ । ବିଷହୀନ ସାପ ହୋଇଥିଲେ ଏତେ ବ୍ୟସ୍ତ ହେବା ଦରକାର ହୋଇନପାରେ । କିନ୍ତୁ ବିଷାକ୍ତ ସାପ କାମୁଡ଼ିଥିବାର ଜାଣିଲେ ଶୀଘ୍ର ଡାକ୍ତରଖାନା ନେଇ ଚିକିତ୍ସାର ବ୍ୟବସ୍ଥା କରିବା ଦରକାର । ତେଣୁ ସାପ ଦାନ୍ତ ପାଇଁ ଏତେ ଶକ୍ତିଶାଳୀ ଏବଂ ଦାନ୍ତ ହେତୁ ଭୟଙ୍କର ମଧ୍ୟ ।

## ଦାନ୍ତ ଓ ତାର ଗୁରୁତ୍ୱ

ଦାନ୍ତ ମେରୁଦଣ୍ଡୀ ପ୍ରାଣୀମାନଙ୍କର ଆକୃତିଗତ ବୈଶିଷ୍ଟ୍ୟ । ସୃଷ୍ଟିର ଆରମ୍ଭରୁ ଯେଉଁ ମେରୁଦଣ୍ଡୀ ପ୍ରାଣୀର ଆବିର୍ଭାବ ଘଟିଛି ସେ ହେଉଛି ମାଛ । ମାଛ ପରେ ପରେ କ୍ରମିକ ଭାବରେ ଉତ୍ପତ୍ତି ଘଟିଛି ଉଭୟଚରୀ (Amphibia) ସରୀସୃପ, (Reptilia) ପକ୍ଷୀ (Aves) ଓ ସ୍ତନ୍ୟପାୟୀ (Mammalia) ପ୍ରାଣୀମାନଙ୍କର । ଆଉ ଏ ପ୍ରତ୍ୟେକ ମେରୁଦଣ୍ଡୀ ପ୍ରାଣୀଙ୍କ ପାଟି ଭିତରେ ଥାଏ ଦାନ୍ତ । ଦାନ୍ତର ସଂଖ୍ୟା ଓ ପ୍ରକାର ଅଲଗା ଅଲଗା ହେଲେ ବି କାର୍ଯ୍ୟ ମୁଖ୍ୟତଃ ଗୋଟିଏ । କାହାର ସଂଖ୍ୟା ସୀମିତ ତିମି ଶାର୍କ (Whale Shark) ପରି ଆଉ କେଉଁ ପ୍ରାଣୀର ଦାନ୍ତର ସଂଖ୍ୟା ୩୬୦୦ । କାମୁଡ଼ିବା, ଶିକାରକୁ ପାଟିରେ ଜାବୁଡ଼ି ଧରିବା, ବିଷ ପ୍ରୟୋଗ କରିବା ଓ ଚୋବାଇ ଚୋବାଇ ଖାଇବା ଆଦି କାର୍ଯ୍ୟ ଦାନ୍ତ ଦ୍ୱାରା ଘଟିଥାଏ । ତେବେ ଦାନ୍ତଗୁଡ଼ିକ ପ୍ରାଣୀମାନଙ୍କର ମୁଖ୍ୟତଃ ଟାଣ ହୋଇଥିବା ବେଳେ ବିଷାକ୍ତ ସାପ ଉପର ପାଟିର ଦୁଇ କଡ଼ରେ ଗୋଟିଏ ଗୋଟିଏ କରି ବିଷଦାନ୍ତ (Fang) ରହିଥାଏ । ବିଷଦାନ୍ତଟି ଠିକ୍ ଇଞ୍ଜେକ୍ସନ୍ ଛୁଞ୍ଚି ପରି ହୋଇଥିବାରୁ ତା ମଧ୍ୟ ଦେଇ ବିଷ ଶତ୍ରୁ ଶରୀରକୁ ଆସିଥାଏ । ବିଷଧର ସାପର ଦାନ୍ତର ଆକୃତି ଓ କାର୍ଯ୍ୟ ବାସ୍ତବିକ୍ ଏକ ଅଜବ ବିସ୍ମୟ । ଶତ୍ରୁ ମୁହଁରୁ ନିଜକୁ ରକ୍ଷା କରିବାକୁ ବିଷଧର ସାପ ପାଇଁ ଏହା ଏକ ଅବ୍ୟର୍ଥ ଉପାୟ ।



# ବଂଶ ବୁଡ଼ା ନୁହେଁ ସେ ପାଣିକୁକୁଡ଼ା

କୁକୁଡ଼ା ! କିଏ ନ ଜାଣନ୍ତି ଏ ଜୀବକୁ ! ପିଲାଠାରୁ ଆରମ୍ଭ କରି ବଡ଼ ପର୍ଯ୍ୟନ୍ତ ସମସ୍ତେ ଏ ଜୀବ ସହିତ ପରିଚିତ । ଖାଇବା ପାଇଁ ଯେମିତି ଉପାଦେୟ ତାର ବ୍ୟବହାର ଦେଖିବାକୁ ଆମକୁ ଲାଗେ ଆହୁରି ଭଲ । ଅର୍ଥାତ୍ କୁକୁଡ଼ା ଲଢ଼େଇ ସତରେ ବଡ଼ ଆକର୍ଷଣୀୟ । ତେବେ ଆମର ଏଇ ସାଧାରଣ କୁକୁଡ଼ା ସାଧାରଣତଃ ସ୍ଥଳଭାଗରେ ଦେଖିବାକୁ ମିଳେ । କିନ୍ତୁ ଆଉ ଏକ ପ୍ରକାର କୁକୁଡ଼ା ଜଳଭାଗରେ ଦେଖାଯାଏ । ସେଇଟି ହେଉଛି ପାଣିକୁକୁଡ଼ା । ସାଧାରଣ କୁକୁଡ଼ା ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଗାଁ ଗହଳିର ଏ ଏକ ଅତି ଜଣାଶୁଣା ପକ୍ଷୀ । ଡାହୁକ ନାମରେ ଏ ପକ୍ଷୀଟି ଖୁବ୍ ପରିଚିତ ।

ଡାହୁକ ନାମରେ ଅନେକ ଢଗ ଶୁଣିବାକୁ ମିଳେ । ଯେଉଁ ଲୋକମାନେ ବେଶି କଥା କୁହନ୍ତି ତାଙ୍କୁ ବିରକ୍ତ ହୋଇ କିଛି ଗାଁ ଗହଳି ଲୋକ କହିଥାନ୍ତି ''ଆରେ କାହିଁକି ଡାହୁକ ଭଳି ହେଉଛୁ '' ?

**ପାଣିକୁକୁଡ଼ା ଓ ଲୋକକଥା**

ଡାହୁକର ଡାକ ପାଇଁ ତା'ର ଏକ ବଦନାମ ଅଛି । ଡାହୁକ ଧରିବାକୁ ଯେଉଁମାନେ ଫାଶ ବସାନ୍ତି, ନିକଟରେ ଅନେକ ପୂର୍ବରୁ ଧରା ହୋଇଥିବା ଡାହୁକକୁ ବାନ୍ଧି ଦିଅନ୍ତି । ଏହି ବନ୍ଧା ହୋଇଥିବା ଡାହୁକଟି ଡାକ ଦେଲେ ଅନ୍ୟ ଡାହୁକ ତା ନିକଟକୁ ଆସି ଫାଶରେ ପଡ଼ନ୍ତି । ନିଜର ଜ୍ଞାତି କୁଟୁମ୍ବମାନଙ୍କୁ ଡାକଦେଇ ମୃତ୍ୟୁ ମୁଖରେ ପକାଉଥିବାରୁ ଡାହୁକକୁ ''ବଂଶବୁଡ଼ା'' ଡାହୁକ ବୋଲି କହିଥାନ୍ତି ।



ପାଣି କୁକୁଡ଼ା

ଗାଁରେ ଯେଉଁମାନେ ବିନା ଖର୍ଚ୍ଚରେ ପକ୍ଷୀ ମାଂସ ଖାଇବାକୁ ଇଚ୍ଛା କରୁଥିଲେ ଗୋଟିଏ ଅବ୍ୟବହୃତ ଛୋଟ ମାଟିହାଣ୍ଡି, ତିନିଗୋଟି ବାଉଁଶ କଣିର ଖିଲ ଓ ମୁଠାଏ ଧାନ ଯୋଗାଡ଼ କରୁଥିଲେ । ସନ୍ଧ୍ୟାବେଳେ ଯାଇ ପୋଖରୀ ଧାରରେ ଜଙ୍ଗଲିଆ ଜାଗାରେ ଖିଲ ତିନୋଟିକୁ ତ୍ରିଭୁଜ ଆକାରରେ ପୋତି ଦେଉଥିଲେ । ଗୋଟିଏ ଖିଲ ଅନ୍ୟ ଦୁଇଟି ଅପେକ୍ଷା ସାମାନ୍ୟ ଅଧିକ ଉଚ୍ଚ ରହୁଥିଲା । ଏଇ ତ୍ରିଭୁଜ ଉପରେ ହାଣ୍ଡିଟିକୁ ଟିକିଏ ଅଣେଇ କରି ବସାଇ ଦିଆଯାଉଥିଲା । ହାଣ୍ଡିର ଭାରସାମ୍ୟ ଏପରି ସୂକ୍ଷ୍ମ ଭାବରେ ରଖାଯାଉଥିଲା ଯେ ହାଣ୍ଡି ଭିତରେ ଟିପ ଛୁଇଁ ଦେଲେ ହାଣ୍ଡିଟି ମୁହଁ ମାଡ଼ି ଓଲଟି ପଡୁଥିଲା । ହାଣ୍ଡି ଭିତରେ ଚଢ଼େଇ ଖୁମ୍ପିବା ପାଇଁ ଥୋପ ହିସାବରେ କିଛି ଧାନ ପକାଇ ଦିଆଯାଉଥିଲା ଓ ଚଢ଼େଇକୁ ଆକୃଷ୍ଟ କରିବା ପାଇଁ ଏଇ ସରଳ ଯନ୍ତ୍ର ପାଖର ଭୂଇଁରେ କିଛି ଧାନ ବିଞ୍ଚିଦିଆଯାଉଥିଲା । ଯନ୍ତ୍ର ବସାଇବାବାଲାର ଭାଗ୍ୟ ଯଦି ଅନୁକୂଳ ଥାଏ ତେବେ ସକାଳୁ ହାଣ୍ଡିଟି ମୁହଁ ମାଡ଼ି ପଡ଼ିଥାଏ ଓ ତା ଭିତରେ ବନ୍ଦୀ ହୋଇଥାଏ ଛୋଟ କୁକୁଡ଼ା ଭଳି ପକ୍ଷୀଟିଏ । ନାଁ ତାର ଡାହୁକ । ହିନ୍ଦୀରେ ତାକୁ 'ଜଳମୁର୍ଗୀ' ଓ ଇଂରାଜୀରେ (Waterhen) କୁହନ୍ତି । ଉଭୟର ଅର୍ଥ ପାଣିକୁକୁଡ଼ା । ତା ପରେ ବିଚରା ପକ୍ଷୀଟି ତରକାରିରେ ପରିଣତ ହୁଏ ।

## ବିସ୍ତୃତି, ଅଭ୍ୟାସ ଓ ଆକାର

ପାଣିକୂଳିଆ ସନ୍ତସନ୍ତିଆ ଜାଗାରେ ଘାସ ଓ ଅନାବନା ଜଙ୍ଗଲରେ ଡାହୁକ ରୁହେ । ଯେତେବେଳେ ବର୍ଷାଦିନେ ଖାଲୁଆ ଅଞ୍ଚଳରେ ପାଣି ଭର୍ତ୍ତି ହୋଇଯାଏ, ତା'ର ପାଖ ଅଞ୍ଚଳରେ ଡାହୁକକୁ ଏକୁଟିଆ ହଳ ହଳ ହୋଇ ବୁଲିବା ଦେଖାଯାଏ । କିଏ ସିନା ନିକଟକୁ ଚାଲିଆସେ ସେ କିନ୍ତୁ ତରବର ହୋଇ ପାଖରେ ଥିବା କିଆବୁଦା କି ବାଉଁଶବୁଦା ଭିତରକୁ ଦୌଡ଼ିଯାଇ ଲୁଚିଯାଇଥାଏ । ଡାହୁକ ସତର୍କ ଭାବରେ ପାଦ ଗଣି ଗଣି ଚାଲିବା ବେଳେ ଛୋଟ ଲାଞ୍ଜଟି ବାରମ୍ବାର ଉଠୁଥାଏ ଏବଂ ପଡୁଥାଏ । ଏହି ସମୟରେ ଲାଞ୍ଜତଳର ନାଲି ଅଂଶଟି ସୁନ୍ଦର ଭାବରେ ଦିଶିଥାଏ । ତରକା ହେଲେ ବି ଯଦି ତାକୁ ହଇରାଣ କରାନଯାଏ ତେବେ କିଛି ଦିନ ପରେ ବାଡ଼ିବଗିଚା ଭିତରକୁ ଓ ମଣିଷ ନିକଟକୁ ଆସିପାରେ । ଦଳଖୁମ୍ପିପରି ଡାହୁକକୁ ପ୍ରାୟ ଗଣାଅଧିକେ ସମସ୍ତେ ଦେଖିଥିବେ । କିନ୍ତୁ ଇଏ ଦଳଖୁମ୍ପିପରି ଦେହ ଘଷିଆ ନ ହୋଇ ବହୁତ ତରକା ହୋଇଥାଏ । ଅଧା ବଢ଼ିଥିବା ଦେଶୀ କୁକୁଡ଼ା ପରି ଏହାର ଆକାର । ଏହାର ଦେହର ରଙ୍ଗ ମୁଖ୍ୟତଃ ସିଲଟ ପରି

ପାଉଁଶିଆ । ଛାତି ଓ ମୁହଁ ଧଳା । ଏଥିପାଇଁ ଇଂରାଜୀରେ ଏହାର ନାଁ ପୂର୍ବରୁ ଏକ ବିଶେଷଣ ଯୋଡ଼ାଯାଇଥାଏ – ହ୍ୱାଇଟ୍ ବ୍ରେଷ୍ଟେଡ (White Breasted) ଅର୍ଥାତ୍ ଧଳା ଛାତିବାଲା । ଏହାର ପୂରା ନାଁ ହେଲା 'ହ୍ୱାଇଟ୍ ବ୍ରେଷ୍ଟେଡ ୱାଟର ହେନ୍' । ଏହାର ଲାଞ୍ଜଟି ଛୋଟ ଓ ଖୁଣ୍ଟିଆ ପରି । ତାର ତଳ କଳଙ୍କି ଲାଗିଥିବା ପରି ନାଲି । ଗୋଡ଼ଗୁଡ଼ିକ ବେଶ୍ ଲମ୍ବା । ପୁରୁଷ ଓ ସ୍ତ୍ରୀ ଡାହୁକ ଦେଖିବାକୁ ଏକାପରି ।

**ଖାଦ୍ୟ, ବସା ଓ ଛୁଆ**

କୀଟପତଙ୍ଗ, ପୋକଜୋକ, ଧାନ ଓ ଧାନଗଛର କଅଁଳ ପତ୍ର ଓ ପାଣିରେ ଥିବା ଲତାପତ୍ର ଇତ୍ୟାଦିର ଅଂଶବିଶେଷ ଏହାର ଖାଦ୍ୟ । ମୌସୁମୀ ପ୍ରବାହ ସମୟରେ ଅର୍ଥାତ୍ ଜୁନ୍ ଓ ଅକ୍ଟୋବର ମାସ ଭିତରେ ଡାହୁକ ବସା ତିଆରି କରି ଅଣ୍ଡା ଦିଏ । ପାଣି କୂଳରେ ଥିବା ବୁଦା ଭିତରେ ବା ଘାସପତ୍ର ସନ୍ଧିରେ ମାଟିଉପରେ ଡାହୁକ ବସା ତିଆରି କରିଥାଏ । ବସାଟି ହେଉଛି ଲତା ଓ ପତ୍ର ତିଆରି ଏକ ଅଗଭୀର କୂପ ଆକୃତିର । ଥରକେ ଡାହୁକ ଛଅ ସାତଟି ଅଣ୍ଡା ଦେଇଥାଏ । ଈଷତ୍ ଗୋଲାପୀ ରଙ୍ଗ ଉପରେ ନାଲିଆ ବାଦାମୀ ଦାଗ ସବୁ ଥାଏ ।

ବର୍ଷାଋତୁ ଛଡ଼ା ଅନ୍ୟଦିନେ ଡାହୁକ ପ୍ରାୟ ନିରବ ରହିଥାଏ । ବର୍ଷାଋତୁ ଡାହୁକର ସଙ୍ଗମ ଋତୁ ହୋଇଥିବାରୁ ଏହି ସମୟରେ ପୁରୁଷ ଡାହୁକର ପାଟି ଖୋଲିଥାଏ । ଆଉ ଏଭଳି ଖୋଲିଥାଏ ଯେ ଆଖପାଖ ଅଞ୍ଚଳର ଶାନ୍ତି ଭଙ୍ଗ ହୁଏ । ଚାରିଆଡ଼ ଦେଖିପାରିଲା ଭଳି ଏକ ବୁଦା ଉପରେ ପୁରୁଷ ଡାହୁକ ବସି ଲୁକ୍କାୟିତ ଭାବରେ ଚିତ୍କାର ଆରମ୍ଭ କରିଦିଏ - କ୍ର - କ୍ୱାକ୍-କ୍ୱାକ୍,କ୍ର - କ୍ୱାକ୍-କ୍ୱାକ୍ । କିଛି ସମୟ ପରେ ଏ ଶବ୍ଦ ବଦଳି ଏକ ପୌନଃପୁନିକ ''କୁକ୍ କୁକ୍ କୁକ୍''ରେ ପରିଣତ ହୁଏ । ଥରେ ଆରମ୍ଭ ହେଲେ ଏ ଡାକ ପ୍ରାୟ ୧୫ ମିନିଟ ଧରି ଚାଲିଥାଏ । ଯଦି ମେଘୁଆ ପାଗ ହୋଇଥାଏ ତେବେ ତାର ଡାକ ଆହୁରି ପ୍ରଗଳ୍ଭ ହୋଇଯାଏ । ଦିନସାରା ଓ ରାତିରେ ମଧ ତାର ଡାକ ଶୁଣିବାକୁ ମିଳେ । ଦୂରରୁ ଡାହୁକର କୁକ୍ କୁକ୍ ଡାକ ଡିଜେଲ ଚାଳିତ ଅଟାକଳର ପୁକ୍ ପୁକ୍ ଶବ୍ଦର ଭ୍ରମ ସୃଷ୍ଟି କରିଥାଏ ।



# ମହୁମାଛିର ଗତି, ରୀତି, ନୀତି ଓ ପ୍ରୀତି

## ପ୍ରାଣୀର ଭାଷା

କଥା ଶୁଣିବାକୁ କାହାକୁ ଭଲ ନ ଲାଗେ ! ଆଉ କଥା ହିଁ ଭାଷା ମାଧ୍ୟମରେ ପ୍ରକାଶିତ ହୁଏ । ଭାଷା ହିଁ ଭାବ ପ୍ରକାଶର ଅନ୍ୟତମ ମାଧ୍ୟମ । ମଣିଷ ତାର କଥାବାର୍ତ୍ତା ପାଇଁ ଅନ୍ୟ ପ୍ରାଣୀମାନଙ୍କ ଠାରୁ ସମ୍ପୂର୍ଣ୍ଣ ଭିନ୍ନ ଓ ଏକ ଶ୍ରେଷ୍ଠ ପ୍ରାଣୀ ରୂପେ ପରିଗଣିତ । ମଣିଷ ପରି ଆଉ କିଏ କଥା କହିଲେ ମଣିଷ ତା ଆଡ଼କୁ ହୋଇଥାଏ ଆକୃଷ୍ଟ । ସେପରି ପ୍ରାଣୀ ହେଉଛି ଶୁଆ ଓ ଶାରୀ । ସେଥିପାଇଁ ଘରେ ଏ ପ୍ରାଣୀମାନଙ୍କୁ ପୋଷିବାକୁ ବା ପାଳିବାକୁ ଆଗ୍ରହ କରିଥାନ୍ତି କେତେକ ମଣିଷ । ଏମାନେ ଭଲଭାବରେ କହିପାରନ୍ତି ବୋଲି ଆମେ ଏମାନଙ୍କୁ ଅନ୍ୟ ପ୍ରାଣୀମାନଙ୍କ ତୁଳନାରେ ବେଶୀ ଭଲ ପାଉ । ଆଉ କେତେକ ପ୍ରାଣୀଙ୍କ ଭାଷା ଆମେ ବୁଝି ପାରୁ ନାହିଁ । ମାତ୍ର ସେମାନେ ତାଙ୍କ ଭାଷା ତାଙ୍କ ମାନଙ୍କ ମଧ୍ୟରେ ବୁଝିପାରନ୍ତି । ଭାଷା ବିନିମୟ ବା ସଙ୍କେତ କେବଳ ଯେ ବଡ଼ ବଡ଼ ପ୍ରାଣୀମାନଙ୍କ ଠାରେ ପରିଲକ୍ଷିତ ହୁଏ ତାହା ନୁହେଁ ଛୋଟ ଛୋଟ ପ୍ରାଣୀମାନଙ୍କ ମଧ୍ୟରେ ବି ଦେଖାଯାଏ । ସେପରି ଏକ ପ୍ରାଣୀ ହେଉଛନ୍ତି ମହୁମାଛି । ଅମେରୁଦଣ୍ଡୀ ପ୍ରାଣୀମାନଙ୍କ ମଧ୍ୟରେ ମହୁମାଛିମାନଙ୍କର ଭାଷା ଶ୍ରେଷ୍ଠ ବୋଲି ବିବେଚନା କରାଯାଏ ।

## ମହୁମାଛିର ନାଚ

ଆମର ଧାରଣା ଯେ, ଭାଷା କେବଳ ମନୁଷ୍ୟ ବ୍ୟବହାର କରେ । ମାତ୍ର ସୃଷ୍ଟିରେ ଆହୁରି ବହୁ ଜୀବ ଅଛନ୍ତି, ଯେଉଁମାନେ କି ଭାଷା ବ୍ୟବହାର କରନ୍ତି । ଏମାନଙ୍କ ଭାଷା ବୁଝିବାକୁ ପରିଶ୍ରମ ଲୋଡ଼ା । ଅଷ୍ଟ୍ରିଆର ଯୁଗଜନ୍ମା ପୁରୁଷ କାର୍ଲ ଭନ୍ ଫ୍ରିସ୍ ବିଭିନ୍ନ ପରୀକ୍ଷା ନିରୀକ୍ଷା କରି ମହୁମାଛିମାନଙ୍କର ଭାଷା ସଠିକ୍ ଭାବେ ବୁଝିପାରିଥିଲେ । ଏକ ମହୁମାଛି ଦଳ ନିକଟରେ କେତେକ ପାତ୍ରରେ ରଙ୍ଗିନ ଚିନିସିରା ରଖି ସେମାନଙ୍କର ଗତିବିଧି ନିରୀକ୍ଷଣ କରି ସେ ଦେଖିଲେ ଯେ ଖାଦ୍ୟ ଉତ୍ସର ଦିଗ ଓ ଦୂରତ୍ୱ ତାରତମ୍ୟରେ ଖାଦ୍ୟ ଅନ୍ୱେଷଣକାରୀ ମହୁମାଛି ବିଭିନ୍ନ ପ୍ରକାର ସାଙ୍କେତିକ ଭାଷା ବ୍ୟବହାର କରୁଛି । ଖାଦ୍ୟ ଉତ୍ସ ମହୁବସା ନିକଟରେ ଥିଲେ ଅନ୍ୱେଷଣକାରୀ ମହୁମାଛି ବସାକୁ ଫେରିଲା ପରେ ସାଥୀମାନଙ୍କ ଆଗରେ ''ବୃତ୍ତାକାର ନୃତ୍ୟ''

ପରିବେଷଣ କରେ । ଏହି ନୃତ୍ୟରେ ସେ କ୍ରମାନ୍ୱୟରେ ବାମକୁ ଦକ୍ଷିଣକୁ ଏକ କାଳ୍ପନିକ ବୃତ୍ତରେ ଘୂରିବା ପରି ଗତିକରେ । ଏହି ନୃତ୍ୟ ସହକର୍ମୀମାନଙ୍କ ମଧ୍ୟରେ ଉତ୍ତେଜନା ସୃଷ୍ଟି କରେ ଓ ସେମାନେ ନୃତ୍ୟରତ ମହୁମାଛି ପଛରେ ଏକତ୍ର ହୋଇ ତା ଶରୀରରେ ଲାଗିଥିବା ପୁଷ୍ପରେଣୁର ରସ ଆସ୍ୱାଦନ କରନ୍ତି । ଖାଦ୍ୟ ଉତ୍ସରେ ପ୍ରଚୁର ପରିମାଣର ରେଣୁ ମହଜୁଦ ଥିଲେ ନୃତ୍ୟ ପ୍ରଦର୍ଶନ ଦୀର୍ଘ ସମୟ ଓ ତେଜପୂର୍ଣ୍ଣ ହୁଏ । ଉତ୍ସରୁ ଖାଦ୍ୟ ପରିମାଣ କମିଗଲେ ନୃତ୍ୟର ତାଳ ମନ୍ଥର ହୋଇଯାଏ ।

## ମହୁମାଛିର ନୃତ୍ୟ ଓ ଖାଦ୍ୟ ସଂଗ୍ରହ

ବସାଠାରୁ ଖାଦ୍ୟର ଉତ୍ସ ନିକଟତର ହୋଇଥିଲେ ଅନ୍ୱେଷଣକାରୀ ମହୁମାଛିର ଶରୀରରୁ ନିର୍ଗତ ଗନ୍ଧଦ୍ୱାରା ନିର୍ଦ୍ଦିଷ୍ଟ ଫୁଲ ଚିହ୍ନଟ କରିବା ସୁବିଧାଜନକ ହୁଏ । ୨୭୫ ଫୁଟରୁ ଅଧିକ ଦୂରରେ ଥିବା ଖାଦ୍ୟ ସମ୍ବନ୍ଧରେ ସୂଚନା ଦେବା ନିମନ୍ତେ ମହୁମାଛିର ପୁଚ୍ଛ ସଂଚାଳନ ନୃତ୍ୟ ପ୍ରଦର୍ଶନ କରେ । ସେ ଏହି ନୃତ୍ୟ ମାଧ୍ୟମରେ ଖାଦ୍ୟ ଉତ୍ସର ଦିଗ ଓ ଦୂରତ୍ୱ ସମ୍ବନ୍ଧରେ ତଥ୍ୟ ପ୍ରଦାନ କରିଥାଏ । ଅନ୍ୱେଷଣକାରୀ ମହୁମାଛି ନିଜ ଉଦରର ପଶ୍ଚାଦାଂଶକୁ ଏପଟ ସେପଟ ସଂଚାଳନ କରି ପ୍ରଥମେ ଏକ ସରଳରେଖାରେ ଗତି କରେ ଏବଂ ତା' ପରେ ଅର୍ଦ୍ଧବୃତ୍ତାକାର ପଥରେ ନୃତ୍ୟ ଆରମ୍ଭ କରି ନୃତ୍ୟାରମ୍ଭ କେନ୍ଦ୍ରକୁ ଫେରିଆସେ । ପୁନଶ୍ଚ ପୂର୍ବ ନିର୍ଦ୍ଧାରିତ ସରଳରେଖାରେ ଗତିକରେ ଓ ପ୍ରଥମ ଅର୍ଦ୍ଧବୃତ୍ତର ବିପରୀତ ପାର୍ଶ୍ୱରେ ଆଉ ଏକ ଅର୍ଦ୍ଧବୃତ୍ତାକାର ପଥ ଦେଇ ନୃତ୍ୟ ଆରମ୍ଭ କେନ୍ଦ୍ରକୁ ଫେରିଆସେ । ଏହାର ଗତିପଥ ଏକ ଗାଈଛନ୍ଦ ପରି ଦେଖାଯାଏ । ଏହିପରି ଭାବରେ ଗୋଟିଏ ନୃତ୍ୟ ଶୃଙ୍ଖଳା ପୂର୍ଣ୍ଣ କରେ । ଏହି ନୃତ୍ୟ ସମୟରେ ପର ସାହାଯ୍ୟରେ ଏହା ଏକ ପ୍ରକାର ଶବ୍ଦ କରେ ଏବଂ ଏହି ଶବ୍ଦ ଶୁଣି ଅନ୍ୟ କର୍ମୀମାନେ ଏହା ଚାରିପଟରେ ରୁଣ୍ଡ ହୁଅନ୍ତି । ଖାଦ୍ୟ ଉତ୍ସ ପ୍ରାୟ ୧୦୦୦ ଫୁଟ ଦୂରରେ ଥିଲେ ଏହା ୩୦ ସେକେଣ୍ଡରେ ୧୫ ଥର ନୃତ୍ୟ କରିଥାଏ ମାତ୍ର ଖାଦ୍ୟ ଉତ୍ସ ପ୍ରାୟ ୨୦୦୦ ଫୁଟ ଦୂରରେ ଥିଲେ ମାତ୍ର ୧୧ ଥର ନୃତ୍ୟ କରେ । ପୁଚ୍ଛ ସଞ୍ଚାଳନ ନୃତ୍ୟର ବିଦ୍ୟୁତ୍ ଚୁମ୍ବକୀୟ ଅନୁଶୀଳନରୁ ଜଣାପଡ଼ିଛି ଯେ ଏକ ନିର୍ଦ୍ଦିଷ୍ଟ ହାରରେ ପୁଚ୍ଛ ସଞ୍ଚାଳନ ହୁଏ ।

ଖାଦ୍ୟ ସଂଗ୍ରହ କରିବା ସମୟରେ ମହୁମାଛି ସୂର୍ଯ୍ୟର କୌଣିକ ଅବସ୍ଥିତିକୁ ଲକ୍ଷ୍ୟକରେ ଓ ଫେଣାକୁ ଫେରିଆସି ଏପରି ଭାବେ ପୁଚ୍ଛ ସଞ୍ଚାଳନ ନୃତ୍ୟ କରେ ଯେପରିକି ଏହାର ସରଳରୈଖିକ ଗତିପଥ ସୂର୍ଯ୍ୟ ସହ ସମାନ କୋଣ ସୂଚିତ କରେ । ଅନ୍ୟ କର୍ମୀମାନେ ଅନ୍ୱେଷଣକାରୀ ମହୁମାଛିର ସରଳରୈଖିକ ଗତିପଥ ସହ ସମାନ୍ତରାଳ ଗତିପଥରେ ସୂର୍ଯ୍ୟର ଅବସ୍ଥିତିକୁ ଲକ୍ଷ୍ୟକରି ଖାଦ୍ୟ ଅନ୍ୱେଷଣରେ ଉଡ଼ି ଯାଆନ୍ତି ।

## ମହୁମାଛିର ଆତ୍ମରକ୍ଷା

ମହୁମାଛିର ଶରୀରରୁ ନିର୍ଗତ ଗନ୍ଧ ମଧ୍ୟ ନିର୍ଦ୍ଦିଷ୍ଟ ପ୍ରକାରର ଫୁଲ ସମ୍ବନ୍ଧରେ ସୂଚନା ଦିଏ । ମହୁମାଛିର ମାଢ଼ିରେ ଥିବା ଏକ ଗ୍ରନ୍ଥିରୁ ହେପ୍‌ଟାନୋନ୍ ନାମକ ଏକ ରସ ନିସୃତ ହୁଏ । ଏହା ବିପଦସୂଚକ ଘଣ୍ଟି ଭାବେ କାର୍ଯ୍ୟ କରେ । କୌଣସି ବିପଦର ସମ୍ମୁଖୀନ ହେଲେ ଏହା ନାହୁଡ଼ ସାହାଯ୍ୟରେ ଶତ୍ରୁକୁ ଆକ୍ରମଣ କରେ ଓ କିଛି ହେପ୍‌ଟାନୋନ୍ ମଧ୍ୟ ଉଦ୍‌ଗୀରଣ କରେ । ଏହାର ଗନ୍ଧରେ ଅନ୍ୟ କର୍ମୀମାନେ ମଧ୍ୟ ଶତ୍ରୁ ଆକ୍ରମଣ ପ୍ରତିହତ କରିବାକୁ ଲାଗିପଡ଼ନ୍ତି ।

ଏତଦ୍ ବ୍ୟତୀତ ନାସାନୋଫ୍ ଗ୍ରନ୍ଥିରୁ ନିସୃତ ଗୋରାନିଲ୍ ନାମକ ରସ ଦ୍ୱାରା ଏହା ମହୁଫେଣା ଓ ଖାଦ୍ୟ ଉତ୍ସକୁ ଚିହ୍ନିତ କରେ ଓ ଅନ୍ୟ ସାଥୀ ମହୁମାଛିମାନଙ୍କୁ ଆକୃଷ୍ଟ କରେ ।







A ମହୁମାଛିର ବୃତ୍ତାକାର ନୃତ୍ୟ B ମହୁମାଛିର ପୁଚ୍ଛ ହଲା ନୃତ୍ୟ

## ବିସ୍ମୟକର ଏ ଭାଷ୍ୟ

ସତରେ ଏ ସୃଷ୍ଟି କେଡ଼େ ବିସ୍ମୟପୂର୍ଣ୍ଣ ! ଆମେ ଅତ୍ୟନ୍ତ ଗର୍ବ ଅନୁଭବ କରୁ ଯେ ଆମର କଥା ସ୍ପଷ୍ଟ ଏବଂ ଆମେ ତାଲରେ ଆମ ଭାବ ବିନିମୟ କରିପାରୁ । ସମାଜରେ ରହି ହସଖୁସିରେ ପରସ୍ପର ମଧ୍ୟରେ କଥାବାର୍ତ୍ତା ବିନିମୟରେ ଆମ ସମୟ କାଟିଦେଉ । ସତରେ ଏ କୁନି ପ୍ରାଣୀ ମହୁମାଛିର ବି କଥାବାର୍ତ୍ତା ରହିଛି । ଶୁଣିଲେ ବା ପଢ଼ିଲେ ଆଶ୍ଚର୍ଯ୍ୟ ଲାଗିବ ନିଶ୍ଚୟ । କିନ୍ତୁ ଅନେକ ଦିନ ଆଗରୁ ବିଶିଷ୍ଟ ପ୍ରାଣିବିଜ୍ଞାନୀ ତାହାକୁ ଅଧ୍ୟୟନ କରି ଓ ଗବେଷଣା କରି ଆମକୁ ଜଣାଇପାରିଛନ୍ତି । ଏଥିରୁ ଅନୁମେୟ ଯେ ପ୍ରତ୍ୟେକ ପ୍ରାଣୀର ଭାବ ବିନିମୟ କରିବା ପାଇଁ କିଛି ନା କିଛି ଉପାୟ ରହିଥିବ । ଆମେ ହୁଏତ ତାହାକୁ ଜାଣି ନ ଥିବା । ତାକୁ ଜାଣିଲେ ଆମକୁ ହୁଏତ ଆହୁରି ବିସ୍ମୟ ଲାଗିବ ଯେ ଏ ଜୀବଜଗତ୍ ଆମର କି ସୁନ୍ଦର, ଚମତ୍କାର ମନୋମୁଗ୍ଧକର ଏବଂ ବିସ୍ମୟପୂର୍ଣ୍ଣ !



# ବହି ଖାତା ତା ପ୍ରିୟ, ନିଏ ସେଠି ଆଶ୍ରୟ

## ଏକ ଅଜଣା ଅଶୁଣା ପ୍ରାଣୀ

ପ୍ରାଣିଜଗତ୍‌ରେ କାହାର ବା ଶତ୍ରୁ ନାହିଁ ! ପ୍ରତ୍ୟେକ ପ୍ରାଣୀର କିଛି ନା କିଛି ଶତ୍ରୁ ଅଛନ୍ତି । କିଏ କହାକୁ ମାରିପକାଏ ତ କିଏ କାହାକୁ ଆକ୍ରମଣ କରି ଖାଇବା ହିଁ ପ୍ରାଣୀମାନଙ୍କର ପ୍ରକୃତି । ଖାଦ୍ୟ ଓ ଖାଦକ ସଂପର୍କ ମଧ୍ୟରେ ଗୋଟିଏ ପ୍ରାଣୀ ପାଖକୁ କୌଣସି ପ୍ରାଣୀ ଆକ୍ରମଣ ବା ଶିକାର କରିବାକୁ ଆସିଲେ ଶତ୍ରୁ ମୁଖରୁ ନିଜକୁ ବଂଚାଇବା ପାଇଁ ପ୍ରାଣୀ ଆପ୍ରାଣ ଚେଷ୍ଟା କରିଥାଏ । ଉଦାହରଣସ୍ୱରୂପ ସାପଟିଏ ବେଙ୍ଗକୁ ପାଟିରେ ପୂରାଇ ଗିଳିବାକୁ ଚେଷ୍ଟା କରୁଥିବା ସମୟରେ ବେଙ୍ଗ କେଁ କେଁ କଟର କଟର ଶବ୍ଦ କରି ସାପ ପାଟିରୁ ଖସିବା ପାଇଁ ପ୍ରବଳ ଚେଷ୍ଟା କରୁଥାଏ । ଏ ଚେଷ୍ଟାରେ ସାପ ଗିଳିଦେଲେ ସାପଟି ତାର ଶିକାରରେ ସଫଳ ହୁଏ, କିନ୍ତୁ ବେଙ୍ଗ କୌଣସିମତେ ସାପ ପାଟିରୁ ଖସିଗଲେ ବେଙ୍ଗ ତା ଚେଷ୍ଟାରେ କୃତକାର୍ଯ୍ୟ ହୋଇଥାଏ । ଏ ହେଉଛି ପ୍ରାଣିଜଗତ୍‌ର ବିଚିତ୍ର ଖେଳ । ଆଉ ଏ ଖେଳର ଉଦ୍ଦେଶ୍ୟ ହେଉଛି ବଂଚିବା ପାଇଁ ଲକ୍ଷ୍ୟ । ଏଭଳି ବିଚିତ୍ର ଲୀଳା ମଧ୍ୟରେ କଥାକଥାକେ ଶୁଣାଯାଏ ଆମର ଗୋଟିଏ ଜୀବ କଥା । ସେଇଟି ହେଉଛି ସାତକାମୁଡ଼ା । ଶୁଣିଲେ ଆଶ୍ଚର୍ଯ୍ୟ ଲାଗେ ଯେ ସତରେ କଅଣ ଏ ସାତ ଥର କାମୁଡ଼େ ? ହଁ କିଏ କେମିତି ଏପରି ତାର ନାମ ଦେଲା ତାହା ସଠିକ୍ ଭାବେ ଜଣା ପଡ଼େ ନାହିଁ । ଅନେକ କଥା ତ ଭୁଲରେ ଆମର ଏବେ ବି ଲୋକମାନେ କହିବାର ଦେଖାଯାଏ । କେତେଗୁଡ଼ିଏ ଭୁଲ ମଧ୍ୟରେ ଏଇଟା ମନେହୁଏ ଆଉ ଗୋଟିଏ ଭୁଲ କଥା । ତେବେ ସାତକାମୁଡ଼ା ସଂପର୍କରେ ଭୁଲ କଥା ତାର ବ୍ୟବହାର ଓ ପ୍ରକୃତି ଯୋଗୁଁ ହୋଇଥାଇପାରେ ବୋଲି ଅନୁମେୟ । ତେବେ ପ୍ରାୟ ୨୨ଟି ବିଭିନ୍ନ ଜାତିର ସାତକାମୁଡ଼ା ଭାରତରେ ଦେଖାଯା'ନ୍ତି । ଆମ ବହିପତ୍ର ଓ ଲୁଗାପଟା ନଷ୍ଟ କରୁଥିବା ଦୁଇଟି ସାଧାରଣ ସାତକାମୁଡ଼ାଙ୍କ ବୈଜ୍ଞାନିକ ନାମ ହେଉଛି *Lepisma saccharina* ଓ *Ctenolepisma longicaudata* ।

## କେଉଁଠି ଦେଖାଯାଏ ?

ବହି ଥାକରୁ କେତେଦିନ ହେଲା କଢ଼ା ହୋଇ ନ ଥିବା ବହିଟିଏ ଅବା ଗୋଟିଏ କାଗଜ ଫାଇଲ ଟାଣି ଆଣି ଫିଟାଇ ବସିଲେ, କାନ୍ଥରେ ଟଙ୍ଗା ହୋଇଥିବା ଧୂଳି ଲାଗିଯାଇଥିବା ଫଟୋର କାଚରେ ସଫା କରିବାକୁ ଉଠାଇ ଆଣିଲେ କିମ୍ବା ସକାଳେ

ଚାଳ ଉପରେ ପାଲଟା ଗାମୁଛାଟି ଖରାରେ ଶୁଖିଯିବା ଲାଗି ପକାଇ ଦେଇଥିଲେ ତାକୁ ଉପରବେଳା ତୋଳିଆଣିଲେ ଦେଖିବାକୁ ମିଳେ ଯେ ସର ସର ହୋଇ ଚକଚକିଆ ବାଦାମୀଅଂଶିଆ ଧୂସର ବା ଧଳା ପୋକଗୁଡ଼ିଏ ଦୌଡ଼ି ପଳାଇ ଯାଉଛନ୍ତି । ଦୈବାତ୍ କାହାରି ଉପରେ ଆଙ୍ଗୁଠି ପଡ଼ିଗଲା, ଦେଖିଲେ ଟିପରେ ତାଙ୍କ ଦେହର ରଙ୍ଗ ଲାଗିଯାଇଛି । ବର୍ଦ୍ଧମାନ କାଚ (Magnifying Glass) ବା ଯବକାଚ ତଳେ ଆଙ୍ଗୁଠିଟି ରଖିଲେ ଦେଖିବେ ରଙ୍ଗ ନୁହେଁ ଧୂଳି ନୁହେଁ, ତାହା ପୋକ ଦେହକୁ ଘୋଡ଼ାଇ ରଖି ଥିବା ଅତି ସାନ ସାନ ଚକ୍‌ଚକ୍ କରୁଥିବା କାତି ।

## ଶରୀର ଗଠନ

ଏଇ ପୋକଗୁଡ଼ିକ ମୁଣ୍ଡ ପାଖରୁ ପଛ ଆଡ଼କୁ କ୍ରମଶଃ ସରୁ । ଲମ୍ବା ପ୍ରାୟ ଦୁଇ ସେଣ୍ଟିମିଟର । ମୁଣ୍ଡରୁ ସାମନା ଆଡ଼କୁ ଦୁଇଟି ଶୃଙ୍ଗିକା ପ୍ରସାରିତ । ସେହିପରି ପଶ୍ଚାତ୍‌ଭାଗରେ ମଝିରୁ ଗୋଟିଏ ଓ ଦୁଇକଡ଼ରୁ ଗୋଟିଏ କରି ସରୁ ଶୃଙ୍ଗିକା ପରି ଉପାଙ୍ଗ ପଛଆଡ଼କୁ ବିସ୍ତୃତ । ତାହା ଛଡା ସବୁ ପତଙ୍ଗଙ୍କ ପରି ଏମାନଙ୍କର ବକ୍ଷ ଦେଶରୁ ବାହାରିଥିବା (ପତଙ୍ଗଙ୍କ ଦେହ ତିନିଭାଗରେ ବିଭକ୍ତ ଯଥା - ମସ୍ତକ, ବକ୍ଷ ଓ ଉଦର) ପ୍ରତି ପାଖରେ ତିନୋଟିକରି, ଏପରି ମୋଟ ତିନି ଯୋଡ଼ା ପଦ ଦେଖିବାକୁ ମିଳିଥାଏ । ଦେହ ଉପରେ ରହିଥିବା କାତି ଧାତୁ ପରି ଚକ୍ ଚକ୍ କରୁଥାଏ । ଏମାନଙ୍କର ସାଦୃଶ୍ୟ କେତେକ ପରିମାଣରେ ମାଛ ପରି ହୋଇଥିବାରୁ, ଇଂରାଜୀରେ ଦିଆଯାଇଥିବା ନାମର ଅର୍ଥ 'ରୁପାମାଛ' । ଏହି ପତଙ୍ଗର ଅନ୍ୟ ଇଂରାଜୀ ନାମ 'ଭଙ୍ଗୁର-ଲାଞ୍ଜ' ଓ 'ଜ୍ୱଳନ୍ତ କାଷ୍ଠଖଣ୍ଡ' । ଏପରି ନାମକରଣ କାହିଁକି ହେଲା କିଏ କହିବ ? ଓଡ଼ିଆରେ ବା ଏହାର ନାମ ସାତକାମୁଡ଼ା କାହିଁକି ? ଏ ପୋକ ତ ମଣିଷକୁ କାମୁଡ଼ିବା ଜଣା ନାହିଁ ।

ପୃଥିବୀରେ ଯେତେ କୀଟପତଙ୍ଗ ଅଛନ୍ତି, ସେମାନଙ୍କ ମଧ୍ୟରେ ସାତକାମୁଡ଼ା ଅତି ପ୍ରାଚୀନ । ଏମାନେ ପକ୍ଷହୀନ । କେତେକ ପତଙ୍ଗ, ଅର୍ଥାତ୍ :- ପିମ୍ପୁଡ଼ି,ଉଇ ଓ ଛାରପୋକ ଆଦିଙ୍କର ପୂର୍ବ ବଂଶଧରମାନଙ୍କର ପକ୍ଷ ଥିଲା, କାଳକ୍ରମେ ସେମାନଙ୍କର ପକ୍ଷ ଲୋପ ପାଇଯାଇଛି, ମାତ୍ର ସାତକାମୁଡ଼ା ପୋକଙ୍କର ପକ୍ଷ କେବେ ନ ଥିଲା, ଏବେ ତ ସହଜେ ନାହିଁ । କେତେକ ସାତକାମୁଡ଼ାଙ୍କ ଆଖି ଅଛି, ଆଉ କେତେକଙ୍କର ଆଖି ଖୁବ୍ ସାନ । ଏମାନଙ୍କ ମୁଖ୍ୟ ଆହାର ବହି-ଖାତା ବନ୍ଧେଇରେ ଦିଆଯାଇଥିବା ଅଠା । ମଣ୍ଡ ଦିଆ ଲୁଗା କପଡ଼ାରେ ମୁହଁ ମାରି ଖତରା କରି ଦେବାରେ ସାତକାମୁଡ଼ା ବେଶ୍ ପାରଙ୍ଗମ । ଏଥିପାଇଁ ଘରମାନଙ୍କରେ ନୂଆ ଲୁଗାପଟା ବେଶିଦିନ ସାଇତି ରଖନ୍ତି ନାହିଁ । ଥରେ ହେଲେ ବ୍ୟବହାର କରି ଧୋଇ ଦିଅନ୍ତି । ନଚେତ୍ ରଖିଲେ ଗନ୍ଧକର୍ପୂର ଦେଇ ରଖନ୍ତି । କାଗଜର ଚକ୍‌ଚକ୍ ଅଂଶକୁ କୋରି ଖାଇବା ଗୃହବାସୀ ସାତକାମୁଡ଼ାମାନଙ୍କର ଏକ ବିଶେଷ ଅଭ୍ୟାସ ।

## ସାତକାମୁଡ଼ାର ବ୍ୟବହାର

ପୃଥିବୀର ବିଭିନ୍ନ ସ୍ଥାନରେ ପ୍ରାୟ ୧୨୦୦ ଜାତିର ସାତକାମୁଡ଼ା ପୋକ ଦେଖାଯାନ୍ତି । ଘରମାନଙ୍କରେ ଦେଖାଗଲେ ମଧ୍ୟ ଏହି କୀଟମାନଙ୍କର ମୁଖ୍ୟ ଆଶ୍ରୟ ସ୍ଥଳ ହୋଇଛି ଗଛର ବକଳାତଳ, ସଢ଼ା କାଠର ତଳ, ପଥର ତଳ, ମାଟିର ଫାଟ ଓ ଜଙ୍ଗଲରେ ଜମା ହୋଇଥିବା ଶୁଖିଲା ପତର ତଳ ଇତ୍ୟାଦି । ଉଇ ହୁଙ୍କା, ସମୁଦ୍ର ତଟ ଓ ହିମାଳୟ ଅଞ୍ଚଳରେ ମଧ୍ୟ ସାତକାମୁଡ଼ା ବାସ କରନ୍ତି । ପିମ୍ପୁଡ଼ି ଗାତରେ ଖୋଜିଲେ ସାଁତକାମୁଡ଼ା ଦେଖାଯାଏ । ମିଳିବେ ନାହିଁ କେବଳ ଯଦି ଖୋଜନ୍ତି ସଜ ମଇଳା ଗଦା ତଳେ । ଏମାନେ ଆଲୋକ ସହିପାରନ୍ତି ନାହିଁ । ଏଣୁ ଆଲୁଅରେ କାଗଜ ବା ଲୁଗା ଝାଡ଼ି ଦେଲେ, ଏମାନେ ଭୂଇଁରେ ପଡ଼ି ତରବର ହୋଇ ଅନ୍ଧାରୁଆ ସ୍ଥାନକୁ ପଳାଇଯାନ୍ତି । ଏମାନଙ୍କର ବାସସ୍ଥଳ ହେଉଛି ଶୀତଳ ସନ୍ତସନ୍ତିଆ ଅନ୍ଧାରୁଆ ସ୍ଥାନ । ତେବେ ଏମାନଙ୍କୁ ଘରର ଉଷୁମ ସ୍ଥାନରେ ଯେ ନ ପାଇବେ ଏପରି ନୁହେଁ ।

## ଜୀବନ ଇତିହାସ

ପ୍ରଜାପତି,ମାଛି ଓ ମଶା ଆଦି କୀଟଙ୍କ ଜୀବନ ଇତିହାସ ଜଟିଳ । ଏମାନେ ଅଣ୍ଡା-ଲାର୍ଭା- ପ୍ୟୁପା ଅବସ୍ଥା ପାର ହୋଇସାରିଲା ପରେ ଇମାଗୋ ବା ବୟଃପ୍ରାପ୍ତ ଅବସ୍ଥାରେ ପହଞ୍ଚନ୍ତି । ଗୋଟିଏ ଅବସ୍ଥା ଯଥା ଲାର୍ଭା ହିଁ ବୟଃପ୍ରାପ୍ତ ଅବସ୍ଥାଠାରୁ ଏକାବେଳକେ ଧରଣ ଧାରଣରେ ଭିନ୍ନ । ମାତ୍ର ସାତକାମୁଡ଼ା ପୋକ ବେଳକୁ ସେସବୁ ଝିଞ୍ଝଟ ନାହିଁ । ମାଈ ଧଳା ଅଣ୍ଡା ଦେଇ ଚାଲିଗଲା ପରେ ସେଥିରୁ ଯେଉଁ ଛୁଆ ଫୁଟେ, ସେ ଦେଖିବାକୁ ଅବିକଳ ବଡ଼ଙ୍କ ପରି, କେବଳ ଆକାରରେ ଯାହା ସାନ । ପାଞ୍ଚ- ଛଅ ଥର ଖୋଳପା ଛାଡ଼ିବା ପରେ, ଅଣ୍ଡାରୁ ବାହାରିଥିବା ଛୁଆ ଇମାଗୋ ବା ପୂର୍ଣ୍ଣାଙ୍ଗ ଅବସ୍ଥା ପ୍ରାପ୍ତ ହୁଏ ।



ସାତ କାମୁଡା

ମାଈ ସାତକାମୁଡ଼ା ଗୋଟିଏ ଋତୁରେ ତିରିଶଟି ଯାଏ ଅଣ୍ଡା ଦେଇଥାଏ । ବିବର୍ତ୍ତନ ଦୃଷ୍ଟିରୁ ଉଚ୍ଚତର କୀଟମାନଙ୍କ ତୁଳନାରେ, ଏମାନଙ୍କ ଜୀବନ ଇତିହାସରେ କେତେକ ବିଚିତ୍ର କଥା ଦେଖିବାକୁ ମିଳେ । ପ୍ରଜାପତି,ମାଛି ଅବା ଅସରପା କଥା କହନ୍ତୁ, ସେମାନେ ଥରେ ବୟଃପ୍ରାପ୍ତ ହେଲେ, ସେମାନଙ୍କ ଦେହରୁ ଆଉ ଖୋଳପା ଛାଡ଼େ ନାହିଁ । ଅଣ୍ଡାରୁ ଫୁଟି ବାହାରିବା ପରେ ଲାର୍ଭା ଅବସ୍ଥାରେ ଏକାଧିକବାର ଖୋଳପା ଛାଡ଼େ, ମାତ୍ର

ଲାର୍ଭାରୁ ପ୍ୟୁପା ଅବସ୍ଥା ପାଇଲା ପରେ, ପ୍ୟୁପାର ଖୋଳପା ଫୁଟାଇ ଇମାଗୋ ବା ବୟଃପ୍ରାପ୍ତ ଅବସ୍ଥା ଥରେ ଆସିଗଲା ତ କାମ ଶେଷ; ସେ ଯେତେଦିନ ବଞ୍ଚୁ, ଦେହରୁ ଆଉ ଖୋଳପା ଛାଡ଼ିବା କଥା ନାହିଁ । ମାତ୍ର ସାତକାମୁଡ଼ା ବେଳକୁ କଥା ନିଆରା । ଅଣ୍ଡାରୁ ଫୁଟିଲା ପରେ ପାଞ୍ଚ ଛଅ ଥର ଖୋଳପା ଛାଡ଼ି ବୟଃପ୍ରାପ୍ତ ଅବସ୍ଥାକୁ ଆସିଲା ପରେ, ଏକବର୍ଷରୁ ଚାରିବର୍ଷ ଜୀବନକାଳ ଭିତରେ ସେ ପୁଣି ଷାଠିଏଥର ଯାଏ ଖୋଳପା ଛାଡ଼ିଥାଏ ।

## ଜିନିଷ ସୁରକ୍ଷା

ଆମ ଘରେ ବାସ କରୁଥିବା ସାତକାମୁଡ଼ା ସିନା ବହି, କାଗଜ, ନୂଆ ଲୁଗାକୁ ନଷ୍ଟ କରିପକାନ୍ତି, ହେଲେ ଯେଉଁ ସାତକାମୁଡ଼ା ମନୁଷ୍ୟ ବାସ ଭିନ୍ନ ଅନ୍ୟତ୍ର ବାସ କରନ୍ତି, ସେମାନେ ମନୁଷ୍ୟର କୌଣସି କ୍ଷତି କରିବାର ଜଣା ନାହିଁ । ଘରେ ଯେଉଁଠି ଏମାନଙ୍କର ଉତ୍ପାତ ପ୍ରବଳ, ସେଠାରେ ୫% ଡ଼ି.ଡ଼ି.ଟି., ୨.୫% କ୍ଲୋରୋଡ଼େନ୍,୧% ଲିନ୍ଡ଼େନ୍, ୦.୫% ଡ଼ାଇଏଲଡ୍ରିନ୍ ଅଥବା ୧% ପାୟରେଥ୍ରିନ୍ ସିଞ୍ଚନ କଲେ ଉପକାର ମିଳେ । ତେବେ ଏ ସବୁ ରାସାୟନିକ ପଦାର୍ଥ ପରିବର୍ତ୍ତେ ଘରର ସାଇତା ଜିନିଷଗୁଡ଼ିକୁ ଭଲଭାବରେ ଖରାରେଦେଇ ରଖିଲେ ଏ କୀଟ କିଛି ନଷ୍ଟ କରିପାରିବେ ନାହିଁ । ଥଣ୍ଡା ସ୍ଥାନ ଏମାନଙ୍କ ପ୍ରିୟ ହୋଇଥିବାରୁ ଥଣ୍ଡା ସ୍ଥାନ ବା ଭୂଇଁକୁ ଲାଗିଥିବା ସ୍ଥାନଗୁଡ଼ିକରେ ଘରର ଜିନିଷ ନ ରଖିବା ଉଚିତ ।

ସାତକାମୁଡ଼ାର ଚଳଚଞ୍ଚଳ ପ୍ରକୃତି ବଡ଼ ଆକର୍ଷଣୀୟ । ଅନ୍ଧାର ଥଣ୍ଡା ସ୍ଥାନ ଏମାନଙ୍କର ପ୍ରିୟସ୍ଥାନ । ହଠାତ୍ ଅବ୍ୟବହୃତ ପୁରୁଣା ବହି ଖୋଲିଦେଲେ ଯଦି ହାତୁଡ଼ରେ ବା ଆଖିରେ ପଡ଼ିଯାଏ ଅଥବା ବହି ଖୋଲୁ ଖୋଲୁ ସେମାନଙ୍କ ଉପରେ ଆଲୁଅ ପଡ଼ିଯାଏ ସେମାନେ ଆଖିପିଛୁଳାକେ ଉଭେଇଯାଆନ୍ତି । ଲୁଚିଯାଆନ୍ତି ନିଜକୁ ରକ୍ଷାକରିବା ପାଇଁ । ଲୁଚି ଲୁଚି ଆମର ବହି ଖାତା ଓ ଲୁଗାଆଦି ନଷ୍ଟ କରିପକାନ୍ତି । କିନ୍ତୁ ଆମକୁ କଦାପି କାମୁଡ଼ିବାର ଦେଖାଯାଏ ନାହିଁ । ଧରିପକାଇଲେ ଖୁବ୍ ନରମ ଶରୀର ଚିପି ହୋଇ ସାତକାମୁଡ଼ା ମରିଯାଏ । ଆଉ ହାତରୁ ଖସିଗଲେ ଚିକ୍ ଚିକ୍ ରୁପେଲି ରଂଗ ପରି କିଛି ଅଂଶ ହାତରେ ଲାଗିଯାଏ । ଇଂରାଜୀରେ ରୁପାମାଛ ବା ସିଲ୍‌ଭର ଫିସ୍ (Silver fish) କୁହାଗଲେ ବି ଏହା ଆଦୌ ମାଛ ନୁହେଁ । ଏ କଥାଟି କୁହାଯିବାର କାରଣ ମାଛ କାତି ପରି ଖୁବ୍ ସାନ ସାନ କାତିରେ ଦେହସାରା ପୂର୍ଣ୍ଣ ହୋଇଥିବାରୁ । ଏହା ଏକ ସନ୍ଧିପଦ (Arthropod) କୀଟ । ଏହା ପ୍ରତି ସାବଧାନ ହେବାକୁ ହେଲେ ଯତ୍ନରେ ଆମର ପ୍ରିୟ ଖାତାପତ୍ର ଓ ଲୁଗାପଟାକୁ ସାଇତି ରଖିବା ଦରକାର ।



# କଙ୍ଗାରୁ ନୁହେଁ କି ମୂଷା ନୁହେଁ – କଙ୍ଗାରୁମୂଷା

## ଏକ ବିଚିତ୍ର ପ୍ରାଣୀ

ମୂଷା ତ ଏକ ସାଧାରଣ ଜୀବ । ଅଛନ୍ତି ଅନେକ ପ୍ରକାରର । ଚାଳୁଆ ମୂଷା, ଗାତୁଆ ମୂଷା, ଗୁଣ୍ଡୁଚିମୂଷା, ବିଲ ମୂଷା, ଡୁଙ୍ଗେଇ ମୂଷା ଓ ଧଳା ମୂଷା ଇତ୍ୟାଦି । ପିଲା ଠାରୁ ଆରମ୍ଭ କରି ବଡ଼ପର୍ଯ୍ୟନ୍ତ ସମସ୍ତେ ଦେଖିଥିବେ ବୋଲି ବିଶ୍ୱାସ । କିନ୍ତୁ କଙ୍ଗାରୁ ଏପରି ଏକ ଜୀବ, ଯାହାକୁ ଅଧିକାଂଶ ଦେଖି ନ ଥାଆନ୍ତି । ପ୍ରାଣୀଟିର ଘର ହେଉଛି ଅଷ୍ଟ୍ରେଲିଆ ମହାଦେଶ । ପଛଗୋଡ଼ ଦୁଇଟିରେ ଯିବା ହିଁ ଏହାର ବିଶେଷତ୍ୱ । କିନ୍ତୁ ଆଉ ଏପରି ଏକ ଜୀବ ଅଛନ୍ତି ଯିଏକି ମୂଷା ନୁହେଁ କି କଙ୍ଗାରୁ ନୁହେଁ । ସତରେ ଶୁଣିଲେ ବଡ଼ ଅଡୁଆ ଲାଗିବ ଯେ ପୃଥିବୀରେ ଏକପ୍ରକାର ପ୍ରାଣୀ ଅଛନ୍ତି ଯାହାର ନାଆଁ କଙ୍ଗାରୁମୂଷା । କିଏସେ ଏପରି ନାମକରଣ କଲେ କେଜାଣି ! ହେଲେ ପ୍ରାଣୀଟି ସତରେ ଦେଖାଯାଏ ଶୁଖିଲା ବାଲିଆ ସ୍ଥାନରେ ।

## ବିସ୍ତୃତି ଓ ଶରୀର ଗଠନ

ମୂଷା ପୃଥିବୀର ସବୁ ଦେଶରେ ପ୍ରାୟ ସମସ୍ତଙ୍କ ଘରେ ଘରେ ଅଛନ୍ତି । କିନ୍ତୁ 'କଙ୍ଗାରୁମୂଷା ' କେବଳ ଆମେରିକାର ଶୁଖିଲା ମରୁଭୂମିରେ ଦେଖାଯାଆନ୍ତି । ଏମାନଙ୍କ ଗଢ଼ଣ କଙ୍ଗାରୁଙ୍କ ଭଳି । ତେଣୁ ଏମାନଙ୍କୁ ' ବାମନ କଙ୍ଗାରୁ' ବା 'କୁଜି କଙ୍ଗାରୁ' କହିଲେ ଚଳେ । ଏହାର ପଛଗୋଡ଼ ଦୁଇଟି କଙ୍ଗାରୁର ପଛଗୋଡ଼ ପରି ଲମ୍ବ ଓ ଦୃଢ଼ । ଆଗଗୋଡ଼ ଦୁଇଟି ଅତି ସାନ । ଏହା ଗୋଡ଼ ନୁହେଁ ବରଂ ହାତ । କାରଣ ଏହା କେବେ ତଳେ ଲାଗେ ନାହିଁ । କେବଳ ଖାଦ୍ୟପଦାର୍ଥ ଗୋଟାଇ ପାଟିରେ ପୂରାଇବା ଏହାର କାମ ।

କଙ୍ଗାରୁମୂଷା ମୁହଁର ନାକଠାରୁ ଲାଙ୍ଗୁଡ଼ ଅଗ ପର୍ଯ୍ୟନ୍ତ ଏକଫୁଟ ଲମ୍ବ ହୋଇଥାଏ । ତା ମଧ୍ୟରେ ଲାଞ୍ଜଟି ସାତଇଞ୍ଚ ଯାଏ ହୁଏ, ବାକି ପାଞ୍ଚଇଞ୍ଚ ତା ଦେହ । ଦେହ ତୁଳନାରେ ମୁଣ୍ଡଟି ବଡ଼ । ଆଖି ଦୁଇଟା ଗୋଲ ଓ ଉଜ୍ଜ୍ୱଳ । କାନ ଦୁଇଟି ଅତି ସାନ । ଏହା ପଛଗୋଡ଼ ଦୁଇଟିରେ କଙ୍ଗାରୁ ଭଳି କୁଦି କୁଦି ଚାଲେ । ଗୋଟିଏ କୁଦାରେ ଏହା ଛଅ ଫୁଟରୁ ଆଠ ଫୁଟ ପର୍ଯ୍ୟନ୍ତ ବାଟ ଯାଇପାରେ । ତେଣୁ ଦଉଡ଼ି ପଳାଇ ଯାଉଥିଲା

ବେଳେ ଗୋଟିଏ ଚଢ଼େଇ ଉଡ଼ିଯାଉଥିଲା ଭଳି ଦେଖାଯାଏ । କୁଦିଲା ବେଳେ ଦୀର୍ଘ ବଳିଷ୍ଠ ଲାଞ୍ଜଟି ଏହା ଦେହର ଭାରସାମ୍ୟ ରକ୍ଷା କରେ । ତେଣୁ କୁଦିବାକୁ କୌଣସି ପ୍ରକାର ଅସୁବିଧା ହୁଏ ନାହିଁ ।

## କଙ୍ଗାରୁମୂଷାର ଘରସଂସାର

ଅନ୍ୟାନ୍ୟ ମୂଷାଙ୍କ ଭଳି କଙ୍ଗାରୁମୂଷା ଦିନଯାକ ମାଟିତଳେ ଗାତ ଭିତରେ ଶୋଇ ରହେ । ରାତି ହେଲେ ଗାତରୁ ବାହାରେ ଓ ଖାଦ୍ୟ ସଂଗ୍ରହ କରି ବୁଲେ । ଗାତର ପ୍ରଧାନ ମୁହଁ ଘାସବୁଦା ପୂରି ରହିଥିବା ଜଙ୍ଗଲ ଭିତରେ । ଏହା ଗାତ ଭିତରକୁ ବିଶ୍ରାମ ନେବାକୁ ଗଲାବେଳେ ପ୍ରଧାନ ମୁହଁର ଦ୍ୱାର ପଛପଟୁ ବନ୍ଦ କରିଦିଏ । ତେଣୁ ଶତ୍ରୁମାନେ ତା ରହିବା ସ୍ଥାନ ଜାଣିପାରନ୍ତି ନାହିଁ । ଆଉ ଗୋଟିଏ ମୁହଁ ବହୁ ଦୂରରେ ବାଲି ମଧ୍ୟରେ ରହିଥାଏ । ଗାତ ଭିତରେ ବିପଦର ଆଶଙ୍କା କଲେ ସେହି ପଛ ମୁହଁ ବାଟେ ସେ ଉପରକୁ ବାହାରି ବହୁଦୂରକୁ ପଳାଇଯାଏ । ତା'ର ଗାତ ବା ରହିବା ଘର ପ୍ରଧାନତଃ ଦୁଇ ଭାଗରେ ବିଭକ୍ତ । ଗୋଟିଏ ରହିବା ଘର ଏବଂ ଅନ୍ୟଟି ଭଣ୍ଡାର ଘର । ସେ ରାତିରେ ବୁଲି ଖାଦ୍ୟ ସଂଗ୍ରହ କଲାବେଳେ କମ୍ ଖାଏ; ମାତ୍ର ବେଶି ଖାଦ୍ୟ ଆଗର ଟିକି ଗୋଡ଼ ଦୁଇଟିରେ ଧରି ଓ ପାଟି ଭିତରେ ରଖି ଘରକୁ ନେଇଆସି ଭଣ୍ଡାର ଘରେ ସାଇତି ରଖେ । ମହୁମାଛି ପରି ସଞ୍ଚୟ କରିବା ପ୍ରବୃତ୍ତି ତା'ର ବେଶି ହେତୁ ବର୍ଷା ଦିନେ ତାକୁ ଆଉ ପଦାକୁ ବାହାରିବାକୁ ପଡ଼େ ନାହିଁ । ଗୋଟିଏ ଗୋଟିଏ କଙ୍ଗାରୁମୂଷାର ଭଣ୍ଡାର ଘରେ ପ୍ରାୟ ୨୦ କିଲୋଗ୍ରାମ୍ ଓଜନର ଖାଦ୍ୟଶସ୍ୟ ମହଜୁଦ୍ ଥିବାର ଦେଖାଯାଇଛି ।

## ଖାଦ୍ୟ ଓ ପାନୀୟ

ଭଣ୍ଡାର ଘର ହିଁ ଖାଦ୍ୟ ଯୋଗାଏ । ଗହମ, ଯଅ, ଚାଉଳ ଏବଂ ବିଭିନ୍ନ ଗଛର ଛୋଟ ଛୋଟ ମଞ୍ଜି ତା'ର ପ୍ରଧାନ ଖାଦ୍ୟ । ସବୁଠାରୁ ମଜା କଥା ହେଉଛି, ଏ ମୂଷା ଜୀବନରେ କେବେହେଲେ ପାଣି ପିଏ ନାହିଁ । ମରୁଭୂମିରେ ତ ପାଣି ମିଳେ ନାହିଁ– ସେଥିରେ ତା'ର କିଛି ଯାଏ ଆସେ ନାହିଁ । ତାକୁ ପାଣି ପାଖରେ ଛାଡ଼ିଲେ କିମ୍ବା ଘରେ ଆଣି ପୋଷି ପାଣିଦେଲେ ସେ ଆଦୌ ପିଇବ ନାହିଁ । ଆମେ ଜାଣୁ ଯେକୌଣସି ପ୍ରାଣୀର ଜୀବନଧାରଣ ପାଇଁ ଜଳୀୟପଦାର୍ଥ କିଛି ନା କିଛି ଦରକାର । ଜୀବବିଜ୍ଞାନୀମାନେ ପରୀକ୍ଷା କରି ଦେଖିଛନ୍ତି ଯେ ମରୁଭୂମିର ବାଲି ତଳେ ସ୍ଥାନେ ସ୍ଥାନେ ଅତି କ୍ଷୁଦ୍ର ଛତୁଭଳି ରସାଳିଆ ଉଦ୍ଭିଦ ରହିଥାଏ । ଏହାକୁ ଖାଇ କଙ୍ଗାରୁମୂଷା

ତା'ର ପାଣି ଅଭାବ ମେଣ୍ଟାଇ ନିଏ । ଏହି ମୂଷା ଗୋଟିଏ ଘରେ ଗୋଟିଏ ମାତ୍ର ରୁହେ; ଆଉ ଗୋଟିଏ ସେଠାରେ ରହିବା ଅସମ୍ଭବ । କଦବା ଦୁଇଟି ମୂଷା ମଧ୍ୟରେ ଦେଖାସାକ୍ଷାତ ହୋଇଗଲେ ଦୁହିଁଙ୍କ ଭିତରେ ଯୁଦ୍ଧ ଲାଗିଯାଏ । ଗୋଟିଏ ମଲେ ଯାଇ ସେ ଯୁଦ୍ଧ ଶେଷ ହୁଏ– ତା ପୂର୍ବରୁ ନୁହେଁ । ନିଜ ଖାଦ୍ୟଭଣ୍ଡାରକୁ ନିରାପଦ ରଖିବା ପାଇଁ ସେମାନଙ୍କର ଏ ପ୍ରକାର ସ୍ୱଭାବ ।



କଙ୍ଗାରୁ ମୂଷା ଓ ତାର ଛୁଆ

## କଙ୍ଗାରୁ ମୂଷାର ଛୁଆ

ଏମାନଙ୍କର ଛୁଆ ସାଧାରଣତଃ ଜୁନ୍ ଓ ଜୁଲାଇ ମାସରେ ଜନ୍ମ ହୁଏ । ଜନ୍ମର ପନ୍ଦର ଦିନ ପରେ ଆଖି ଫିଟେ । ମାଆ ତାର ପିଲାମାନଙ୍କୁ ଅତି ସାବଧାନରେ ଲୁଚାଇରଖେ । ଦୁଇମାସ ପରେ ପିଲା କୁଦିବାକୁ ସମର୍ଥ ହେଲେ ମାଆକୁ ଛାଡ଼ି ଅନ୍ୟତ୍ର ଚାଲିଯାଏ ଓ ନିଜ ଖାଦ୍ୟଭଣ୍ଡାର ନିଜେ କରେ । ବହୁତ ଜାତିର 'କଙ୍ଗାରୁମୂଷା' ଅଛନ୍ତି । ସେମାନଙ୍କ ମଧ୍ୟରେ ବଡ଼ ଜାତିର ମୂଷା ଲାଙ୍ଗୁଡ଼ ସହ ଚଉଦ ଇଞ୍ଚଯାଏ ଲମ୍ବ ହୁଏ; ସାନ ଜାତିର ମୂଷା ପାଞ୍ଚ, ଛଅ ଇଞ୍ଚରୁ ବେଶି ବଢ଼େ ନାହିଁ । ଖାଦ୍ୟପଦାର୍ଥର ଲୋଭ ଦେଖାଇଲେ ଏମାନେ ବେଶ୍ ପୋଷା ମାନନ୍ତି, ପଛେ ପଛେ ଗୋଡ଼ାନ୍ତି, ଦେହ ଉପରେ ଚଢ଼ି କାନ୍ଧରେ ମୁଣ୍ଡରେ ବସନ୍ତି, ଜାମା ପକେଟ ଭିତରେ ପଶନ୍ତି; ମାତ୍ର ଏମାନଙ୍କୁ ଧରିବାକୁ ଚେଷ୍ଟା କଲେ, କାମୁଡ଼ି ଦେଇ ପଳାଇ ଯାଆନ୍ତି ।



# ଗହୀରମଥାର ବିସ୍ମୟ କଥା

## ଗହୀରମଥା କ'ଣ ଓ କେଉଁଠି ?

କଟକ ଜିଲ୍ଲା ଅନ୍ତର୍ଗତ ୬୫୦ ବର୍ଗ କିଲୋମିଟର ଆୟତନ ବିଶିଷ୍ଟ ଭିତରକନିକା ଅଭୟାରଣ୍ୟରେ ଥିବା ସମୁଦ୍ର ଉପକୂଳ ଗହୀରମଥା କଇଁଚର ସର୍ବବୃହତ୍ ଅଣ୍ଡା ଦେବା କେନ୍ଦ୍ର ବା 'ରୁକରୀ' ରୂପେ ଆନ୍ତର୍ଜାତିକ ଖ୍ୟାତି ଅର୍ଜିଛି । ଗହୀରମଥା ନିକଟବର୍ତ୍ତୀ ୧୦ କିଲୋମିଟର ସମୁଦ୍ର ଉପକୂଳ ବାଲିରେ କେଉଁ ଅନାଦି କାଳରୁ ଓଲିଭ୍ ରିଡ୍‌ଲେ (Olive Ridley) ଜାତୀୟ କଇଁଚ ଲକ୍ଷ ଲକ୍ଷ ସଂଖ୍ୟାରେ ଅସି ଅଣ୍ଡା ଦେଉଛନ୍ତି । ୧୯୭୬ ମସିହାରେ ଏଠାରେ ଏକ ସମୁଦ୍ର କଇଁଚ ଗବେଷଣା କେନ୍ଦ୍ର ପ୍ରତିଷ୍ଠିତ ହେବାପରେ ୧୯୭୭ ମସିହାଠାରୁ କଇଁଚ ଏହି ଅଞ୍ଚଳକୁ ଜାନୁୟାରୀଠାରୁ ମାର୍ଚ୍ଚ ମଧ୍ୟରେ ଆସି ଅଣ୍ଡା ଦେଇଛନ୍ତି ବୋଲି ହିସାବ କରାଯାଇଛି । ଏଥି ମଧ୍ୟରୁ ୧୫୦୦ କଇଁଚକୁ ୧୯୮୧ ମସିହାରୁ ୧୯୮୩ ପର୍ଯ୍ୟନ୍ତ ଚିହ୍ନଟ କରାଯାଇଥିଲା ଏବଂ ସେଥିମଧ୍ୟରୁ ପ୍ରାୟ ୩୦୦ କଇଁଚ ପୁଣି ଆସି ଅଣ୍ଡା ଦେଇଥିଲେ । ଏହି ଧରଣର କଇଁଚର ବୈଜ୍ଞାନିକ ନାମ ହେଲା—"ଲେପିଡୋଚେଲିସ ଓଲିଭାସିଆ" (*Lepidochelys olivacea*) । ଗୋଟିଏ ମାଈ କଇଁଚ ହାରାହାରି ୧୦୦ ରୁ ୧୧୦ଟି ଅଣ୍ଡା ଏପରିକି ୧୮୦ଟି ଅଣ୍ଡା ଦେଇଥାଏ । କିନ୍ତୁ ସର୍ବନିମ୍ନ ଏହା ୪୦ଟି ଅଣ୍ଡା ଦିଏ ବୋଲି ଜଣାଯାଇଛି । ସମୁଦ୍ରରୁ ଅଣ୍ଡା ଦେବା ପାଇଁ ହଜାର ହଜାର ସଂଖ୍ୟାରେ କଇଁଚ ରାତିରେ ଏକତ୍ର ହୋଇ ବାଲି ଉପରକୁ ଆସିବା ବେଳର ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ । ଏହି କଇଁଚ ସମୁଦ୍ରରୁ କିଛି ବାଟ ଆସି ରହିଯାଏ, ନିଃଶ୍ୱାସ ନିଏ, ପୁଣି ଚାଲେ । ଏହିପରି ଯେଉଁଠି ସୁବିଧାଜନକ ସ୍ଥାନ ପାଏ, ସେଠାରେ ତାର ପଛଗୋଡ଼ ଦୁଇଟି ସାହାଯ୍ୟରେ ବାଲି ଖୋଳି ପ୍ରାୟ ଦୁଇ ଫୁଟ ପର୍ଯ୍ୟନ୍ତ ଗାତ କରେ ଏବଂ ତା ଉପରେ ବସି ଅଣ୍ଡା ଦିଏ । ଏହା ପ୍ରାୟ ୨୦ ମିନିଟ ପର୍ଯ୍ୟନ୍ତ ଅଣ୍ଡାଦେବାରେ ଲାଗିପଡ଼େ । ଅଣ୍ଡା ଦେଇସାରିବା ପରେ ସେ ତାର ଆଗ ଗୋଡ଼ ସାହାଯ୍ୟରେ ଗାତଟିକୁ ବାଲିରେ ଘୋଡ଼ାଇ ସମାନ କରିଦିଏ । ସେମାନେ ଅଣ୍ଡା ଦେବା ପରେ ସମୁଦ୍ରକୁ ଫେରିଯାଆନ୍ତି । ବାଲିର ଉଷ୍ମତା ଉପରେ ଅଣ୍ଡାରୁ ଫୁଟୁଥିବା ଛୁଆ ପୁରୁଷ ହେବ କି ମାଈ ହେବ ଜଣାଯାଏ । ୨ ମାସ ପରେ ଅଣ୍ଡାରୁ ଛୁଆ ଫୁଟି ସେଗୁଡ଼ିକ ସମୁଦ୍ରକୁ ଚାଲିଯାନ୍ତି । ଅଣ୍ଡା ଦେଇସାରି ଏପରି ଭାବରେ ସେମାନେ ସେ ସ୍ଥାନ ପରିତ୍ୟାଗ କରି ଚାଲିଯାଆନ୍ତି ଯେ ସହଜରେ ଜଣାପଡ଼େ ନାହିଁ କେଉଁଠି ସେମାନେ ଅଣ୍ଡା ଦେଇଛନ୍ତି ବୋଲି ।

## ଗହୀରମଥାର ପ୍ରାଧାନ୍ୟ

ଗହୀରମଥା ହେଉଛି ପୃଥିବୀର ସର୍ବବୃହତ୍ କଇଁଚ ଅଣ୍ଡାଦେବା କେନ୍ଦ୍ର ବା ରୁକରୀରୂପେ ପରିଚିତ ହୋଇଛି । ଅସାଧୁ ବ୍ୟବସାୟୀ ଏବଂ ମତ୍ସ୍ୟଜୀବୀମାନଙ୍କ ଉତ୍ପାତ ଯୋଗୁଁ ଅଲିଭ୍ ରିଡ୍‌ଲେ କଇଁଚଙ୍କ ବଂଶ ଶୀଘ୍ର ଲୋପ ପାଇଯିବ ବୋଲି ଆଶା କରାଯାଉଥିଲା । ୧୯୮୨ ମସିହାରେ ଭାରତ ଓ ବିଦେଶର କେତେକ ସମ୍ବାଦପତ୍ରରେ ଏହି କିସମର କଇଁଚ ଲୋପ ପାଇଯାଉଥିବା ବିଷୟ ପ୍ରକାଶ ପାଇବା ପରେ ଏବଂ ଦେଶବିଦେଶରୁ ବହୁ ପ୍ରତିଷ୍ଠିତ ପ୍ରାଣିବିଜ୍ଞାନୀ କଇଁଚ ସୁରକ୍ଷା ନିମନ୍ତେ ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଦୃଷ୍ଟି ଆକର୍ଷଣ କରିବାରେ ସେ ଏହି କଇଁଚ ଓ ଅଣ୍ଡାର ସୁରକ୍ଷା ପାଇଁ ଉପକୂଳ ରକ୍ଷାବାହିନୀ, ନୌବାହିନୀ ଓ ରାଜ୍ୟ ସରକାରମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । କେନ୍ଦ୍ର ସରକାର ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ କଇଁଚ ଧରିବା ନିଷେଧ କରି ଏହାକୁ ଏକ ଧର୍ତ୍ତବ୍ୟ ଅପରାଧ ଭାବେ ଘୋଷଣା କରିଥିଲେ ଏବଂ ଏଥି ନିମନ୍ତେ କଠୋର ଦଣ୍ଡର ବ୍ୟବସ୍ଥା କରିଥିଲେ ।



କୁମ୍ଭୀର ଅଣ୍ଡା ଚିତ୍ର

## ଗହୀରମଥାର କଇଁଚ ଓ ସେମାନଙ୍କ ଖାଦ୍ୟ

ସଚେତନ ଯୋଗୁଁ ଉପକୂଳ ରକ୍ଷାବାହିନୀ ଜାହାଜ ''ରାଜହଂସ'' ର ସହାୟତାରେ ପୋଲିସ ଓ ଜଙ୍ଗଲ ବିଭାଗ ଗହୀରମଥା ଅଞ୍ଚଳରେ ୬୬ ଜଣ ଅବୈଧ ଅନୁପ୍ରବେଶକାରୀଙ୍କୁ ଗିରଫ କରିଥିଲେ ଏବଂ ୪ଟି ଟ୍ରଲର ଓ ଦେଶୀ ଡଙ୍ଗା ଧରିଥିଲେ । ଅଲିଭ୍ ରିଡ୍‌ଲେ କଇଁଚ୍ କେବଳ ଗହୀରମଥା ଅଞ୍ଚଳକୁ ଏତେ ସଂଖ୍ୟାରେ ଆସିବାର କାରଣ ହେଉଛି ଯେ, ଭିତରକନିକା ଅଞ୍ଚଳରେ ଲୁଣା ଜଙ୍ଗଲ ଥିବାରୁ ଝଡ଼ିପଡୁଥିବା ପତ୍ର ବିଭିନ୍ନ ନଦୀ ନାଳରେ ସମୁଦ୍ରକୁ ଆସି ସେଥିରୁ ପ୍ରଚୁର ''ଫାଇଟୋପ୍ଲାଙ୍କଟୋନ'' (Phytoplankton) ଜାତ ହୁଏ ଏବଂ ଏଗୁଡ଼ିକ କଇଁଚ ଓ ତାଙ୍କ ଛୁଆର ପ୍ରଧାନ ଖାଦ୍ୟ । ଏହା ବ୍ୟତୀତ ଏଠାରେ ମୀନ ଓ ଛୋଟ ଛୋଟ ମାଛ ପ୍ରଚୁର ପରିମାଣରେ ମିଳନ୍ତି । ଏଗୁଡ଼ିକ ମଧ୍ୟ କଇଁଚମାନଙ୍କର ଖାଦ୍ୟ । ନିରୋଳା ପ୍ରାକୃତିକ ପରିବେଶ ଅଣ୍ଡା ଦେବା ପାଇଁ କଇଁଚମାନଙ୍କ ପକ୍ଷେ ଏକାନ୍ତ ଉପଯୋଗୀ ।

କାରଣ ଗହୀରମଥାର ୨୦ କିଲୋମିଟର ଭିତରେ କୌଣସି ଗାଁଗଣ୍ଡା ନାହିଁ । ଏ ଅଞ୍ଚଳର ସମୁଦ୍ର ବାଲି ମଧ୍ୟ ଅଣ୍ଡା ଦେବା ପାଇଁ ଉପଯୁକ୍ତ । କଇଁଚ ଅଣ୍ଡାରୁ ଛୁଆ ଫୁଟାଇବା ପାଇଁ ଯେଉଁ ଅପରିବର୍ତ୍ତିତ ତାପ ଏବଂ ଆର୍ଦ୍ରତା ଆବଶ୍ୟକ, ତାହା ଗହୀରମଥାର ଉପକୂଳ ଓ ପରିବେଶରେ ରହିଛି ।



**ଗହୀରମଥା ଉପକୂଳରେ ଦୁଇଟି ଅଲିଭ୍ ରିଡ୍‌ଲେ କଇଁଚ ଅଣ୍ଡା ଦେବାକୁ ଯାଉଛନ୍ତି**

ଗହୀରମଥାର ୧୦ କିଲୋମିଟର ବାଲୁକାଶଯ୍ୟାରେ ଏତେସଂଖ୍ୟକ କଇଁଚଙ୍କ ପାଇଁ ଅଣ୍ଡା ଦେବା ନିମନ୍ତେ ଅସୁବିଧା ହେଉଥିବାରୁ ସେମାନେ ସମୁଦ୍ର ତଟରେ ଥିବା ବାଲିବନ୍ଧ ଉପରକୁ ଉଠି ସେଠାରେ ମଧ ଅଣ୍ଡା ଦେଇଥାଆନ୍ତି ।

ଏହି ଅଞ୍ଚଳ ବ୍ୟତୀତ ପାରାଦ୍ୱୀପ ନିକଟବର୍ତ୍ତୀ ହୁକିଟୋଲା, ପୁରୀ ଜିଲ୍ଲାର ପେଣ୍ଠକଟା ଓ ଅସ୍ତରଙ୍ଗ କୂଳରେ ମଧ ଏହି ପ୍ରକାର କଇଁଚ ଅଣ୍ଡା ଦେବାର ଦେଖାଯାଏ । କନିକା ଜମିଦାରୀ ସମୟରେ ପଶ୍ଚିମବଙ୍ଗର ବେପାରୀମାନେ ଆସି ଅଣ୍ଡା ବୋଝେଇ ଡଙ୍ଗା ପ୍ରତି କେବଳ ମାତ୍ର ୧୫ ଟଙ୍କା ମାହାସୁଲ ଦେଇ କଲିକତାକୁ ବିକ୍ରି ନିମନ୍ତେ ନେଇଯାଉଥିଲେ । ଜଙ୍ଗଲ ବିଭାଗ ମଧ ଏଥିପାଇଁ ସେମାନଙ୍କୁ ଲାଇସେନ୍‌ସ ଦେଉଥିଲେ ।

ଏହା ବ୍ୟତୀତ ଦୀଘା ଓ ହଳଦିଆରୁ ବହୁସଂଖ୍ୟକ ଧୀବର ପାଲଟଣା ଡଙ୍ଗା ଓ ଟ୍ରଲର ସାହାଯ୍ୟରେ ଏ ଅଞ୍ଚଳକୁ ଆସି କଇଁଚ ଧରି ନେଇ କଲିକତା ବଜାରରେ ଏହାର ମାଂସ ବିକ୍ରୟ କରୁଥିଲେ । ଏପରିକି ବିଦେଶକୁ ମଧ ପଠାଉଥିଲେ । ବର୍ଷକୁ ପ୍ରାୟ ୪ କୋଟି ଟଙ୍କାର କଇଁଚ ଅଣ୍ଡା ଓ ମାଂସ ବିକ୍ରୟ ହେଉଥିଲା । ୧୯୭୧ ମସିହା ଭାରତୀୟ ଜଙ୍ଗଲ ପ୍ରାଣୀ ସୁରକ୍ଷା ଆଇନରେ ସାମୁଦ୍ରିକ କଇଁଚର ସୁରକ୍ଷା ବ୍ୟବସ୍ଥା ରଖାଯାଇଥିଲା । ତଥାପି ଅସାଧୁ ବ୍ୟବସାୟୀମାନେ ଏଭଳି କାରବାରରେ ଲିପ୍ତ ଥିଲେ ।

ସାଧାରଣତଃ ଅଲିଭ୍‌ରିଡ୍‌ଲେ ଜାତୀୟ ପୁରୁଷ ଓ ମାଈ କଇଁଚଗୁଡ଼ିକ ସେପ୍‌ଟେମ୍ବର ଓ ନଭେମ୍ବର ମାସରେ ସମୁଦ୍ର କୂଳରୁ ପ୍ରାୟ ୪/୫ କିଲୋମିଟର ଦୂରରେ ଏକତ୍ର ଦେଖାଯାଆନ୍ତି । ସେତିକିବେଳେ ସେମାନଙ୍କର କେବଳ ମୁଣ୍ଡଟିମାନ ଦେଖାଯାଏ ଏବଂ ସମୁଦ୍ର ଉପକୂଳରୁ ଦିଗ୍‌ବଳୟ ପର୍ଯ୍ୟନ୍ତ ମାଇଲ ମାଇଲ ଧରି ସମୁଦ୍ର ପାଣି କଳାରଙ୍ଗ ଦିଶୁଥାଏ । ଏ ସମୟରେ ସେମାନେ ଅତ୍ୟନ୍ତ ଦୁର୍ବଳ ଅବସ୍ଥାରେ ଥାଆନ୍ତି । ତେଣୁ ଧୀବରମାନେ ଗିଲଜାଲ ସାହାଯ୍ୟରେ ସେମାନଙ୍କୁ ଧରି ନିଅନ୍ତି । ଓଡ଼ିଶା ଉପକୂଳ ଅଞ୍ଚଳରେ ମାଛ ଧରୁଥିବା ଧୀବରମାନଙ୍କ ଜାଲରେ ଏହି କଇଁଚଗୁଡ଼ିକ ବହୁ ସଂଖ୍ୟାରେ ଧରାପଡ଼ନ୍ତି । ଧୀବରମାନେ ଏଗୁଡ଼ିକୁ ବାଡ଼େଇ ମାରିଦେଇ ସମୁଦ୍ରରେ ଭସାଇଦିଅନ୍ତି । ମଲା କଇଁଚଗୁଡ଼ିକ ହଜାର ହଜାର ସଂଖ୍ୟାରେ ଆସି କୂଳରେ ଲାଗନ୍ତି । ସେ ଦୃଶ୍ୟ ଅତ୍ୟନ୍ତ ମର୍ମନ୍ତୁଦ ।

ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବନ୍ୟ ପ୍ରାଣିବିଜ୍ଞାନୀ ଡଃ ଏଚ.ଆର. ବାସଟାର୍ଡଙ୍କ ସୁପାରିଶ ଅନୁଯାୟୀ ୧୯୭୬ ମସିହାରେ ଗହୀରମଥାଠାରେ ଓଡ଼ିଶା ଜଙ୍ଗଲ ବିଭାଗ ପକ୍ଷରୁ ଏକ କଇଁଚ ଗବେଷଣା କେନ୍ଦ୍ର ରିସର୍ଚ୍ଚ ଅଫିସର ଡଃ ଚନ୍ଦ୍ରଶେଖର କରଙ୍କ ଅଧ୍ୟକ୍ଷତାରେ ପ୍ରତିଷ୍ଠିତ ହୋଇଛି । ୧୯୭୯ ମସିହାରେ ୱାଶିଂଟନଠାରେ ଅନୁଷ୍ଠିତ ସାମୁଦ୍ରିକ କଇଁଚ ବିଷୟକ ଏକ ଆଲୋଚନାଚକ୍ରରେ ଡଃ କରଙ୍କ ଲିଖିତ ''ପୂର୍ବ ଭାରତ ଉପକୂଳ ଅଞ୍ଚଳରେ ସାମୁଦ୍ରିକ କଇଁଚ'' ଶୀର୍ଷକ ପ୍ରବନ୍ଧ ବଡ଼ ଆକର୍ଷଣୀୟ ଓ ମର୍ମସ୍ପର୍ଶୀ ହୋଇଥିଲା । ଜଙ୍ଗଲ ବିଭାଗ ଓ ଉପକୂଳ ରକ୍ଷାବାହିନୀଙ୍କ ତତ୍ପରତା ସତ୍ତ୍ୱେ ଓଡ଼ିଶା ପରିଦର୍ଶନରେ ଆସିଥିବା କେନ୍ଦ୍ର ପରିବେଶ ସୁରକ୍ଷା ଉପମନ୍ତ୍ରୀ ଶ୍ରୀ ଦିଗ୍‌ବିଜୟ ସିଂହ ହଜାର ହଜାର ସଂଖ୍ୟାରେ ମଲା କଇଁଚ ଉଡ଼ାଜାହାଜ ଯୋଗେ ଆକାଶ ମାର୍ଗରୁ ଦେଖିବାକୁ ପାଇଥିଲେ ବୋଲି ସେ ଏକ ସାମ୍ବାଦିକ ସମ୍ମିଳନୀରେ କହିଥିଲେ । ଅବୈଧ ଅନୁପ୍ରବେଶକାରୀମାନଙ୍କୁ ଧରିବା ଦିଗରେ ଜଙ୍ଗଲ ବିଭାଗ ଓ ଉପକୂଳ ପ୍ରତିରକ୍ଷାକାରୀ ବାହିନୀ କେତେକାଂଶରେ ସଫଳ ହୋଇଥିଲେ ମଧ୍ୟ ମାଛ ମାରିବା ପାଇଁ କୌଣସି ନିଷେଧ ଆଦେଶ ନ ଥିବାରୁ ହୁଏତ ଏଭଳି ଅବସ୍ଥା ସୃଷ୍ଟି ହୋଇଥିଲା । ଏବେ ଏକ କୁଳନାସୀଠାରୁ ହାବାଲିଖଟୀ ପର୍ଯ୍ୟନ୍ତ ୧୦ କିଲୋମିଟର ସମୁଦ୍ର ଅଞ୍ଚଳରେ ମାଛ ମାରିବା ନିଷେଧ କରିବା ପାଇଁ ସରକାରୀ ନିଷ୍ପତ୍ତି ଗ୍ରହଣ କରାଯିବା ପରେ ବିଭାଗୀୟ କର୍ତ୍ତୃପକ୍ଷଙ୍କ ପକ୍ଷରୁ ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଛି । ଫଳରେ ଏ ଅଞ୍ଚଳରେ ମାଛ ମାରିବା ହ୍ରାସ ପାଇଥିବା ପ୍ରକାଶ । ଏତଦ୍ ବ୍ୟତୀତ ଧାମରା ମୁହାଣଠାରୁ ମହାନଦୀ ମୁହାଣରେ ଥିବା ହୁକିଟୋଲା ପର୍ଯ୍ୟନ୍ତ ଉପକୂଳବର୍ତ୍ତୀ ସାମୁଦ୍ରିକ ଅଞ୍ଚଳରେ ସେପ୍‌ଟେମ୍ବର ମାସରୁ ଏପ୍ରିଲ ମାସ ପର୍ଯ୍ୟନ୍ତ ମାଛ ମାରିବା ନିଷେଧ କରିବା ପାଇଁ ରାଜ୍ୟସରକାର ବିଚାର କରିବାର ଜଣାଯାଏ । ସମୁଦ୍ର ବାଲି ବନ୍ଧ ଉପରେ ବାତ୍ୟା ପରେ ଝାଉଁଗଛ ଏବଂ

ଆଇପୋମା ଗଛ ଜଙ୍ଗଲ ବିଭାଗ ପକ୍ଷରୁ ଲଗାଯାଇଛି । ତାହା କଇଁଚମାନଙ୍କ ପାଇଁ ପ୍ରତିବନ୍ଧକ ସୃଷ୍ଟି କରୁଛି ବୋଲି କେତେକ ମତ ପ୍ରକାଶ କରିଛନ୍ତି । ଏହା ବ୍ୟତୀତ ଧାମରାରୁ ବସ୍ତା ବସ୍ତା ଛୋଟ (ଚୂଡାଗୁଣ୍ଡି) ଚିଙ୍ଗୁଡ଼ି ଯାହାକି କଇଁଚମାନଙ୍କର ପ୍ରଧାନ ଖାଦ୍ୟ ମତ୍ସ୍ୟ ବ୍ୟବସାୟୀମାନେ ଧରି ବଜାରକୁ ବିକ୍ରୟ ପାଇଁ ପଠାଉଛନ୍ତି । ଏହାକୁ ବନ୍ଦ କରି ଏହି ଅଞ୍ଚଳକୁ ସଂପୂର୍ଣ୍ଣ ସୁରକ୍ଷିତ କରିବା ପାଇଁ ଧାମରା ମୁହାଣରୁ ହୁକିଟୋଲା ପର୍ଯ୍ୟନ୍ତ ସାମୁଦ୍ରିକ ସୁରକ୍ଷିତ ଆଶ୍ରୟସ୍ଥଳ ରୂପେ ଘୋଷଣା କରିବା ଏବଂ ଏ ଅଞ୍ଚଳରେ ଯେପରି କୌଣସି ଜନବସତି କିମ୍ବା ଜନସମାଗମ ନ ହୁଏ, ସେଥିପ୍ରତି ଦୃଷ୍ଟିଦେବାକୁ ବିଶେଷଜ୍ଞମାନଙ୍କ ମତ । ଏହା ବ୍ୟତୀତ ପାଣି କମ ହେତୁ ଉପକୂଳ ରକ୍ଷାବାହିନୀର ଜାହାଜ ସମୁଦ୍ର କୂଳରୁ ୪ କିଲୋମିଟର ଦୂରରେ ରହୁଥିବାରୁ ଅନୁପ୍ରବେଶକାରୀମାନଙ୍କୁ ପ୍ରତିରୋଧ କରିବା ପାଇଁ ଦ୍ରୁତଗାମୀ ମଟର ଲଞ୍ଚର ଆବଶ୍ୟକତା ରହିଛି ।

ଏହି ଅଞ୍ଚଳକୁ ଯିବାକୁ ହେଲେ ଚାନ୍ଦବାଲିରୁ ଡଙ୍ଗା କିମ୍ବା ମଟର ଲଞ୍ଚରେ ବ୍ରାହ୍ମଣୀ ଓ ବୈତରଣୀର ମିଳନ ସ୍ଥଳ ଦୁର୍ଗା ମୁହାଣ ବାଟେ କିଛିଦୂର ଯିବାକୁ ପଡ଼େ । ସେଠାରୁ ଖୋଲାଠାରେ ୨ କିଲୋମିଟର ଏକ କୃତ୍ରିମ ନାଳ ଦେଇ ଭିତରକନିକା ନଦୀ ପଥରେ ଯିବାକୁ ହୁଏ । ବ୍ରାହ୍ମଣୀ ନଦୀର ଶାଖା ପାଠଶାଳା ଓ ମଇଗୁରା ନଦୀ ବାଟେ ଗଲେ ଗହୀରମଥା ପଡ଼େ । ବାଟରେ ଭିତରକନିକା ଅଭୟାରଣ୍ୟର ଡାଙ୍ଗମାଳଠାରେ ପ୍ରସିଦ୍ଧ ବଉଳା କୁମ୍ଭୀର କୃତ୍ରିମ ପ୍ରଜନନ କେନ୍ଦ୍ର ରହିଛି । ଏଠାରେ ଥିବା ନଦୀ ଓ ନାଳରେ ବହୁ ଛୋଟ ବଉଳା କୁମ୍ଭୀର ଓ ପାର୍ଶ୍ୱବର୍ତ୍ତୀ ଲୁଣା ଜଙ୍ଗଲରେ ବହୁ କିସମର ପକ୍ଷୀ ଦେଖିବାକୁ ମିଳନ୍ତି ।

## ଗହୀରମଥାର ସୁରକ୍ଷା ଓ ଯତ୍ନ

ଭିତରକନିକା କୁମ୍ଭୀର ଏବଂ କଇଁଚ ସୁରକ୍ଷା ପାଇଁ ବାର୍ଷିକ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ ହେଉଛି । ଏଥିରେ କେନ୍ଦ୍ର ସରକାର ଶତକଡ଼ା ୫୦ ଭାଗ ସାହାଯ୍ୟ ଦେଉଛନ୍ତି । ଶିମିଳିପାଳ ବ୍ୟାଘ୍ର ଯୋଜନା କେନ୍ଦ୍ର ପକ୍ଷରୁ ସାମୟିକ ଭାବେ ଏହି ଅଭୟାରଣ୍ୟକୁ ୪ଟି ବେତାରଯନ୍ତ୍ର ଯୋଗାଇ ଦିଆଯାଇଛି ଏବଂ ଏଥିମଧ୍ୟରୁ ଗୋଟିଏ ଗହୀରମଥାଠାରେ ସ୍ଥାପିତ ହୋଇଛି । କେନ୍ଦ୍ର ପରିବେଶ ବିଭାଗ ପକ୍ଷରୁ ଗଠିତ ଭାରତୀୟ ସାମୁଦ୍ରିକ କଇଁଚ ବିଶେଷଜ୍ଞ ଦଳର ସଦସ୍ୟ ଚେନ୍ନାଇ ସର୍ପଉଦ୍ୟାନର ଡାଇରେକ୍ଟର ଶ୍ରୀ ରମୁଲସ ହ୍ୱିଟାକେର ଏହି କଇଁଚ କେନ୍ଦ୍ର ପରିଦର୍ଶନ କରି କଇଁଚମାନଙ୍କ ସୁରକ୍ଷା ପାଇଁ କିଭଳି ପଦକ୍ଷେପ ଗ୍ରହଣ କରାଯାଇପାରିବ, ସେ ସମ୍ପର୍କରେ ବିସ୍ତୃତ ମନ୍ତବ୍ୟ ଦେଇଛନ୍ତି ।

●

# ଜୀବଜଗତ୍‌ରେ କଲମିକରଣ

## ଏକ ବିଚିତ୍ର ପ୍ରକ୍ରିୟା

କଲମି ସାଧାରଣତଃ ଉଦ୍ଭିଦ ଜଗତର କେତେକ ଉଦ୍ଭିଦମାନଙ୍କଠାରେ କରାଯାଏ । ଫଳରେ ବିଭିନ୍ନ କିସମର ଫୁଲ ଓ ଫଳ ସୁବିଧାରେ ଗଛରୁ ମିଳିଥାଏ । ଗୋଟିଏ ଗୋଟିଏ ଫୁଲ ଗଛରେ କଲମି ଫଳରେ ବିଭିନ୍ନ ରଂଗର ଫୁଲ ଫୁଟିଥାଏ । ଫଳଗଛଗୁଡ଼ିକରେ ଛୋଟ ଗଛରେ ବେଶ୍ ବଡ଼ ବଡ଼ ଫଳ ମଧ୍ୟ ଫଳିଥାଏ । ଏ ହେଉଛି ବୈଜ୍ଞାନିକମାନଙ୍କର ଗବେଷଣାର କୃତିତ୍ୱ । ତେବେ କଲମି ଅନେକ ଅନେକ ବର୍ଷ ଆଗରୁ ଗଛଗୁଡ଼ିକରେ ସୁବିଧାରେ କରାଯାଇପାରିଥିଲା । ମାତ୍ର ଜୀବଜଗତରେ ସମ୍ଭବ ହୋଇ ନ ଥିଲା । ଅବଶ୍ୟ ଏ ପ୍ରକାର ଅସମ୍ଭବ ସମ୍ଭବ ହୋଇପାରିଛି ଆମ ବୈଜ୍ଞାନିକମାନଙ୍କର ପ୍ରଚେଷ୍ଟା ଫଳରେ । ଏକପ୍ରକାର ମେଣ୍ଢା କ୍ଷେତ୍ରରେ ପ୍ରାଣୀ କଲମିକରଣ ପ୍ରଥମେ ଏ ସଫଳତା ହାସଲ କରିପାରିଛି । ତେବେ ସଫଳତା ପଛରେ ରହିଛି କଲମିକରଣର ଭିତ୍ତି ବୈଜ୍ଞାନିକମାନଙ୍କର ଆପ୍ରାଣ ଉଦ୍ୟମ ଓ ଅନେକ ପରୀକ୍ଷା ।

ଯେଉଁ ତତ୍ତ୍ୱ ଅନୁସାରେ ଡଲିର ଜନ୍ମ, ତାର ସ୍ରଷ୍ଟା ହେଉଛନ୍ତି ଦୁଇଜଣ ଯୁବବୈଜ୍ଞାନିକ । ତାଙ୍କ ତତ୍ତ୍ୱ ବୁଝିବାକୁ ହେଲେ ପ୍ରଥମେ ଜୀବକୋଷ ସଂପର୍କରେ ଜାଣିବା ଆବଶ୍ୟକ । କଥା ହେଲା ଯେ ପ୍ରତ୍ୟେକ ଜୀବକୋଷ ମଧ୍ୟରେ ଏକ ଗୋଲାକାର ବସ୍ତୁ ଥାଏ । ଯାହାକୁ ଆମେ ନ୍ୟଷ୍ଟି (Nucleus) କହିଥାଉ । ଏହି ନ୍ୟଷ୍ଟିରେ କେତେକ ସୂତାପରି ପଦାର୍ଥ ଥାଏ । ସେହି ପଦାର୍ଥକୁ ଗୁଣସୂତ୍ର ବା କ୍ରୋମୋଜୋମ୍ କୁହାଯାଏ । ଏହି କ୍ରୋମୋଜୋମ୍‌ର ସଂଖ୍ୟା ପ୍ରତ୍ୟେକ ପ୍ରାଣୀ ପାଇଁ ନିର୍ଦ୍ଦିଷ୍ଟ ଥାଏ । ଉଦାହରଣସ୍ୱରୂପ ମଣିଷ ଜୀବକୋଷରେ ୪୬ ଟି କ୍ରୋମୋଜୋମ୍ ଥିଲାବେଳେ, ମକାଗଛର ଜୀବକୋଷରେ ୨୦ ଟି କ୍ରୋମୋଜୋମ୍ ଥାଏ । ଏହି କ୍ରୋମୋଜୋମ୍‌ଗୁଡ଼ିକ ଜୀବର ମୌଳିକ



ମା' ଓ ମେଣ୍ଢା ଛୁଆ

ଗୁଣଗୁଡ଼ିକର କାରକ ବହନ କରିଥାନ୍ତି । ଏହି ମୌଳିକ କାରକଗୁଡ଼ିକୁ ଜିନ୍ ବା ଗୁଣପିଣ୍ଡ କୁହାଯାଏ । ୧୯୫୩ ମସିହାରେ ଏହି ବୈଜ୍ଞାନିକଦ୍ୱୟ ତାଙ୍କ ତତ୍ତ୍ୱରେ ଉଲ୍ଲେଖ କଲେ

ଯେ ଜିନ୍‌ଟି ଡି ଅକ୍‌ସି ରାଇବୋନିଉକ୍ଲିକ ଅମ୍ଳ (D.N.A.) ନାମକ ଜୈବରାସାୟନିକ ଅଣୁରେ ତିଆରି । ଏହି ଅଣୁର ପ୍ରଧାନ ବୈଚିତ୍ର୍ୟ ହେଲା ତାହା ନିଜ ନକଲ ଅବିକଳ ଆଉଗୋଟିଏ ଅଣୁ ଗଠନ କରିପାରେ । ପ୍ରାଣୀ କଲମି କ୍ଷେତ୍ରରେ ଏହି D.N.A.ର ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ ।

## କଲମିକରଣ ଓ ଡଲିର ଉତ୍ପତ୍ତି

ଗୋଟିଏ ନିର୍ଦ୍ଦିଷ୍ଟ ପ୍ରାଣୀର ଜୀବକୋଷକୁ ସେହି ଜାତିର ଅନ୍ୟ ଏକ ପ୍ରାଣୀର ନ୍ୟଷ୍ଟି ସ୍ଥାନାନ୍ତରିତ ହୋଇଥିବା ଏକ ଜୀବକୋଷ ସହିତ ମିଳନ କରାଇ ଯେଉଁ ପ୍ରକ୍ରିୟାରେ ନୂତନ ଭ୍ରୂଣ ସୃଷ୍ଟି କରାଯାଏ; ସେହି ପ୍ରକ୍ରିୟାକୁ ପ୍ରାଣୀ କଲମି ପ୍ରକ୍ରିୟା ବା ଇଂରାଜୀରେ କ୍ଲୋନିଂ (Cloning) କୁହାଯାଏ ।

ଏହି କ୍ଲୋନିଂ ପ୍ରକ୍ରିୟାର ଉଦ୍ଭାବକ ହେଉଛନ୍ତି ବୈଜ୍ଞାନିକ ଇଆନ ଉଇଲ୍‌ମଟ (Ian Wilmut) । ସେ ସ୍କଟଲ୍ୟାଣ୍ଡର ଏଡିନବରା ନିକଟରେ ଅବସ୍ଥିତ ରୋସ୍‌ଲିନ୍ ଇନ୍‌ଷ୍ଟିଚିଉଟ୍ (Roslin Institute, Edinburgh, Scotland) ର ଜଣେ ଭ୍ରୂଣ ବିଜ୍ଞାନୀ । ସେ ଓ ତାଙ୍କର ସହକର୍ମୀମାନେ ଏହି କ୍ଲୋନିଂ ବ୍ୟବସ୍ଥାରେ ଡଲିର ପ୍ରକଳ୍ପ ଆରମ୍ଭ କରିଥିଲେ । ଏଥିପାଇଁ ସେମାନେ ପ୍ରଥମେ ଏକ ଗର୍ଭବତୀ ମାଈ ମେଣ୍ଢାର ପହ୍ଲାରୁ ଜୀବକୋଷ ସଂଗ୍ରହ କଲେ ଏବଂ ସେହି ଜୀବକୋଷକୁ ଏକ ନିଷ୍କ୍ରିୟ ପରିବେଶରେ ସୁସୁପ୍ତି ଅବସ୍ଥାରେ ରଖିଲେ । ଫଳରେ କୋଷଟି ସୁପ୍ତ ଅବସ୍ଥାରେ ଆବଶ୍ୟକ ସମୟ ପର୍ଯ୍ୟନ୍ତ ରହି ପାରିଲା ।

ଏହାପରେ ସେମାନେ ଅନ୍ୟ ଗୋଟିଏ କଳାମୁଣ୍ଡିଆ ମାଈ ମେଣ୍ଢାର ଡିମ୍ବାଶୟରୁ ଗର୍ଭାଧାନ ହୋଇନଥିବା ଡିମ୍ବାଣୁଟିଏ ସଂଗ୍ରହ କଲେ ଏବଂ ସେଥିରୁ ନ୍ୟଷ୍ଟିଟି ବାହାର କରିଦେଲେ । କିନ୍ତୁ ଡିମ୍ବାଣୁ ଭିତରେ କୋଷରସ ଏବଂ ବିଭିନ୍ନ କୋଷୀୟ କଣିକା ଅକ୍ଷତ ରହିଥିଲା । ତା'ପରେ ପୂର୍ବରୁ ସୁସୁପ୍ତି ଅବସ୍ଥାରେ ଥିବା ଜୀବକୋଷଟିକୁ ଆଣି ସେହି ଡିମ୍ବାଣୁ ପାଖାପାଖି ରଖି ସେଥିରେ ମୃଦୁ ବିଦ୍ୟୁତ ତରଙ୍ଗ ସଂଚାର କରାଇଲେ । ଯେମିତି ଛୋଟ ଛୋଟ ପାଣିଫୋଟକା ମିଶି ଗୋଟିଏ ବଡ଼ ଫୋଟକାରେ ପରିଣତ ହୁଏ । ବିଦ୍ୟୁତ୍ ତରଙ୍ଗ ପ୍ରଭାବରେ ନ୍ୟଷ୍ଟିବିହୀନ ଡିମ୍ବାଣୁ ଓ ପହ୍ଲାରି ଜୀବକୋଷଟି ଏକତ୍ର ହୋଇଗଲେ । ଫଳରେ ପହ୍ଲା କୋଷରେ ଥିବା ମାଈ ମେଣ୍ଢାର ସବୁତକ ଗୁଣସୂତ୍ର ନ୍ୟଷ୍ଟିବିହୀନ ଡିମ୍ବାଣୁ ଭିତରେ ଥିବା ଶୂନ୍ୟସ୍ଥାନ ଗ୍ରହଣ କଲା । ପୁନର୍ବାର ବିଦ୍ୟୁତ୍ ତରଙ୍ଗ ସଂଚାର କରାଇବାରୁ ଡିମ୍ବାଣୁ ଭିତରେ ଥିବା ଗୁଣସୂତ୍ରସ୍ଥ ଜିନ୍‌ଗୁଡ଼ିକ ସକ୍ରିୟ ହୋଇ ଉଠିଲେ । ଫଳରେ ଜୈବ ରାସାୟନିକ ପ୍ରକ୍ରିୟା ଆରମ୍ଭ ହେବାରୁ କୋଷ ବିଭାଜନ ହେଲା ଏବଂ ସେଥିରୁ ଗୋଟିଏ ଭ୍ରୂଣ ସୃଷ୍ଟିହେଲା । ଏହି ଭ୍ରୂଣକୁ ଯତ୍ନର ସହିତ ଅନ୍ୟ ଏକ କଳାମୁଣ୍ଡିଆ ମାଈ ମେଣ୍ଢାର ଗର୍ଭାଶୟରେ ସ୍ଥାପନ କରାଗଲା । ଫଳରେ ଏହି

କ୍ଷୁଦ୍ର ଭ୍ରୁଣଟି ୧୯୯୭ ମସିହା ଫେବୃୟାରୀ ମାସରେ ମେଣ୍ଢାଛୁଆଟି ଜନ୍ମଦେଲା । ଏହି ଛୁଆର ନାଁ ଡଲି ।

ଯେଉଁ ମେଣ୍ଢାଟିର ପହ୍ଲାରୁ ଜୀବକୋଷ ସଂଗ୍ରହ ହୋଇଥିଲା ଡଲି (Dolly) ହେଉଛି ତାର ଏକ ଅବିକଳ ନକଲ । କହିବାକୁ ଗଲେ ପ୍ରଥମ ମେଣ୍ଢାର ଏକ ସଂକ୍ଷିପ୍ତ ଜେରକ୍ସ କପି ବା ଅବିକଳ ନକଲ ହେଉଛି ଡଲି ।

## କଲମିକରଣ ଓ ଭବିଷ୍ୟତ

ଡଲିର ଜନ୍ମ ପରେ ବୈଜ୍ଞାନିକମାନେ ମଣିଷ କଲମିକରଣ ପାଇଁ ମଧ୍ୟ ଆଶା ବାନ୍ଧିଲେଣି । ତେବେ କେତେକ ଏହାର ସପକ୍ଷରେ ଗଲାବେଳେ ଅନ୍ୟ କେତେକ ଏହାର ବିପକ୍ଷରେ ଯାଉଛନ୍ତି । ସପକ୍ଷବାଦୀମାନଙ୍କ ମତରେ କ୍ଲୋନିଂ ପ୍ରକ୍ରିୟା ଯୋଗେ ବହୁବୈଜ୍ଞାନିକ,ଡାକ୍ତର,ଇଂଜିନିୟର, କବି, ଲେଖକ ଓ ମହାପୁରୁଷମାନଙ୍କର ଅବିକଳ ନକଲ ମିଳିପାରିବ । କିନ୍ତୁ ବିପକ୍ଷବାଦୀମାନେ କହନ୍ତି ଏହି କଲମିକରଣ ଫଳରେ ଦୁର୍ଦ୍ଧାନ୍ତ ଡକାୟତ, ଗୁଣ୍ଡା ଓ ବଦ୍‌ମାସ ଆଦି ଅପରାଧୀମାନେ ଜନ୍ମହୋଇ ସୃଷ୍ଟିକୁ ଧ୍ୱଂସମୁଖକୁ ଟାଣିନେବେ । ତେବେ ସେ ଯାହାହେଉ ଯଦି କ୍ଲୋନିଂ ପ୍ରକ୍ରିୟାକୁ ଶାନ୍ତି, ପ୍ରଗତି ଓ ସତ୍ ମାର୍ଗରେ ବିନିଯୋଗ କରାଯାଇପାରିବ ତେବେ ଆମର ଏ ସୁନ୍ଦର ସୃଷ୍ଟି ନିଶ୍ଚୟ ମଧୁମୟ ହୋଇଉଠିବ ।

## କଲମିକରଣ ଓ ଅନ୍ୟାନ୍ୟ ପ୍ରାଣୀ

ସତରେ କ୍ଲୋନିଂ ଏ ଯୁଗର ଏକ ଶ୍ରେଷ୍ଠ ଉଦ୍ଭାବନ କହିଲେ ଅତ୍ୟୁକ୍ତି ହେବ ନାହିଁ । କ୍ଲୋନିଂ ଫଳରେ ପ୍ରଥମେ ସୃଷ୍ଟି ହୋଇପାରିଥିଲା ଡଲି ନାମକ ମେଣ୍ଢାଛୁଆ । ଏ ପ୍ରକ୍ରିୟାକରଣ ଆରମ୍ଭ ହୋଇଥିଲା ଗୁଣସୂତ୍ରଜନିତ ଜୈବକୌଶଳ (Genetic Engineering) ପ୍ରକ୍ରିୟା ମାଧ୍ୟମରେ । ପ୍ରଥମ କ୍ଲୋନିଂ ମେଣ୍ଢା ବା କ୍ଲୋନିଂ ସ୍ତନ୍ୟପାୟୀର ସୃଷ୍ଟି ହୋଇପାରିଥିଲା ଏକ ପ୍ରାପ୍ତବୟସ୍କ ମେଣ୍ଢାଠାରୁ ୧୯୯୬ ମସିହାରେ । ଡଲି ପରେ ସୃଷ୍ଟି ହୋଇଥିଲା ପୁଣି କ୍ଲୋନିଂ ମେଣ୍ଢା ଯାହାର ନାମ ଥିଲା ମଲ୍ଲି (Molly) । ଡଲି ଓ ମଲ୍ଲି ପରେ ପରେ ଏହି ପଦ୍ଧତିରେ ଜନ୍ମ ନେଇଥିଲେ କ୍ଲୋନିଂ ମୂଷା । ଏ ମୂଷାର ନାମ ଥିଲା କୁମୁଲିନା । କୁମୁଲିନା ପରି ଜନ୍ମ ହୋଇଥିଲେ ଆଉ ପଚାଶଟି ମୂଷା । କୁମୁଲିନାର ଜନ୍ମ ସମୟ ଥିଲା ୧୯୯୭ ମସିହା ଅକ୍ଟୋବର ମାସ ତିନି ତାରିଖ । କୁମୁଲିନା ଜନ୍ମ ପରେ ବୈଜ୍ଞାନିକମାନେ ଆଉ ତିନୋଟି ବଂଶ ମଧ୍ୟରେ କ୍ଲୋନିଂ କରି ୫୦ଟି ମୂଷା ଜନ୍ମ ଦେବାରେ ସକ୍ଷମ ହୋଇଥିଲେ ଓ ଏ ବୈଜ୍ଞାନିକ ସଫଳତାକୁ ପ୍ରକାଶ କରିଥିଲେ । ଏଭଳି ସଫଳତା ଫଳରେ ବୈଜ୍ଞାନିକଗଣ ବର୍ତ୍ତମାନ ଚିନ୍ତା କରିପାରୁଛନ୍ତି ଯେ ଏ ପ୍ରକ୍ରିୟା ଫଳରେ ଘୁଷୁରିକୁ ଜନ୍ମ ଦେଇ ତାର ହୃତ୍‌ପିଣ୍ଡକୁ ମନୁଷ୍ୟ ଠାରେ ପ୍ରତିରୋପଣ




ଉଇଲମଟଙ୍କ କ୍ଲୋନିଂ ପରୀକ୍ଷା ଦ୍ୱାରା ଡଲିର ସୃଷ୍ଟି

(Transplantation) କରିବା ପାଇଁ । ତା ଛଡ଼ା ଆଉ ଏକ ବିଶ୍ୱାସ ରହିଛି ଯେ ଗୁଣପିଣ୍ଡଜନିତ ଜୈବକୌଶଳ ପ୍ରକ୍ରିୟାରେ ରୂପାନ୍ତରିତ ଗାଈ (Genetically modified cows) ସହିତ ମନୁଷ୍ୟ ରକ୍ତ ସହ ମିଶିପାରୁଥିବା ରକ୍ତ ମଧ୍ୟ ଆବଶ୍ୟକତା ଅନୁଯାୟୀ ଉତ୍ପାଦନ କରାଯାଇପାରିବ । ଫଳରେ ଗୋମେଷାଦି ପ୍ରାଣୀମାନଙ୍କୁ ଭଲରେ ବଂଚାଇରଖିବା ସହ ଲୋପ ପାଇଯାଉଥିବା ଜୀବଜନ୍ତୁଗୁଡ଼ିକୁ ରକ୍ଷା କରାଯାଇପାରିବ । ଆଶା କରାଯାଏ, ବୈଜ୍ଞାନିକମାନଙ୍କର ଏ ପ୍ରକାର ସଫଳତା ହିଁ ଅନେକ ପ୍ରାଣୀମାନଙ୍କର ସୁରକ୍ଷା ତଥା ଜୀବନରକ୍ଷା ଦିଗରେ ଖୁବ୍ ସହାୟକ ହୋଇ ପାରିବ । ବାସ୍ତବିକ କ୍ଲୋନିଂ ଏକବିଂଶ ଶତାବ୍ଦୀର ପ୍ରାଣୀ ଜୀବନ ରକ୍ଷାର ଏକ ଅଭିନବ ପଦକ୍ଷେପ ତଥା ଶ୍ରେଷ୍ଠ ଉଦ୍ଭାବନ ।

●

# ମୂଷା ଡାଆଁଶ କରେ ନିରାଶ

## ବ୍ୟାଧି ଓ ଭାରତ

'ପ୍ଲେଗ' ଏକ ସଂକ୍ରାମକ ରୋଗର ନାମ । ତେବେ ଏହି ଇଂରାଜୀ ଶବ୍ଦଟିର ଅର୍ଥ ହେଉଛି ଅସତ୍,ଅଶୁଭ,ବିପତ୍ତି ତଥା ମାରାତ୍ମକ । ସେଇଥିପାଇଁ ହୁଏତ କେବଳ ପ୍ଲେଗ ରୋଗକୁ ହିଁ 'ମହାମାରୀ' ବୋଲି ନାମିତ କରାଯାଇଛି ।

ଆମ ଦେଶରେ ମ୍ୟାଲେରିଆ, ଡେଙ୍ଗୁଜ୍ୱର ଏବଂ ଏବେ ମହାମାରୀ ମୁଣ୍ଡ ଟେକିଛି । ପ୍ଲେଗ ବା ମହାମାରୀ ଭଳି ମ୍ୟାଲେରିଆ, କଳାଜ୍ୱର ମଧ୍ୟ ଖୁବ୍ ଶୀଘ୍ର ଶୀଘ୍ର ସଂକ୍ରମଣ ହୋଇଥାଏ । ମନେରଖିବା କଥା ଯେ ୧୯୬୭ ରେ ଯେତେବେଳେ ଆମ ଦେଶରେ ମହାମାରୀ ବିଲୋପ ହୋଇଗଲା ବୋଲି ଚାରିଆଡ଼େ ପ୍ରଚାର ହେଲା ଏବଂ ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନ ତାଙ୍କ ୧୯୭୯ର ସୂଚନାପତ୍ରରେ ଏକଥା ଘୋଷଣା କଲା ପରେ ଆମେ ସମସ୍ତେ ଖୁସି ହୋଇଗଲୁ । ଏହା ଆଗରୁ ୧୯୬୦ ଦଶକରେ କୁହାଯାଇଥିଲା ଯେ,ଭାରତରେ ମ୍ୟାଲେରିଆ ପ୍ରାୟ ବିଲୁପ୍ତ । କେନ୍ଦ୍ର ସରକାର ମ୍ୟାଲେରିଆ ନିରାକରଣ ଯୋଜନା ପ୍ରାୟ ବନ୍ଦ କରିଦେଇଥିଲେ । ଏହି କାରଣରୁ ପରିବାର ନିୟୋଜନ ଓ ବସନ୍ତ ଦୂରୀକରଣ ପ୍ରତି ବେଶୀ ଧ୍ୟାନ ଦିଆଯାଇଥିଲା । ଇତି ମଧ୍ୟରେ ବସନ୍ତର ମଧ୍ୟ ନିରାକରଣ ହୋଇଯାଇଛି ବୋଲି ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନ ଘୋଷଣା କରିସାରିଛି ।

## ପ୍ଲେଗ ରୋଗର ଇତିହାସ

ଚିକିତ୍ସା ବିଜ୍ଞାନ ଇତିହାସର ତଥ୍ୟ ଅନୁଯାୟୀ ଭାଗବତରେ ଉଲ୍ଲେଖ ରହିଛି ଏହି ରୋଗର ନାମ । ଅକାରଣରେ ବହୁ ସଂଖ୍ୟାରେ ମୂଷାମାନେ ମରିପଡ଼ିବାର ଦେଖିଲେ ଲୋକେ ଘରଦ୍ୱାର ଛାଡ଼ି ଦୂରସ୍ଥାନକୁ ପଳାଇ ଯାଉଥିବାର ବର୍ଣ୍ଣନା କରାଯାଇଛି ଭାଗବତରେ । କେନ୍ଦ୍ର ଏସିଆ ହିଁ ପ୍ଲେଗର ଆଦି ଜନ୍ମସ୍ଥଳ ବୋଲି ବିଶ୍ୱାସ କରାଯାଏ । ଖ୍ରୀଷ୍ଟପୂର୍ବ ୧୩୨୦ରେ ପ୍ଲେଗର ସନ୍ଧାନ ମିଳିଥିଲା ବୋଲି ମଧ୍ୟ ଦାବି କରାଯାଏ । ୫୪୨ ଖ୍ରୀଷ୍ଟାବ୍ଦରେ ସମ୍ରାଟ ଜଷ୍ଟିନିଆନ୍ ଙ୍କ ରାଜତ୍ୱକାଳରେ ଏହା ବ୍ୟାପିଥିବାର ମଧ୍ୟ ଉଲ୍ଲେଖ ରହିଛି । ତେବେ ଚତୁର୍ଦ୍ଦଶ ଶତାବ୍ଦୀରେ ଭାରତ ସମେତ ଏସିଆ ଏବଂ ଇଉରୋପରେ ଏହା ଉଗ୍ରରୂପ ଧାରଣ କରି ଲକ୍ଷ ଲକ୍ଷ ଲୋକଙ୍କର ମୃତ୍ୟୁର କାରଣ ହୋଇଥିଲା । ସେହି ସମୟରୁ ଏହା'ମହାମାରୀ' ତଥା 'କଳାମରଣ' (Black Death) ଭଳି କଳଙ୍କିତ ଆଖ୍ୟା ବହନ କରି ପରିଚିତ ।

ପ୍ଲେଗ ରୋଗର ଇତିହାସ ବର୍ଣ୍ଣନା କରିଥିବା ଐତିହାସିକମାନଙ୍କ ମତରେ ଖ୍ରୀଷ୍ଟଜନ୍ମ ପୂର୍ବରୁ ୪୧ ଥର ଏବଂ ପରବର୍ତ୍ତୀ ପନ୍ଦର ଶତାବ୍ଦୀ ଭିତରେ ୧୦୯ ଥର ଏହି

ମହାମାରୀ ସଂଘଟିତ ହୋଇଥିଲା । ୧୫୦୦ ରୁ ୧୭୨୦ ଖ୍ରୀଷ୍ଟାବ୍ଦ ଭିତରେ ୪୫ ଥର ଏହା ସର୍ବବ୍ୟାପୀ ରୂପରେ ପ୍ରକାଶ ପାଇଥିଲା । କିନ୍ତୁ ଅଷ୍ଟାଦଶ ଏବଂ ଉନବିଂଶ ଶତାବ୍ଦୀରେ ହ୍ରାସ ପାଇଗଲା ଏହାର ପ୍ରାବଲ୍ୟ ।

୧୬୧୨ ଖୀଷ୍ଟାବ୍ଦରେ ସମ୍ରାଟ ଜାହାଙ୍ଗୀରଙ୍କ ରାଜତ୍ୱ କାଳରେ ଆଗ୍ରାର ପ୍ଲେଗ ମହାମାରୀ ଭାରତରେ ପ୍ଲେଗ ହୋଇଥିବାର ପାଥମିକ ପ୍ରମାଣ ରୂପେ ସ୍ୱୀକୃତ । ୧୮୯୪ର ହଙ୍ଗକଙ୍ଗ୍‌ର ପ୍ଲେଗ ମହାମାରୀ ଭାରତକୁ ସଂକ୍ରମିତ କଲା ୧୮୯୬ ଖ୍ରୀଷ୍ଟାବ୍ଦରେ । ବମ୍ବେ ଏବଂ ହଙ୍ଗକଙ୍ଗ୍ ଭିତରେ ସମୁଦ୍ର ପଥରେ ଜାହାଜ ଚଳାଚଳ ଯୋଗୁଁ ଏଭଳି ପରିଣତି ସୃଷ୍ଟି ହେଲା । ପରବର୍ତ୍ତୀ କାଳରେ ପ୍ଲେଗ ଭାରତର ଅନ୍ୟ ପ୍ରଦେଶକୁ ବ୍ୟାପିବାରେ ଲାଗିଲା । ୧୯୧୮ ମସିହା ଭିତରେ ପ୍ଲେଗଯୋଗୁଁ ଭାରତର ପ୍ରାୟ ଏକକୋଟି ଲୋକ ମୃତ୍ୟୁ ମୁଖରେ ପଡ଼ିଲେ । ଏବେବି ପୃଥିବୀର କେତେକ ଦେଶରେ କାଁ ଭାଁ ଏହି ରୋଗ ପ୍ରକାଶ ପାଉଛି । ହେଲେ ୧୯୬୬ ମସିହାରେ ଭାରତରେ ପ୍ଲେଗଯୋଗୁଁ ଆଠଜଣ ବ୍ୟକ୍ତି ପ୍ରାଣ ହରାଇଥିଲେ । ୧୯୬୮ ମସିହାଠାରୁ ପ୍ଲେଗରେ ଭାରତରେ କେହି ଆକ୍ରାନ୍ତ ହେବା କିମ୍ବା ମରିଥିବାର ପ୍ରକାଶ ନାହିଁ ।

ମହାରାଷ୍ଟ୍ରର ଭୂକମ୍ପ ପ୍ରପୀଡ଼ିତ ଅଞ୍ଚଳରେ ପ୍ରଥମେ ପ୍ଲେଗ ରୋଗ ଦେଖାଯାଇଥିଲା । ମନେହେଉଛି ଆଗେ ଯେଭଳି ମ୍ୟାଲେରିଆ ,କଳାଜ୍ୱର ଓ ଡେଙ୍ଗୁ ଜ୍ୱର ପ୍ରତିହିଂସା-ପରାୟଣ ହୋଇ ଦେଖାଦେଇଥିଲା,ଏବେ ୧୯୯୪ ମସିହା ମହାମାରୀ ସେହିଭଳି ପୁଣି ଦେଖାଦେଇଛି । ୧୯୮୩ ସେପ୍ଟେମ୍ବର ହିମାଚଳ ପ୍ରଦେଶର ଟାଙ୍ଗୁନ୍ ନାମକ ଗାଁରେ ୧୭ ଟି ଲୋକ ନ୍ୟୁମୋନିକ୍ ପ୍ଲେଗରେ ମରିଥିଲେ, କିନ୍ତୁ ତା'ର ଯଥାଯଥ ପରୀକ୍ଷାନିରୀକ୍ଷା ହୋଇପାରି ନ ଥିଲା । ସେ ଗାଆଁଟି ଦୁର୍ଗମ ଅଞ୍ଚଳରେ । ତେଣୁ ରୋଗ ବ୍ୟାପି ନ ଥିଲା । ରୋଗ ବାହାରିବାର ୩ ସପ୍ତାହ ଭିତରେ ବନ୍ଦ ବି ହୋଇଗଲା ।

## ପ୍ଲେଗ କିପରି ହୁଏ ?

ପ୍ଲେଗ ଏକ ପ୍ରାଣୀପ୍ରସାରିତ ରୋଗ । ମୂଷାଜାତୀୟ ପ୍ରାଣୀମାନେ ହିଁ ପ୍ଲେଗ ଜୀବାଣୁର ଭଣ୍ଡାର ରୂପେ ପରିଗଣିତ । ଘରୋଇ ମୂଷାଠାରୁ ଆରମ୍ଭକରି ବଣୁଆ ମୂଷା ତଥା ଅନ୍ୟ ଜାତିର ମୂଷାଙ୍କଠାରେ ଜୀବାଣୁ ବସା ବାନ୍ଧିରହେ । ଗୁଣ୍ଡୁଚିମୂଷା ସମେତ ୨୦୦ ରୁ ଅଧିକ ଜାତିର ମୂଷା ଏଥିପାଇଁ ଦାୟୀ । ଯିଏ ସଂକ୍ରମିତ ମୂଷାକୁ କାମୁଡ଼େ ସେ ମୂଷାଠାରୁ ଜୀବାଣୁ ବହନ କରେ, ଯିଏ ସେଭଳି ମୂଷାକୁ ଖାଏ ସେ ମଧ ବୀଜାଣୁ ସଂକ୍ରମିତ ହେବାକୁ ବାଧ୍ୟ ହୁଏ । ସେଇଥିପାଇଁ ପୋଷା ବିଲେଇ,କୁକୁରଠାରୁ ଆରମ୍ଭ କରି ଜଙ୍ଗଲୀ ଶୃଗାଳ,କୋକିଶିଆଳି ଏବଂ କୁକୁର ହିଁ ରୋଗ ପ୍ରସାରଣରେ ସାହାଯ୍ୟ କରିଥାନ୍ତି । ତାହାଛଡ଼ା ଠେକୁଆ ଓ ଗିନିପିଗ୍‌ମାନେ ମଧ ଏ ବୀଜାଣୁ ବାହକ ହୋଇପାରନ୍ତି ।

ୟେରସିନିଆ ପେଷ୍ଟିସ୍ *(Yersinia pestis)* ନାମକ ବୀଜାଣୁ ଦ୍ୱାରା ପ୍ଲେଗ ରୋଗ ସୃଷ୍ଟି ହୁଏ । ମୂଷା,ମଣିଷ ଏବଂ ଉପରୋକ୍ତ ପ୍ରାଣୀମାନଙ୍କ ଶରୀର ଛଡ଼ା ରକ୍ତ

ବୀଜାଣୁ ଅନ୍ୟ କେଉଁଠି ବଞ୍ଚି ରହି ପାରେନି । ଏହା ଅଧିକ ତାପମାତ୍ରା ସହ୍ୟ କରିବାକୁ ଅକ୍ଷମ । ତେବେ ମୂଷାଗାତର ଚାରିକଡ଼ ମାଟିରେ ବୀଜାଣୁ ପାଖାପାଖି ଏଗାର ମାସ ପର୍ଯ୍ୟନ୍ତ ଜୀବନ୍ତ ଅବସ୍ଥାରେ ରହି ପାରୁଥିବାରୁ ଜଣା ପଡ଼ିଛି । ବୀଜାଣୁ ସଂକ୍ରମିତ ମଲା ମୂଷାର ଗାତରେ ବସବାସ କଲେ ସୁସ୍ଥ ମୂଷା ମଧ ସଂକ୍ରମିତ ହୋଇଯାଏ ।

ହୁଏତ ପ୍ରଥମ ଅବସ୍ଥାରେ ପ୍ଲେଗ କେବଳ ଜଙ୍ଗଲ ଭିତରେ ମୂଷାମାନଙ୍କ ଭିତରେ ସୀମାବଦ୍ଧ ଥିଲା । ମାଣୁଆ ମୂଷାଠାରୁ କେବେ ନା କେବେ ରୋଗ ଡେଇଁଲା ଆମ ଘରମାନଙ୍କରେ ରହୁଥିବା ମୂଷାମାନଙ୍କୁ । ଥରେ ଘରେ ପଶିବାମାତ୍ରେ ମଣିଷମାନଙ୍କୁ ସଂକ୍ରମିତ କରିବାର ପ୍ରକ୍ରିୟା ସହଜ ହୋଇଗଲା ।

ବୀଜାଣୁମାନେ ସିନା ଆଶ୍ରୟ ନିଅନ୍ତି ମୂଷାମାନଙ୍କଠାରେ । କିନ୍ତୁ ର୍ୟାଟ୍ ଫ୍ଲି (Rat flea)ନାମକ ଡାଆଁଶ ଜାତୀୟ ଏକ ପତଙ୍ଗ ରୋଗ ପ୍ରସାରରେ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ଉକ୍ତ ଡାଆଁଶ ସଂକ୍ରମିତ ମୂଷାକୁ କାମୁଡ଼ି ତାର ରକ୍ତ ଶୋଷେ । ରକ୍ତ ମାଧମରେ ବୀଜାଣୁମାନେ ଡାଆଁଶ ପେଟକୁ ଚାଲି ଆସନ୍ତି । ତା'ର ପାଟି ଏବଂ ପାକସ୍ଥଳୀରେ ବଂଶବୃଦ୍ଧି କରି ନିଜର ସଂଖ୍ୟା ବଢ଼େଇ ଚାଲନ୍ତି । ଗୋଟିଏ ଡାଆଁଶ ଥରକୁ ପାଖାପାଖି ୦.୫ ମିଲିଲିଟର ରକ୍ତ ଶୋଷିଥାଏ ଓ ସେଥିରେ ରହିଥାଏ ପାଞ୍ଚହଜାର ସରିକି ବୀଜାଣୁ । ବୀଜାଣୁ ମାନଙ୍କ ସଂଖ୍ୟା ବଢ଼ିଗଲେ ଡାଆଁଶର ପାଟି ଓ ପାକସ୍ଥଳୀରେ ରନ୍ଧ୍ର ବୀଜାଣୁ ମାନଙ୍କ ଦ୍ୱାରା ଭରପୂର ହୋଇଥାଏ । ଫଳରେ ସେମାନେ ରକ୍ତ ଶୋଷି ନ ପାରି ଭୋକରେ ତହଳ ବିକଳ ହୁଅନ୍ତି । ଭୋକ ଆକୁଳରେ ମଣିଷ,ମୂଷା ଯାହାକୁ ପାଆନ୍ତି ତାକୁ କାମୁଡ଼ି ତା' ଦେହ ଭିତରକୁ ବୀଜାଣୁ ବାନ୍ତି କରିପକାନ୍ତି । ଫଳରେ ଉକ୍ତ ଡାଆଁଶ କାମୁଡ଼ାରେ ଆକ୍ରାନ୍ତ ମଣିଷ ଆଉ ମୂଷା ପ୍ଲେଗ ବୀଜାଣୁ ସଂକ୍ରମିତ ହୋଇ ରୋଗର ଶିକାର ହୋଇପଡ଼େ ।

ଆମ ଦେଶରେ ଘରୋଇ ମୂଷା (Rattus rattus) ଅପେକ୍ଷା 'ଟାଟେରା ଇଣ୍ଡିକା' ନାମକ ବଣୁଆ ମୂଷା ପ୍ଲେଗ କରାଇବାରେ ପ୍ରଧାନ ଭୂମିକା ଗ୍ରହଣ କରିଥାଏ । 'ଜେନସ୍ ସିଓପିସ୍', 'ଜେନସ ଆଷ୍ଟିଆ' ଏବଂ 'ଜେନସ୍ ବ୍ରାଜିଲେନ୍‌ସିସ୍' ଜାତିର ଡାଆଁଶ ଭାରତରେ ପ୍ଲେଗ ପ୍ରସାରଣ ପାଇଁ ଦାୟୀ । ସିଓପିସର ଅବଦାନ ସବୁଠାରୁ ବେଶି । କୌଣସି ଅଞ୍ଚଳର ଏହି ଜାତିର ଡାଆଁଶ ସଂଖ୍ୟା, ମୂଷା ସଂଖ୍ୟା ଏବଂ ମୂଷା ଗାତ ପିଛା ଡାଆଁଶ ସଂଖ୍ୟା ଇତ୍ୟାଦି ରୋଗ ପ୍ରସାରଣକୁ ପ୍ରଭାବିତ କରେ ।

ମହାରାଷ୍ଟ୍ର ଏବଂ ସୁରତରେ ପ୍ଲେଗ ସଂକ୍ରମଣର କାରଣ କୌଣସି ଏକ ସଂକ୍ରମିତ ରୋଗୀଠାରୁ ବିନ୍ଦୁ ସଂକ୍ରମଣ (Droplet infection) ମଧରେ ଅନ୍ୟ ସୁସ୍ଥବ୍ୟକ୍ତି ଆକ୍ରାନ୍ତ ହୋଇଥିବାର ପ୍ରାଥମିକ ତଦନ୍ତରୁ ପ୍ରକାଶ ।

## ପ୍ଲେଗର କାରଣ

ପ୍ଲେଗ ବା ମହାମାରୀର ବାହକ ହେଉଛି ମୂଷାର ଉକୁଣି । କଳାଜ୍ୱରର ବାହକ ହେଉଛି ଶୁଷ୍କ ଅଞ୍ଚଳର ମହୁମାଛି ଏବଂ ମ୍ୟାଲେରିଆ ରୋଗର ବାହକ ହେଉଛି ମଶା ।

ଏ ବାହକମାନେ ଏବେ ଡିଡିଟିକୁ ବେଖାତିର କରୁଛନ୍ତି । କେତେକ ଅଞ୍ଚଳରେ ଯେଉଁଳି ଆମ ରାଜ୍ୟର କନ୍ଧମାଳ ଅଞ୍ଚଳରେ ଓ ପଶ୍ଚିମବଙ୍ଗର ଜଳପାଇଗୁଡ଼ି ଅଞ୍ଚଳରେ ମ୍ୟାଲେରିଆ ଜୀବାଣୁ ଆଉ କ୍ଲୋରୋକୁଇନ୍‌କୁ ମାନୁନାହାନ୍ତି । ବିହାରର କେତେକ ଅଞ୍ଚଳର କଳାଜ୍ୱରର ଜୀବାଣୁ ସୋଡିୟମ୍ ଆଣ୍ଟିମନି ଗ୍ଲୁକୋନେଟ୍‌କୁ ବେଖାତିର କରୁଛନ୍ତି । ପ୍ଲେଗ ବା ମହାମାରୀ ଜୀବାଣୁ ଯେପର୍ଯ୍ୟନ୍ତ ମଣିଷ ସମାଜରେ ନ ପଶିଛି ବେଶ ଚୁପ୍‌ଚାପ୍ ବଣୁଆ ମୂଷାମାନଙ୍କ ଦେହରେ ସୁରୁଖୁରୁରେ ରହିଥାଏ । ମୂଷା ଓ ମୂଷାର ଉକୁଣି ନ ଥିଲେ ମଧ୍ୟ ମୂଷାଗାତ ଭିତରେ, ମାଟି ଭିତରେ ଏହି ପ୍ଲେଗ ଜୀବାଣୁ ବହୁତ ଦିନଯାଏ ବଞ୍ଚି ରହିପାରେ । ପ୍ଲେଗର ଏକ ପ୍ରକାର ଜୀବାଣୁକୁ ଏରସିନିଆ ପେସ୍ଟିସ୍ *(Yersinia pestis)* କୁହାଯାଏ । ଏମାନେ ବଣୁଆ ମୂଷାଙ୍କ ସାଙ୍ଗରେ ଓ ଜାଗାରେ ରହନ୍ତି । ଚାରିଆଡ଼େ ଘରଦ୍ୱାର ତିଆରି ହେଲାବେଳେ, ବିଶେଷତଃ ସହର ଗଢ଼ି ଉଠିଲା ବେଳେ ହିଁ ଏହି ବଣୁଆ ମୂଷାଙ୍କ ଗାତ ଖୋଳି ହୋଇ ମାଟି ଉପରତଳ ହୋଇଯାଏ । ତେଣୁ ସହଜରେ ପ୍ଲେଗ ଜୀବାଣୁ ଉପରକୁ ଆସିଯାଏ । ଏହି କାରଣରୁ ଯେତେ ବେଶି ବେଗରେ ସହର ଗଢ଼ିଉଠେ, ସେତେ ବେଶି ପରିମାଣରେ ମହାମାରୀ ଆଶଙ୍କା ବଢ଼େ । ମାଟି ଓଲଟପାଲଟ ହେଲେ ବଣୁଆ ମୂଷା ଘରେ ପଶେ ଓ ଘର ମୂଷା ସହିତ ମିଶି ସେମାନଙ୍କୁ ସଂକ୍ରମିତ କରିଥାଏ । ସଂକ୍ରମଣ ବହନକାରୀ ଉକୁଣି ଘରେ ବୁଲୁଥିବା ମୂଷା ଦେହକୁ ଆସେ । ମଣିଷ ମୁଣ୍ଡରେ ଗୋଟିଏ ପ୍ରକାର ଉକୁଣି ସିନା ଦେଖାଯାଏ; କିନ୍ତୁ ଦୁନିଆରେ ୧୩୨ ଜାତିର ଉକୁଣି ଅଛି । ଏକଥା ଅନେକେ ଜାଣନ୍ତି ନାହିଁ । ଏହି ଉକୁଣିମାନେ ମଣିଷ ଭଳି ସ୍ତନ୍ୟପାୟୀ ଜୀବମାନଙ୍କ ଦେହରୁ ଉଷ୍ମ ରକ୍ତ ଖାଆନ୍ତି । ରକ୍ତ ଶୋଷିଲାବେଳେ ମହାମାରୀର ଜୀବାଣୁ ଛାଡ଼ନ୍ତି ।

ସହର ଯେତେ ପରିମାଣରେ ବଢ଼ିଚାଲେ ସେହି ଅନୁପାତରେ ଗାଡ଼ିଆ,ପୋଖରୀ ଓ ଖାଲୁଆ ଜମି ପୋତାଯାଏ । ସେ ସବୁ ଜାଗାରେ ରହୁଥିବା ମଶା ଓ ମୂଷାମାନେ ମଣିଷର ଘରେ ପଶନ୍ତି । ଗାଈ,ଗୋରୁର ଗୁହାଳ ଏବଂ କଂସେଇଖାନା ସହରୀ ଆବଶ୍ୟକତାର ଗୋଟିଏ ଅଙ୍ଗ ହୋଇ ପଡ଼ିଛି । କିନ୍ତୁ ସେଗୁଡ଼ିକ ମଶାର ବଂଶବୃଦ୍ଧି କରନ୍ତି । ଏହିସବୁ ଦ୍ରୁତ ସହରୀକରଣ ଯୋଗୁଁ ଆମ ଦେଶରେ ୧୯୬୦ ଦଶକ ତୁଳନାରେ ଗତ ୧୫ ବର୍ଷ ଭିତରେ ୬୪ ଗୁଣ "ମ୍ୟାଲେରିଆ", କଳାଜ୍ୱର ଓ ଠେଙ୍ଗାଜ୍ୱର ଆଦି ବଢ଼ି ଯାଇଛି । ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ଏ ସଂପର୍କରେ କହନ୍ତି ଯେ, ହଠାତ୍ ପ୍ଲେଗ ଆରମ୍ଭ ହୋଇଗଲେ ମଧ୍ୟ ଆମେ କହିପାରିବା ନାହିଁ ଯେ, ସାରା ଦେଶଟି ପ୍ଲେଗ ଦ୍ୱାରା ଆକ୍ରାନ୍ତ ହୋଇପଡ଼ିଲା । ବିଶେଷଜ୍ଞମାନଙ୍କର ଅନୁଧ୍ୟାନରୁ ଜଣାଯାଏ ଯେ, ଦଶବର୍ଷରୁ ଅଧିକ କାଳ ଚୁପ୍ ଚାପ୍ ରହିଲା ପରେ ହଠାତ୍ ପ୍ଲେଗ ଆରମ୍ଭ ହୋଇପାରେ । ବହୁ ପରିମାଣର ଲୋକ ଗୋଟିଏ ଅଞ୍ଚଳରୁ ଅନ୍ୟ ଅଞ୍ଚଳକୁ ଗମନାଗମନ କଲେ ପ୍ଲେଗ ଆରମ୍ଭ ହୋଇଯାଏ । ପାରିପାର୍ଶ୍ୱିକ ପରିବର୍ତ୍ତନ, ପ୍ରାକୃତିକ ବିପର୍ଯ୍ୟୟ ବା ନୂଆ କରି ଗଢ଼ି ଉଠୁଥିବା ଶିଳ୍ପାଞ୍ଚଳ ତଥା ସହର, ବହୁସଂଖ୍ୟକ ଲୋକଙ୍କ ଗମନାଗମନର କାରଣ

ହିଁ ଏ ରୋଗ । ଯଦି ବହୁ ସଂଖ୍ୟାରେ ଲୋକ ଗମନାଗମନ ବନ୍ଦ କରିଦିଆଯାଏ ଏବଂ ଯେ ପର୍ଯ୍ୟନ୍ତ ସବୁ ରୋଗୀ ଭଲ ନ ହୋଇଛନ୍ତି, ସେ ଅଞ୍ଚଳରୁ କାହାରିକୁ ବାହାରକୁ ଛାଡ଼ି ଦିଆ ନ ଯାଏ, ତେବେ କେବଳ ମ୍ୟାଲେରିଆ, କଳାଜ୍ୱର ବା ଠେଙ୍ଗାଜ୍ୱର କାହିଁକି, ନ୍ୟୁମୋନିକ୍ ପ୍ଲେଗ ମଧ୍ୟ ନିୟନ୍ତ୍ରିତ ହୋଇପାରିବ ।

## ରୋଗ ନିର୍ଦ୍ଧାରଣ ପାଇଁ ପରୀକ୍ଷା

ରୋଗୀର ରକ୍ତ, ଖଙ୍କାର, ଗ୍ରନ୍ଥିରୁ ବାହାରୁଥିବା ପୂଯ ଇତ୍ୟାଦିରେ ପ୍ଲେଗ୍ ବୀଜାଣୁ ଅଛନ୍ତି କି ନା ତାହା ପରୀକ୍ଷା କରାଯାଏ । ସ୍ଥଳବିଶେଷରେ ରକ୍ତ, ଖଙ୍କାର ଏବଂ ପୂଯର 'କଲଚର' ମଧ୍ୟ କରିବାକୁ ପଡ଼େ । ରକ୍ତରେ ବୀଜାଣୁ ବିରୋଧୀ ଆଣ୍ଟିବଡ଼ି ତିଆରି ହୋଇଛି କି ନା ତାହା ପରୀକ୍ଷା ହୁଏ । ଜଣଜଣଙ୍କ ପାଇଁ ଛାତିର ଏକ୍ସରେ ଫଟୋ ଉଠାଯାଏ ।

## ରୋଗରେ କ'ଣ ହୁଏ ?

ରୋଗର ଲକ୍ଷଣ ଅନୁଯାୟୀ ପ୍ଲେଗକୁ ତିନି ଭାଗରେ ବିଭକ୍ତ କରାଯାଏ । ଏହି ତିନିପ୍ରକାରର ପ୍ଲେଗ ହେଲା– (୧) ବ୍ୟୁବୋନିକ୍ (Bubonic) ବା ଗ୍ରନ୍ଥି ଜାତୀୟ (୨) ନିମୋନିକ୍ (Pneumonic) ବା ଫୁସ୍‌ଫୁସୀୟ ଏବଂ (୩) ସେପ୍‌ଟିସେମିକ୍ (Septicemic) ବା ସଂଚରିତ । ରୋଗୀର ବୟସ ଏବଂ ଲିଙ୍ଗ ରୋଗକୁ ପ୍ରଭାବିତ କରେ ନାହିଁ ।

**(୧) ଗ୍ରନ୍ଥି ଜାତୀୟ ପ୍ଲେଗ-** ରୋଗର ଲକ୍ଷଣ ହଠାତ୍ ପ୍ରକାଶ ପାଏ । ରୋଗୀ ମାନସିକ ଭାରସାମ୍ୟ ହରେଇ ବସେ । ସେ ସ୍ୱାଭାବିକ ଭାବରେ ଚଳ ପ୍ରଚଳ ହୋଇପାରେ ନାହିଁ । ଦେହରେ ଜ୍ୱର ଆସେ । ମୁଣ୍ଡ ବ୍ୟଥା, ବାନ୍ତି ମାଡ଼େ । ଆଖି ଲାଲ ପଡ଼ିଯାଏ । ଦ୍ୱିତୀୟ କିମ୍ବା ତୃତୀୟ ଦିନ ବେଳକୁ ସାଧାରଣତଃ କୋରଗାତରେ ପିଚ୍ଛୁଳି ପଡ଼ି ଲସିକାଗ୍ରନ୍ଥି ଫୁଲିଯାଏ । ଦରଜ ଏବଂ ଯନ୍ତ୍ରଣା ହୁଏ, କାଖ ଏବଂ ବେକର ଗ୍ରନ୍ଥିରେ ବି ପ୍ରଦାହର ଲକ୍ଷଣ ଦେଖାଦେଇପାରେ । ଦ୍ୱିତୀୟ ସପ୍ତାହ ବେଳକୁ ଗ୍ରନ୍ଥି ଫାଟିଯାଇ ପୂଯ ବାହାରେ । ଶରୀରର ବିଭିନ୍ନ ସ୍ଥାନରୁ ରକ୍ତ ସ୍ରାବ ହୋଇପାରେ । ପେଟ କାମୁଡ଼େ । କୌଣସି ଚିକିତ୍ସା ନ କଲେ ରୋଗୀ ତିନିରୁ ପାଞ୍ଚଦିନ ଭିତରେ ମୃତ୍ୟୁ ବରଣ କରେ । ଏହି ପ୍ରକାରର ପ୍ଲେଗ ଦ୍ୱାରା ଆକ୍ରାନ୍ତ ହେଉଥିବା ପ୍ରାୟ ଅଧାଅଧି ରୋଗୀ ମୃତ୍ୟୁ ମୁଖରେ ପଡ଼ିଥାନ୍ତି । ରୋଗର ଗୁପ୍ତ ଅବସ୍ଥା (Incubation Period) ଦୁଇରୁ ସାତଦିନ ।

**(୨) ଫୁସ୍‌ଫୁସୀୟ ପ୍ଲେଗ-** ଏହି ଧରଣର ପ୍ଲେଗର ଗୁପ୍ତ ଅବସ୍ଥା ଏକରୁ ଚାରିଦିନ । ଏହା ମୁଖ୍ୟତଃ ଫୁସ୍‌ଫୁସ୍‌କୁ ଆକ୍ରାନ୍ତ କରି ନିମୋନିଆ ରୋଗ ଭଳି ଭ୍ରମ ସୃଷ୍ଟି କରେ । କମ୍ପ ଜ୍ୱର ହେବା, ଶୀତ ଲାଗିବା, ବାନ୍ତି ଓ ମୁଣ୍ଡବ୍ୟଥା ଇତ୍ୟାଦି ଲାଗିରହିବା ଏହି ରୋଗର ଲକ୍ଷଣ । ବେଳେବେଳେ ଗ୍ରନ୍ଥି ଜାତୀୟ ପ୍ଲେଗ ମଧ୍ୟ ଫୁସ୍‌ଫୁସୀୟ ପ୍ଲେଗ ସୃଷ୍ଟିର କାରଣ ହୋଇପଡ଼େ । ରୋଗୀର ଦେହହାତ ଘୋଳାବିନ୍ଧା କରେ । ରୋଗୀ ଭଲ

ଭାବରେ ନିଃଶ୍ୱାସ ପ୍ରଶ୍ୱାସ ନେଇପାରେନି । କାଶ ହୋଇ ଛେଲା ଛେଲା ଖଙ୍କାର ପଡ଼େ । ଖଙ୍କାରରେ ବୀଜାଣୁମାନେ ଭର୍ତ୍ତି ହୋଇଥାନ୍ତି । ଖଙ୍କାରରେ ରକ୍ତ ମଧ୍ୟ ପଡ଼େ । ରୋଗୀର କାଶ, ଛିଙ୍କ ଓ ଖଙ୍କାର ଆଦି ରୋଗ ସଂକ୍ରମଣରେ ସାହାଯ୍ୟ କରିଥାଏ । ଚିକିତ୍ସା ନ କଲେ ରୋଗୀ ଦୁଇଚାରିଦିନ ଭିତରେ ମରିଯାଏ । ଏହି ଧରଣର ରୋଗ ମଣିଷଠାରୁ ମଣିଷକୁ ଡେଇଁ ରୋଗ ପ୍ରସାରରେ ସାହାଯ୍ୟ କରିଥାଏ ।

## ସଂଚରିତ ପ୍ଳେଗ

ଏଭଳି ଧରଣର ପ୍ଳେଗ ସବୁଠାରୁ ମାରାତ୍ମକ । ରୋଗୀକୁ ଭୀଷଣ ଜ୍ୱର ହୋଇ ଶରୀରରେ ଅସହ୍ୟ ଯନ୍ତ୍ରଣା ପ୍ରକାଶ ପାଏ । ଚିକିତ୍ସା ନ କଲେ ପ୍ରାୟ ସବୁ ରୋଗୀ ଦୁଇତିନିଦିନ ମଧ୍ୟରେ ମୃତ୍ୟୁବରଣ କରନ୍ତି । ରୋଗର ଗୁପ୍ତ ଅବସ୍ଥା ଦୁଇରୁ ସାତଦିନ ।

## ରୋଗ ନିୟନ୍ତ୍ରଣ ବ୍ୟବସ୍ଥା

(୧) ପ୍ଳେଗ ବ୍ୟାପିବାର ସୂଚନା ମିଳିବା ମାତ୍ରେ ସ୍ୱାସ୍ଥ୍ୟ ବିଭାଗ ତୁରନ୍ତ ସତର୍କ ସୂଚନା ଜାରି କରିବା ଦରକାର । ଏ ବିଷୟରେ ବିଶ୍ୱସ୍ୱାସ୍ଥ୍ୟ ସଂସ୍ଥାକୁ ଅବହିତ କରିବା ବାଧ୍ୟତାମୂଳକ ।

(୨) ଫୁସଫୁସୀୟ ପ୍ଳେଗ ହୋଇନଥିଲେ ରୋଗୀପାଇଁ ଅଲଗା ରହିବା ବ୍ୟବସ୍ଥା ବିଶେଷ ଆବଶ୍ୟକ ନୁହେଁ ।

(୩) ସଂକ୍ରମିତ ବୋଲି ସନ୍ଦେହ ହେଲେ ସେଭଳି ବ୍ୟକ୍ତିଙ୍କୁ ଅନ୍ତତଃ ଛଅଦିନ ପର୍ଯ୍ୟନ୍ତ ଅନ୍ୟ କାହା ସହିତ ମିଳାମିଶା ହେବାକୁ ଦିଆଯିବ ନାହିଁ । ତାହାକୁ ପୃଥକ୍ ରଖାଯିବ ।

(୪) ପ୍ଳେଗ ସଂକ୍ରମିତ ଅଞ୍ଚଳରୁ ଆସୁଥିବା ଯାନବାହନକୁ ମଧ୍ୟ ଅଟକ ରଖାଯିବ ।

(୫) ମୂଷାମାନେ ଅସ୍ୱାଭାବିକ ମରି ପଡ଼ୁଥିବାର ଲକ୍ଷ୍ୟ କଲେ ସେମାନଙ୍କଠାରେ ପ୍ଳେଗ ଜୀବାଣୁ ଅଛନ୍ତି କି ନା ତା'ର ପରୀକ୍ଷା କରାଯିବ ।

(୬) ପ୍ଳେଗ ସଂକ୍ରମିତ ଅଞ୍ଚଳର ଘର ବାହାର ଗ୍ୟାମେକ୍ସେନ୍, ବି.ଏଚ୍.ସି. ଓ ଡ଼ି.ଡ଼ି.ଟି ଦ୍ୱାରା ସିଞ୍ଚନ କରାଯିବ । ମୂଷା ଗାତ ଭିତରେ ମଧ୍ୟ ତାହା ପାଉଡର ଭର୍ତ୍ତି କରାଯିବା ଆବଶ୍ୟକ

(୭) ପ୍ଳେଗ ପ୍ରସାରଣ ପାଇଁ ଦାୟୀ ଡାଆଁଶମାନଙ୍କୁ ମାରିବା ନିମନ୍ତେ ଗାମେକ୍ସିନ୍, ସାଇନୋଗ୍ୟାସ, ଡି.ଡି.ଟି., ଆଲଡ୍ରିନ୍, ଡାଏଲ୍ଡ୍ରିନ୍ ଓ କ୍ଲୋରଡେନ୍ ଇତ୍ୟାଦି ବ୍ୟବହାର କରାଯାଇପାରେ ।

(୮) ବିଷ ପ୍ରୟୋଗ କରି ବା ଯନ୍ତା ବସେଇ କିମ୍ବା ଗାତର ମୁହଁ ବନ୍ଦ କରି ମୂଷା ବଂଶ ନିପାତ ପାଇଁ ପଦକ୍ଷେପ ନିଆଯିବ ।

(୯) ରୋଗୀର ଲୁଗାପଟା, ବିଛଣାପତ୍ର ଗରମ ପାଣିରେ ଫୁଟାଇଲେ ଏବଂ ନିୟମିତ ଖରାରେ ପକାଇଲେ ବୀଜାଣୁ ମରିଯିବେ । ରୋଗୀ ବ୍ୟବହାର କରୁଥିବା ଆସବାବପତ୍ରକୁ ମଧ୍ୟ ଖରାରେଦେବା ଦରକାର । ତାର ଛେପ ଖଙ୍କାରକୁ ବୀଜାଣୁ ମାରିଦେଉଥିବା ଲୋସନ ପାଣିରେ ହିଁ ସଂଗ୍ରହ କରାଯିବ । ସେ ଏଣେତେଣେ ଛେପ ଖଙ୍କାର ପକାଇବା ଅନୁଚିତ ।

## ବେଳହୁଁ ସାବଧାନ

ମହାମାରୀର ଇତିହାସରୁ ଜଣାଯାଏ ଯେ, ନ୍ୟୁମୋନିକ୍ ପ୍ଲେଗରୁ ବୁବୋନିକ୍ ପ୍ଲେଗ ହୁଏ ଓ ବୁବୋନିକ ପ୍ଲେଗରୁ ନ୍ୟୁମୋନିକ ପ୍ଲେଗ ହୁଏ । ଏପରିକି ସେପ୍ଟେସେମିକ୍ ପ୍ଲେଗ ହୋଇଥାଏ । ମୂଷାଠାରୁ ମଣିଷକୁ ମଧ୍ୟ ସଂକ୍ରମିତ ହୁଏ । ସଘନ ଭାବରେ ଆବର୍ଜନା ସଫା କରିବା, କୀଟନାଶକ ଔଷଧ ବିଞ୍ଚିବା, ନାଳନର୍ଦ୍ଦମା ଆଦିକୁ ସଫା କରି କୀଟାଣୁମୁକ୍ତ କରିବା, ଝାଡ଼ା ପରିସ୍ରା ସ୍ଥାନଗୁଡ଼ିକୁ କୀଟାଣୁମୁକ୍ତ କରିବା, ବାସଗୃହର ସମସ୍ତ ସ୍ଥାନକୁ ଜୀବାଣୁମୁକ୍ତ କରିବା ଭଳି କାର୍ଯ୍ୟ କେବଳ ଥରେ ଅଧେ ଜୋରସୋରରେ କଲେ ହେବ ନାହିଁ । ଅତି କମରେ ଛଅମାସ ଯାଏ ଚାଲୁ ରହିଲେ ହିଁ ପ୍ଲେଗ ଜୀବାଣୁ ପୁନର୍ବାର ଫେରିବାର ସମ୍ଭାବନା ରହେ ନାହିଁ ।

ସବୁଠାରୁ ଆଶ୍ଚର୍ଯ୍ୟର କଥା ଯେ ଆମଠାରୁ ଦରିଦ୍ରତର ଓ ଅଧିକ ଜନାକୀର୍ଣ୍ଣ ବଙ୍ଗଳାଦେଶରେ ପ୍ଲେଗ ଆରମ୍ଭ ନ ହୋଇ ଆମ ଦେଶରେ ଆରମ୍ଭ ହେଲା ଏବଂ ବଙ୍ଗଳାଦେଶ ଭଳି ଦେଶ ଆମର ବିମାନ ତଥା ବିମାନଯାତ୍ରୀକୁ ବାସନ୍ଦ କରିବା ପର୍ଯ୍ୟନ୍ତ ଗଲା । ଏ ଖବର ପଢ଼ିଲେ ଆମକୁ ଲାଜ ଲାଗୁଛି । ଏହାର କାରଣ ଆମେ ସୁରଟ ଭଳି କେତେଗୁଡ଼ିଏ ସହରକୁ ଆବର୍ଜନାମୟ, ପୂତିଗନ୍ଧମୟ ଓ ଅନିୟନ୍ତ୍ରିତ ଭାବରେ ସଂକ୍ରମଣ କରିବାର ସ୍ଥାନ ହେବାରେ ସାହାଯ୍ୟ କରିଛୁ । ସହର ଓ ନଗରମାନଙ୍କର ଅଭିବୃଦ୍ଧିକୁ ନିୟନ୍ତ୍ରଣ କରିବାର ରାଜନୈତିକ ଇଚ୍ଛା ଆମର ନାହିଁ । ଥରେ ଅଧେ ମହାମାରୀ ହୋଇ ଶହ ଶହ ଲୋକ ମରିଗଲେ ଯାଇ ଆମ ସରକାରଙ୍କ ନିଦ ଭାଙ୍ଗେ । ସେତେବେଳେ ଜଣାପଡ଼େ ଯେ ବେଆଇନ ଭାବରେ ନା ଅନଧିକାର ଦଖଲ କରି ସହରରେ ମାଡ଼ି ବସିଥିବା ଝାଟିମାଟିର ଲୋକ ଏବଂ ବେନିୟନ୍ତ୍ରିତ ଭାବରେ ଗଢ଼ିଉଠିଥିବା ବସ୍ତି ଅଞ୍ଚଳ ଆଦିକୁ ରୋକିବାର ରାଜନୈତିକ ଇଚ୍ଛାର ଅଭାବ ହିଁ ଏଭଳି ମହାମାରୀର କାରଣ ।

ପ୍ଲେଗରୋଗ ନିୟନ୍ତ୍ରଣ ଯୋଜନାରେ ସ୍ୱାସ୍ଥ୍ୟଶିକ୍ଷାର ସ୍ଥାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ଲେଗ ରୋଗ ସମ୍ବନ୍ଧରେ କେତେକ ମୌଳିକ ତଥ୍ୟ ଜନସାଧାରଣଙ୍କୁ ଯୋଗାଇ ଦେବା ସ୍ୱାସ୍ଥ୍ୟଶିକ୍ଷାର ଉଦ୍ଦେଶ୍ୟ । ତାହାଛଡ଼ା ସ୍ୱାସ୍ଥ୍ୟ ଶିକ୍ଷା ମାଧ୍ୟମରେ ରୋଗ ନିୟନ୍ତ୍ରଣ ପାଇଁ ସେମାନଙ୍କର ସହଯୋଗ କାମନା କରାଯାଇଥାଏ । ବିଶେଷକରି ମୂଷା ମରୁଥିବା ଖବର ଏବଂ ରୋଗ ହୋଇଥିବାର ସନ୍ଦେହ ସମ୍ବନ୍ଧରେ ସେମାନେ ଆଗୁଆ ସୂଚନା ଦେଇ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମକୁ ଅଧିକ ଫଳପ୍ରଦ କରାଇପାରିବେ ।



# ଏମିତି ମଶା, ଭୋଗୁ କି ଦଶା !

## ମଶା ଓ ଜ୍ୱର

ଜ୍ୱର ଏକ ସାଧାରଣ ରୋଗ ବୋଲି ସମସ୍ତେ ଜଣାଅଧିକେ ଜାଣିଥାଆନ୍ତି । ଆଉ ଏ ଜ୍ୱରର କାରଣ ନିର୍ଦ୍ଦିଷ୍ଟ ନ ଥାଏ । ବିଭିନ୍ନ କାରଣରୁ ଜ୍ୱର ହୋଇଥାଏ ବୋଲି ଡାକ୍ତରଙ୍କ ମତ । ତେବେ ମଶା କାମୁଡ଼ିବା ଦ୍ୱାରା ଜ୍ୱର ହେବା ଏକ ମୁଖ୍ୟ ସମସ୍ୟା । ପିଲାବେଳୁ ପିଲାମାନେ ତୃତୀୟ ଚତୁର୍ଥ ଶ୍ରେଣୀରେ ପଢ଼ିବା ବେଳେ ଜାଣିଥାଆନ୍ତି ଯେ ମାଈ ଏନୋଫିଲିସ୍ ମଶା ରକ୍ତ ଶୋଷିବା ଯୋଗୁଁ ମ୍ୟାଲେରିଆ ଓ କ୍ୟୁଲେକ୍ସ ମଶା ରକ୍ତ ଶୋଷିବା ଦ୍ୱାରା ବାତଜ୍ୱର ବା ଫାଇଲେରିଆ ହୋଇଥାଏ । ଏ ଦୁଇପ୍ରକାର ଜ୍ୱର ସହିତ ଆମେ ସମସ୍ତେ ପ୍ରାୟ ଜଣାଶୁଣା । ଏହା ଛଡ଼ା ଆଉ ଏକପ୍ରକାର ଜ୍ୱର ଆମମାନଙ୍କ ଠାରେ ଦେଖାଯାଇଥାଏ । ସେଇଟି ହେଉଛି ଡେଙ୍ଗୁଜ୍ୱର (Dengu Fever) ।

## ଡେଙ୍ଗୁଜ୍ୱର କଅଣ ?

ଡେଙ୍ଗୁଜ୍ୱର ନାଁଟି ବୋଧହୁଏ ଆମ ଲୋକେ ଆଗରୁ ଶୁଣି ନ ଥିଲେ; କିନ୍ତୁ ନିକଟରେ ଦିଲ୍ଲୀରେ ବ୍ୟାପିଥିବା ଏହି ଜ୍ୱର ସମସ୍ତଙ୍କୁ ଆତଙ୍କିତ କରି ଦେଇଥିଲା । ତେଣୁ ଏହି ଜ୍ୱର ସଂପର୍କରେ ସମସ୍ତେ ଜାଣିବା ଉଚିତ । ଆମେ ଜାଣୁ ମାଈ ଏନୋଫିଲିସ୍ ମଶା ଦ୍ୱାରା ମ୍ୟାଲେରିଆ ଏବଂ କ୍ୟୁଲେକ୍ସ ମଶା ଦ୍ୱାରା ଫାଇଲେରିଆ ବା ବାତଜ୍ୱର ହୋଇଥାଏ । ସେହିପରି ଏଡିସ ନାମକ ମଶା ଦ୍ୱାରା ଡେଙ୍ଗୁ ଜ୍ୱର ସଂକ୍ରମିତ ହୋଇଥାଏ । ଏହା ଏକ ଭୂତାଣୁଜନିତ ରୋଗ । ଏଡିସ୍ ମଶା ଦ୍ୱାରା ପିତ୍ତ ଜ୍ୱର ମଧ ହେଉଥିବାରୁ କେହି କେହି ଏହାକୁ ''ପିତ୍ତଜ୍ୱର ମଶା''ବୋଲି ମଧ କହିଥାନ୍ତି । ଏନୋଫିଲିସ୍ ଓ କ୍ୟୁଲେକ୍ସ ମଶାଠାରୁ ଏଡିସ୍ ମଶା ଦେଖିବାକୁ ଭିନ୍ନ ଓ ବ୍ୟବହାର ମଧ ଭିନ୍ନ ପ୍ରକାରର । ଏହାର ରଙ୍ଗ କଳା ଓ ଦେହରେ ବାଘ ପରି ଧଳାଧଳା ଗାର ଥାଏ । ସେଥିପାଇଁ ଏହାକୁ ''ବାଘୁଆମଶା''ମଧ କୁହାଯାଏ ।

## ଏଡ଼ିସ୍ ମଶାର ଘର

ଏଡ଼ିସ୍ ମଶା ପୃଥିବୀର ସବୁ ସ୍ଥାନରେ ଦେଖାଯାଆନ୍ତି । ତେବେ କ୍ରାନ୍ତିମଣ୍ଡଳୀୟ ଅଞ୍ଚଳରେ ଏମାନଙ୍କ ସଂଖ୍ୟା ଅତ୍ୟଧିକ । ମନୁଷ୍ୟ ରହୁଥିବା ସ୍ଥାନ ନିକଟରେ ସତସତିଆ

ପାଣି ଜମି ରହୁଥିବା ସ୍ଥାନ,ଛୋଟ ଜଳାଶୟ,ଅନେକ ଦିନରୁ ପଡ଼ିରହିଥିବା ବିଭିନ୍ନ ପ୍ରକାର ପାତ୍ର,ଓଳି,ସରା,ମାଟି ପାତ୍ର ଓ ଘରେ ବ୍ୟବହୃତ ଶୀତଳ ଜଳଯନ୍ତ୍ରରେ ଜମିରହୁଥିବା ପାଣି ହିଁ ଏମାନଙ୍କର ବାସସ୍ଥାନ। ସେହି ସ୍ଥାନମାନଙ୍କରେ ସେମାନେ ଅଣ୍ଡା ଦେଇଥାଆନ୍ତି ।

## ମଶାକାମୁଡ଼ାର ସମସ୍ୟା

ଅନ୍ୟ ଜାତିର ମଶାମାନେ ରାତିରେ କାମୁଡୁ ଥିବା ବେଳେ ଏମାନେ ମୁଖ୍ୟତଃ ଦିନବେଳେ କାମୁଡ଼ି ଥାଆନ୍ତି । ଏହି ମଶା କାମୁଡ଼ା ହିଁ ଡେଙ୍ଗୁ ଜ୍ୱରର କାରଣ ହୋଇଥାଏ । କାରଣ ଏହି ମଶାମାନଙ୍କ ଦେହରେ ଏକ ପ୍ରକାର ଜୀବାଣୁ ଥାଆନ୍ତି । ସେମାନେ କାମୁଡ଼ିବାବେଳେ ଏହି ଜୀବାଣୁ ମନୁଷ୍ୟ ଶରୀରକୁ ଆସିବାଦ୍ୱାରା ହିଁ ଜ୍ୱର ହୋଇଥାଏ । ଏ ଜ୍ୱରରେ ପାଞ୍ଚ ବର୍ଷରୁ ପନ୍ଦର ବର୍ଷର ପିଲାମାନେ ବିଶେଷ ଭାବେ ଆକ୍ରାନ୍ତ ହୋଇଥାନ୍ତି । ତେବେ ପ୍ରାପ୍ତବୟସ୍କ ଲୋକମାନେ ମଧ୍ୟ ଏଥିରୁ ବାଦ୍ ପଡ଼ନ୍ତିନାହିଁ ।

ଏ ଜ୍ୱର ହେଲେ ନିମ୍ନଲିଖିତ ଲକ୍ଷଣ ଗୁଡ଼ିକ ଶରୀରରେ ପ୍ରକାଶ ପାଏ ।

(୧) ହଠାତ୍ ପ୍ରବଳ ଜ୍ୱର ହୁଏ ।
(୨) ଖୁବ୍ ଜୋରରେ ସାମନା ମୁଣ୍ଡ ବ୍ୟଥା ହୁଏ ।
(୩) ମାଂସପେଶୀ ଓ ଗଣ୍ଠିଗୁଡ଼ିକରେ ଯନ୍ତ୍ରଣା ହୁଏ ।
(୪) ଭୋକ କମିଯାଏ ଏବଂ ଖାଇବାଲାଗି ଅରୁଚି ଧରେ ।
(୫) ଛାତି ଓ ଉପର ଅଂଶଗୁଡିକରେ ମିଳିମିଳା ପରି ଛଷର୍ ଲାଲ୍ ରଙ୍ଗର ଦାଗ ଦେଖାଯାଏ ।
(୬) ଅନେକ ସମୟରେ ବାନ୍ତି ଦେଖାଏ ଏବଂ ବେଳେବେଳେ ବାନ୍ତି ବି ହୁଏ ।

ଏସବୁ ଲକ୍ଷଣ ଦେଖାଦେଲେ ସାଧାରଣତଃ ଡେଙ୍ଗୁ ଜ୍ୱର ହୋଇଛି ବୋଲି ବୁଝିବାକୁ ହେବ । ଏତଦ୍‌ବ୍ୟତୀତ ଅନ୍ୟ ଏକ ପ୍ରକାରର ଡେଙ୍ଗୁ ଜ୍ୱର ହୋଇଥାଏ ।

ଯାହାକୁ ରକ୍ତକ୍ଷରଣ ଜନିତ ଡେଙ୍ଗୁ ଜ୍ୱର କୁହାଯାଏ । ସେଥିରେ ସାଧାରଣ ଡେଙ୍ଗୁ ଜ୍ୱରର ସମସ୍ତ ଲକ୍ଷଣ ସହିତ ନିମ୍ନଲିଖିତ ଲକ୍ଷଣଗୁଡ଼ିକ ମଧ୍ୟ ପ୍ରକାଶ ପାଏ ।

(୧) ପେଟରେ ଖୁବ୍ ଯନ୍ତ୍ରଣା ହୁଏ ବା ପେଟ କାମୁଡ଼ିଲାପରି ଲାଗେ ।
(୨) ଦେହର ଚର୍ମ ଅଠାଳିଆ ଲାଗେ ।
(୩) ନାକ,ପାଟି ଓ ମାଢ଼ି ଆଦି ସ୍ଥାନରୁ ରକ୍ତ ବହେ ।
(୪) ଖୁବ୍ ଜୋର୍‌ରେ ବାନ୍ତି ହୁଏ ଓ ବାନ୍ତିରେ ରକ୍ତ ପଡ଼େ ।

(୫) ପ୍ରବଳ ଭାବରେ ଶୋଷ ଲାଗେ ।
(୬) ଶ୍ୱାସକ୍ରିୟାରେ ଯନ୍ତ୍ରଣା ହୁଏ ଏବଂ ଖୁବ୍ ନିଦ ଲାଗେ ।

## ପରିବେଶ ସୁରକ୍ଷା, ଜୀବନ ରକ୍ଷା

ଏହି ରକ୍ତକ୍ଷରଣ ଜନିତ ଡେଙ୍ଗୁ ଜ୍ୱର ହେଲେ,ସେଥିରୁ ବଂଚିବା ବଡ଼ କଷ୍ଟ । ତେବେ ମଶା ଏ ରୋଗର କାରଣ ହୋଇଥିବାରୁ ମଶାଠାରୁ ଦୂରରେ ରହିବା ଉଚିତ । ଏଥିପାଇଁ ଆମ ବସତି ନିକଟରେ ମଶା ଯେପରି ନ ରୁହନ୍ତି ସେଥିପ୍ରତି ଯତ୍ନବାନ୍ ହେଲେ ଏଡ଼ିସ୍ ମଶା ଆଉ କାମୁଡ଼ି ପାରିବେ ନାହିଁ । ଫଳରେ ଡେଙ୍ଗୁ ଜ୍ୱର ହେବାର ପ୍ରଶ୍ନ ବି ଉଠୁ ନାହିଁ । ତେଣୁ ମଶା ନ ହେବା ପାଇଁ ନିମ୍ନୋକ୍ତ ପଦକ୍ଷେପଗୁଡ଼ିକ ନିଆଯିବା ଦରକାର ।

(୧) ବସତି ବା ଗୃହ ଚତୁଃପାର୍ଶ୍ୱ ପରିଷ୍କାର ରଖିବା ସହ ଖଣ୍ଡିଆ ପାତ୍ର ଇତ୍ୟାଦି ପରିତ୍ୟକ୍ତ ଅବସ୍ଥାରେ ପକାଇବା ଅନୁଚିତ ।

(୨) ଘରେ ଥିବା ପାଣି ଟାଙ୍କି ଓ ଶୀତଳ ଜଳକାରକ ଯନ୍ତ୍ର(ୱାଟର କୁଲର) କୁ ଭଲ ଭାବରେ ଢାଙ୍କୁଣୀ ଦେଇ ରଖିବା ସହ ମଝିରେ ମଝିରେ ସେଥିରେ ଥିବା ପାଣି ସଂପୂର୍ଣ୍ଣ ବଦଳାଇବା ଉଚିତ ।

(୩) ଥରେ ନିକଟରେ ରୋଗ ବ୍ୟାପିବାର ସୂଚନା ପାଇଲେ ବା ଆଭାସ ମିଳିଲେ ପିଲାମାନଙ୍କୁ ପୂରା ପୋଷାକ ପିନ୍ଧିବାକୁ କହିବା ଉଚିତ ।

(୪) ବସତି ନିକଟରେ ମଶା ରହୁଥିଲେ ବା ମଶା ମାରିବା କଷ୍ଟ ହେଲେ, ଦିନ ବେଳେ ମଶାରି ବ୍ୟବହାର କରିବା ଉଚିତ । ତେବେ ଏଡ଼ିସ ମଶା ଦେହରେ ଥିବା ଭୂତାଣୁ ଯୋଗୁଁ ଡେଙ୍ଗୁ ଜ୍ୱର ହେଉଥିବାରୁ ବୈଜ୍ଞାନିକମାନେ ଜୈବ କୌଶଳ ଉପାୟରେ ଡେଙ୍ଗୁଭୂତାଣୁ କିପରି ବୃଦ୍ଧି ନ ପାଇବ; ସେ ଦିଗରେ ଚେଷ୍ଟା ଚଳାଇଛନ୍ତି । ତେବେ ଏତେ ସମୟ,ଏତେ ପରିଶ୍ରମ ଓ ଏତେ ପଇସା ଖର୍ଚ୍ଚ କରି ଗବେଷଣା କରିବା ଅପେକ୍ଷା "ମୂଳୁ ମାଇଲେ ଯିବ ସରି" କଥାଟା ସବୁଠୁଁ ସହଜ । ତେଣୁ ଆମେ ଯଦି ଆମ ପରିବେଶ ପରିଷ୍କାର ପରିଚ୍ଛନ୍ନ ରଖିବା ତେବେ ମଶାର ବଂଶ ଅନ୍ତତଃ ଆମ ଚାରିପଟେ ବଢ଼ିପାରିବ ନାହିଁ । ଏହାଠାରୁ ବଳି ସହଜ ଓ ସରଳ ବୈଜ୍ଞାନିକ କୌଶଳ ଅବା କ'ଣ ଥାଇପାରେ ?



# ଶିଖିବାର ଅଛି; ନିରବ ସାଧକ ମହୁମାଛି

## ପ୍ରକୃତିର ସଂଚୟିକା, ମହୁମାଛି

ମାଛି ! ଛି' କି ଅସନା ଜୀବଟିଏ ! ମାଛି ନାଁ ଶୁଣିଲେ ନାକ ଟେକି ହୋଇଯାଏ । ଅସନା ଜିନିଷ ଆଦିରେ ବସିବା ଓ ଖାଇବା ତାଙ୍କର ପ୍ରକୃତି । କିନ୍ତୁ ଆମ ପରିବେଶରେ ଏପରି ଏକ ମାଛି ଅଛି ଯେ କି ଅସନା ଜିନିଷକୁ ଆଦୌ ଭଲ ପାଏ ନାହିଁ । ଭଲ ପାଏ ପ୍ରକୃତିର ସୁନ୍ଦର ପ୍ରାକୃତିକ ଜିନିଷ । ତାହା ହେଉଛି ଫୁଲଗୁଡ଼ିକର ମହୁ । କେବଳ ମଣିଷ ଫୁଲକୁ ଭଲ ପାଏ ତାହା ନୁହେଁ ଆଉ ଯେଉଁ ପ୍ରାଣୀଟିର ଫୁଲ ପ୍ରିୟ ସେ ହେଉଛି ମହୁମାଛି । ମାଛି ଓ ମହୁମାଛିର ପ୍ରକୃତି ସତରେ ଓଲଟା । ସେ ଆମର ପ୍ରକୃତି ସଂଚୟିକା । ଅବଶ୍ୟ ସଞ୍ଚୟ କରାଯାଏ ବ୍ୟାଙ୍କରେ ,ପୋଷ୍ଟ ଅଫିସରେ ବା ଲକରରେ ଭବିଷ୍ୟତରେ କାମରେ ଆସିବା ପାଇଁ । ଠିକ୍ ସେହିପରି ସଞ୍ଚୟ ମନୋବୃତ୍ତି ରହିଛି ଆମ ଜୀବଜଗତର ମହୁମାଛିଠାରେ । ଜୀବଟି ସିନା ଛୋଟିଆ, କାମ କିନ୍ତୁ ବଡ଼ିଆ ।

ମହୁମାଛିମାନେ ଫୁଲରୁ ମକରନ୍ଦ ବା ମହୁ ସଂଗ୍ରହ କରି ନିଜ ବସା ବା ମହୁଫେଣାରେ ତାହା ସଞ୍ଚୟ କରି ରଖନ୍ତି । ଆମେ ମହୁମାଛିଙ୍କ ବସାରୁ ଉକ୍ତ ମହୁକୁ ସଂଗ୍ରହ କରି ଆଣୁ । ମହୁ ଫେଣାକୁ ଚିପୁଡ଼ି ଯେଉଁ ମହୁ ସଂଗ୍ରହ କରାଯାଏ, ସେଥିରେ ଅଣ୍ଡା,ଶୂକ ଓ ମହମର ଅଂଶ ମଧ୍ୟ ରହିଯାଏ ଏବଂ ସେହି ମହୁ ବେଶି ଦିନ ରଖିଲେ ନଷ୍ଟ ହୋଇଯାଏ । କେବଳ ମହୁମାଛି ପାଳନ କରି କୃତ୍ରିମ ଉପାୟରେ ମହୁ ନିଷ୍କାସନ ଯନ୍ତ୍ରଦ୍ୱାରା ମହୁନିଷ୍କାସନ କଲେ ବିଶୁଦ୍ଧ ମହୁ ମିଳିଥାଏ । ମହୁମାଛି ପାଳନ ଏକ ଅବସର ସମୟର ସୌଖୀନ କାର୍ଯ୍ୟ । ଏଥିପାଇଁ ଖର୍ଚ୍ଚ ଓ ପରିଶ୍ରମ କମ୍ ଆବଶ୍ୟକ ପଡ଼େ । ଏହା ଏକ ବେଶ୍ ଲାଭଜନକ ଧନ୍ଦା । ଏହାଛଡ଼ା ବିଭିନ୍ନ ଫସଲରେ ପର ପରାଗସଙ୍ଗମ ଘଟାଇ ମହୁମାଛି ମଧ୍ୟ ଫସଲ ଉତ୍ପାଦନ ବୃଦ୍ଧିରେ ସହାୟକ ହୋଇଥାଏ । ତେଣୁ ଆଜିକାଲି ବ୍ୟବସାୟିକ ଭିତ୍ତିରେ ମଧ୍ୟ ମହୁ ଚାଷ କରାଯାଉଅଛି ।

ଆମ ଦେଶରେ ପାଞ୍ଚ ପ୍ରକାରର ମହୁମାଛି ଦେଖାଯା'ନ୍ତି ଯଥା– ବାଘରା,ବିଞ୍ଚୁଣୀ, ନିକିଟି, ସପ୍ତଫେଣୀ ଏବଂ ୟୁରୋପୀୟ ବା ଇଟାଲୀୟାନ ମହୁମାଛି ।

**ବାଘରା ବା ସାରଙ୍ଗ ମହୁମାଛି *(Apis dorsata)***

ଏହି ମହୁମାଛି ସବୁ ଜାତିର ମହୁମାଛିଠାରୁ ଆକାରରେ ବଡ଼ ଅଟେ । ଏମାନେ ମୁକ୍ତାଲୋକରେ ବସାବାନ୍ଧି ରହିବାରେ ଅଭ୍ୟସ୍ତ ହୋଇଥିବାରୁ ରାସ୍ତାକଡ଼ ଗଛମାନଙ୍କରେ

ମୋଟା ଡାଳରେ ତଳକୁ ଝୁଲାଇ ଗୋଟିଏ ବଡ଼ ଫେଣା ତିଆରି କରନ୍ତି । ପ୍ରତ୍ୟେକ ଫେଣାରେ ଶ୍ରମିକ ଓ ପୁରୁଷ ମହୁମାଛିର ଘରଗୁଡ଼ିକ ପ୍ରାୟ ସମାନ ଆକାର ଅଟେ । ଗୋଟିଏ ଶ୍ରମିକ ମହୁମାଛିର ଘରର ଚଉଡ଼ା (Breadth of worker cell) ପ୍ରାୟ ୫.୩ ମି.ମି. । ସାଧାରଣତଃ ପ୍ରତ୍ୟେକ ଦଳରୁ ୩ କି.ଗ୍ରା. ରୁ ୫ କି.ଗ୍ରା.ମହୁ ଆଦାୟ ହୋଇଥାଏ । ଏମାନେ ଯାଯାବର ଶ୍ରେଣୀର ଏବଂ ଅତ୍ୟଧିକ ହିଂସ୍ର ହୋଇଥିବାରୁ ଏମାନଙ୍କୁ ମହୁ ବାକ୍ସରେ ପାଳନ କରିବା ସମ୍ଭବପର ନୁହେଁ ।







ଶ୍ରମିକ ମହୁମାଛି ରାଣୀ ମହୁମାଛି ପୁରୁଷ ମହୁମାଛି

ମହୁମାଛି

**ବିଞ୍ଚୁଣୀ ବା ଡାଳି ମହୁମାଛି** (Apis florea)

ବିଞ୍ଚୁଣୀ ମହୁମାଛି ଛୋଟ ଛୋଟ ଡାଳରେ ସାନ ଫେଣାଟିଏ ତିଆରି କରି ପ୍ରାୟ ୫-୬ ମାସ ପର୍ଯ୍ୟନ୍ତ ରହନ୍ତି । ଏହି ମହୁମାଛିମାନେ ଦେଖିବାକୁ ବାଦାମୀ ରଙ୍ଗର ଏବଂ ଧଳା ଗାରଯୁକ୍ତ । ଫେଣାର ଆକାର ଗୋଟିଏ ମଣିଷର ହାତର ପାପୁଲିର ଆକାର ସହିତ ସମାନ । ସାଧାରଣତଃ ଗୋଟିଏ ସେ.ମି.ରେ ୩-୫ ଟି ଘର (Cell) ଥାଏ । ପୁରୁଷ ମାଛିମାନଙ୍କର ଘରର ବ୍ୟାସ ୧.୫ ଗୁଣ ବଡ଼ । ହିଂସ୍ର ନ ହେଲେ ମଧ ଯାଯାବର ଶ୍ରେଣୀର ଏବଂ କମ୍ ପରିମାଣର ମହୁ (୨୫୦ ଗ୍ରାମ ବସାପ୍ରତି) ସଞ୍ଚୟ କରୁଥିବାରୁ ଏମାନଙ୍କୁ ମହୁ ବାକ୍ସରେ ପାଳନ କରିବା ଲାଭଜନକ ନୁହେଁ ।

**ନିକିଟି ମହୁମାଛି** (Dammer bees)

ନିକିଟି ମହୁମାଛି ଆକାରରେ କ୍ଷୁଦ୍ର ଏବଂ ଦେଖିବାକୁ କଳା ରଙ୍ଗର ଅଟେ । ଏମାନେ ଛୋଟ ଛୋଟ କାନ୍ଥ ଫାଟ,ବାଉଁଶ ନଳ ଏବଂ ଗଛ କୋରଡ଼ରେ ବସାବାନ୍ଧି

ବହୁଦିନ ପର୍ଯ୍ୟନ୍ତ ରହନ୍ତି । ଏମାନଙ୍କର ବସାରୁ ଅତିକମ୍ ପରିମାଣର (୧୦୦ ଗ୍ରାମ ବସାପ୍ରତି) ମହୁ ମିଳୁଥିବାରୁ ଏବଂ ଏହି ମହୁ ଭଲ ଲାଗୁ ନ ଥିବାରୁ ଏହି ମାଛି ପାଳନ କରିବା ଲାଭଜନକ ନୁହେଁ ।

**ସପ୍ତଫେଣୀ ମହୁମାଛି (Apis cerena indica)**

ଅବସ୍ଥିତି ଅନୁସାରେ ଭାରତରେ ଦୁଇ ପ୍ରକାରର ସପ୍ତଫେଣୀ ମହୁମାଛି ଦେଖାଯାନ୍ତି ଯଥା–ସମତଳ ଶ୍ରେଣୀ ଓ ପାର୍ବତ୍ୟ ଶ୍ରେଣୀ । ପାର୍ବତ୍ୟାଞ୍ଚଳ ମହୁମାଛି ଦେଖିବାକୁ ସମତଳାଞ୍ଚଳ ମହୁମାଛି ଅପେକ୍ଷା ସାମାନ୍ୟ ବଡ଼ ଓ କଳା ରଙ୍ଗର । ସମତଳାଞ୍ଚଳ ମହୁମାଛି ଦେଖିବାକୁ ହଳଦୀରଙ୍ଗ ଯୁକ୍ତ ବାଦାମୀ ରଙ୍ଗର । ପ୍ରତ୍ୟେକ ଶ୍ରମିକ ମହୁମାଛି ଘର ବା କୋଷର ଆକାର ପ୍ରାୟ ୪.୩ ରୁ ୫ ମି.ମି. ଅଟେ । ପୁରୁଷ ମହୁମାଛି ଘର ବା କୋଷର ଚଉଡ଼ା ଶ୍ରମିକ ମାଛିଠାରୁ ୧.୨ ଗୁଣ ଅଟେ । ଅଧିକ ପରିମାଣର ସ୍ୱାର୍ମିଂ ଏବଂ ଅନ୍ତର୍ଦ୍ଧାନ (Absconding) ଏହି ମହୁମାଛିମାନଙ୍କର ଏକ ଦୁର୍ବଳତା ଅଟେ । ଗୋଟିଏ ଦଳରୁ ପ୍ରାୟ ୩ ରୁ ୧୦ କି.ଗ୍ରା. ପର୍ଯ୍ୟନ୍ତ ମହୁ ବର୍ଷକୁ ଆଦାୟ ହୋଇଥାଏ ।

**ଇଟାଲୀୟ ମହୁମାଛି ବା ୟୁରୋପୀୟ ମହୁମାଛି (Apis mellifera)**

ସାଧାରଣତଃ ଏହି କିସମ ମହୁମାଛି ୟୁରୋପୀୟ ଦେଶମାନଙ୍କରେ ଦେଖିବାକୁ ମିଳେ । ଏହି ଜାତୀୟ ମହୁମାଛି ଦଳରେ କମ୍ ପରିମାଣର ସ୍ୱାର୍ମିଙ୍ଗ୍ (Swarming) ଦେଖାଯାଏ ଏବଂ ଭାରତୀୟ ମହୁମାଛି ଅପେକ୍ଷା ଅଧିକ ମହୁ ଉତ୍ପାଦିତ ହୋଇଥାଏ । ତେଣୁ ବର୍ତ୍ତମାନ ଭାରତ ବର୍ଷର ବିଭିନ୍ନ ଅଞ୍ଚଳରେ ଏହି ମହୁମାଛି ଚାଷ ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି ।

ଏହି ପ୍ରକାର ମହୁମାଛି ସର୍ବପ୍ରଥମେ ୧୯୯୦ ମସିହାରେ ଓଡ଼ିଶାକୁ ଅଣାଯାଇଥିଲା ଏବଂ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର କୀଟତତ୍ତ୍ୱ ବିଭାଗରେ ଥିବା ମହୁମାଛି ପାଳନ କେନ୍ଦ୍ରରେ ପାଳନ କରାଯାଇଥିଲା । ଏମାନଙ୍କର ଶ୍ରମିକ ମହୁମାଛିର କୋଷର ଚଉଡ଼ା ପ୍ରାୟ ୫.୩ ମି.ମି.ଏବଂ ପୁରୁଷ ମହୁମାଛିର କୋଷ ଏହାଠାରୁ ୧.୩ ଗୁଣ ବଡ଼ ଅଟେ । ପ୍ରତ୍ୟେକ ଦଳରୁ ବର୍ଷକୁ ପ୍ରାୟ ୨୪-୩୦ କି.ଗ୍ରା. ମହୁ ଆଦାୟ ହୋଇଥାଏ ।

ଏହି ପାଞ୍ଚ ଜାତିର ମହୁମାଛି ଭିତରୁ କେବଳ ସପ୍ତଫେଣୀ ଓ ଇଟାଲୀୟାନ ମହୁମାଛିକୁ ମହୁ ବାକ୍ସରେ ରଖି ବ୍ୟବସାୟିକ ଭିତ୍ତିରେ ପାଳନ କରାଯାଇଥାଏ ।

## ମହୁମାଛିର ଜୀବନ

ମହୁମାଛି ଏକ ସାମାଜିକ ପ୍ରାଣୀ । ମହୁମାଛି ଦଳରେ ତିନି ପ୍ରକାରର ମାଛି ରହନ୍ତି, ଯଥା–(୧) ରାଣୀମାଛି (ମାଈମାଛି) ଗୋଟିଏ, (୨) ପୁରୁଷ ମାଛି ଅଳ୍ପ କେତୋଟି ଓ (୩) ଶ୍ରମିକ ମହୁମାଛି (କ୍ଲୀବ) ବହୁତ ।

ରାଣୀ ୪-୫ ଥର ସଙ୍ଗମ ଉଦ୍ଦେଶ୍ୟରେ ବସା ବାହାରକୁ ଉଡ଼ିଯାଏ । ସଙ୍ଗମ ପରେ ବସାକୁ ଆସି ଫେଣାଗୁଡ଼ିକରେ ଅଣ୍ଡା ଦିଏ । କେବଳ ଅଣ୍ଡା ଦେବା ରାଣୀମାଛିର କାମ । ରାଣୀ ମହୁମାଛି ଦିନକୁ ୩୦୦ ପର୍ଯ୍ୟନ୍ତ ଅଣ୍ଡା ଦିଏ । ୫-୭ ଦିନରେ ଅଣ୍ଡା ଫୁଟି ଛୁଆ ବାହାରନ୍ତି । ପୁରୁଷ ମାଛିମାନଙ୍କର କାମ କେବଳ ସଙ୍ଗମ କରିବା । ଏମାନଙ୍କର ସଂଖ୍ୟା ଖୁବ୍ କମ୍ । ଦଳରେ ବହୁସଂଖ୍ୟକ ଶ୍ରମିକ ମହୁମାଛି ରହନ୍ତି । ଏମାନେ କ୍ଲୀବ ଅଟନ୍ତି । ଏମାନେ ଅଣ୍ଡା,ଛୁଆ,ବସା ଓ ଅନ୍ୟ ସବୁ ମାଛିମାନଙ୍କର ଯତ୍ନ ତଥା ସୁରକ୍ଷା କରନ୍ତି । ଫୁଲରୁ ଖାଦ୍ୟ ସଂଗ୍ରହ କରି ସେମାନଙ୍କୁ ଖାଇବାକୁ ଦିଅନ୍ତି ଓ ବସାରେ ସଞ୍ଚୟ କରି ରଖନ୍ତି । ରାଣୀମାଛି ବସା ଛାଡ଼ି ଚାଲିଗଲେ ସବୁ ମାଛି ତା ପଛେ ପଛେ ଉଡ଼ି ଚାଲିଯାଆନ୍ତି ।

ମହୁମାଛିମାନଙ୍କୁ ତାଙ୍କର ରହିବା ସ୍ଥାନରୁ ଧରିଆଣି ବାକ୍ସ ମଧ୍ୟରେ ରଖିବା ଓ ଯତ୍ନ ନେଇ ସେମାନଙ୍କଠାରୁ ମହୁ ସଂଗ୍ରହ କରିବାକୁ ମହୁ ଚାଷ କୁହାଯାଏ ।

## ମହୁଚାଷ ଉପକରଣ

**(୧) ମହୁବାକ୍ସ–** ଏହା କାଠରେ ତିଆରି ଏକ ବାକ୍ସ । ଏହାର ୨ ବା ୩ଟି ଥାକ ଥାଏ । ପ୍ରତି ଥାକରେ ଚାରିକୋଣିଆ ୭-୮ ଟି କାଠ ତିଆରି ଫ୍ରେମ ଥାଏ । ତଳ ଥାକଟି ବଡ଼ ଓ ଉପର ଥାକଗୁଡ଼ିକ ଛୋଟ । ଏଗୁଡ଼ିକ ସଜାଇ ରଖାଯାଇଥାଏ । ଏହି ମହୁ ବାକ୍ସ ତିନି ପ୍ରକାରର, ଯଥା – ନିଉଟନ୍,ଷ୍ଟାଣ୍ଡାର୍ଡ ଓ ୟଙ୍ଗଷ୍ଟ୍ରଥ୍ । ନିଉଟନ୍‌ର ଛାତ ଗଡ଼ାଣିଆ ଓ ବାକ୍ସଟି ଛୋଟ । ଏହାର ପ୍ରତି ଥାକରେ ୬ ଟି କରି ଫ୍ରେମ ଥାଏ । ଷ୍ଟାଣ୍ଡାର୍ଡ଼ ବାକ୍ସ ବଡ଼ ଓ ଏହାର ଥାକରେ ୮ ଟି ଫ୍ରେମ ଥାଏ । ଏହାର ଛାତ ଚଟକା ଓ ଟିଣ ଦିଆ ଛାତ ତଳେ ବାକ୍ସ ଉପରେ ଖଣ୍ଡିଏ ଟପ୍ ପଟା ଥାଏ ।

**(୨) କୁଇନ୍ ଗେଟ୍ (Queen gate)–** ଟିଣ ବା ଆଲୁମିନିଅମ୍‌ର ଅଧଇଞ୍ଚ ଓସାର ଓ ୪-୬ ଇଞ୍ଚ ଲମ୍ବର ଏହା ଏକ ଜାଲି । ଏହି ଜାଲିର କଣା ମଧ୍ୟ ଦେଇ ଶ୍ରମିକ ମାଛିମାନେ ଯିବାଆସିବା କରିପାରନ୍ତି । ମାତ୍ର ରାଣୀ ଓ ଅଣ୍ଡିରା ମାଛି ଆକାରରେ ବଡ଼ ହୋଇ ଥିବା ଯୋଗୁଁ ଗଳି ପାରନ୍ତି ନାହିଁ । ଏହ ଦ୍ୱାରା ବାକ୍ସରୁ ରାଣୀମାଛି ପଳାଇ ନ ଯିବାର ବ୍ୟବସ୍ଥା କରାଯାଇଥାଏ ।

**(୩) ସ୍ମୋକର (Smoker)– ବା ଧୂଆଁ ଦେବା ଯନ୍ତ୍ର :** ଏହା ଟିଣରେ ତିଆରି ଏକ ଗୋଲାକାର ଡବା ଓ ଏହାର ପଛରେ ଏକ ଭାତି ଲାଗିଥାଏ । ଡବା ଉପରେ ଥିବା ଜାଲି ଉପରେ ନଡ଼ିଆ କତା ରଖି ନିଆଁ ଲଗାଇ ଭାତି ଚଳାଇଲେ ଉପରେ ଥିବା ନଳୀ ବାଟେ ଧୂଆଁ ବାହାରେ । ମାଛିମାନଙ୍କୁ ସ୍ଥିର ରଖିବାକୁ ଓ ଯେପରି ସେମାନେ ଅନ୍ୟକୁ ଆକ୍ରମଣ ନ କରିବେ, ସେଥିପାଇଁ ଏହା ବ୍ୟବହୃତ ହୁଏ ।

**(୪) ଫ୍ରେମ୍ (Frame) –** ଏହା କାଠରେ ତିଆରି ଏକ ଚାରିକୋଣିଆ ଗଠନ, ଯାହାର ମଧ୍ୟଭାଗ ସମ୍ପୂର୍ଣ୍ଣ ଖୋଲା । ଏଥିରେ ମାଛିମାନେ ଫେଣା ତିଆରି କରନ୍ତି ବା ଏଥିରେ ପୁରୁଣାବସାର ଫେଣା ବନ୍ଧା ଯାଏ ।

**(୫) ଏକ୍ସଟ୍ରାକ୍ଟର (Extractor) ବା ମହୁ ବାହାର କରିବା ଯନ୍ତ୍ର –** ମହୁଫେଣା ନ ଭାଙ୍ଗି ବା ନ ଚିପୁଡ଼ି ସେଥିରୁ ଏହି ଯନ୍ତ୍ର ଯାହାଯ୍ୟରେ ମହୁ ବାହାର କରାଯାଏ । ଏଥିରେ ଟିକିଏ ହେଲେ ମହୁ ନଷ୍ଟ ହେବାର ଭୟ ନ ଥାଏ ।

**(୬) ଅନ୍ୟାନ୍ୟ ପଦାର୍ଥ –** ଏହା ବ୍ୟତୀତ ପତଳା, ଲମ୍ବା ଏକ ଛୁରୀ, ଶୁଖିଲା ନଡ଼ିଆକତା, ଶୁଖିଲା ଟାଣୁଆ ସବୁ କଦଳୀ ପଟ, ଖଣ୍ଡେ କନା ବା ତଉଲିଆ, କାଠିଥିବା ଓ ଖୋଲା ଦୁଇଟି ଦିଆସିଲି, ଛୋଟ ଓ ବଡ଼ ଦୁଇଖଣ୍ଡି ଦଉଡ଼ି ଆଦି ମଧ୍ୟ ଆବଶ୍ୟକ ହୁଏ । ବର୍ତ୍ତମାନ ଦେଖାଯାଉ ମହୁ ବାକ୍ସର ଗଠନ କିପରି । ମହୁ ବାକ୍ସରେ ନିମ୍ନଲିଖିତ ଅଂଶଗୁଡ଼ିକ ଦେଖାଯାଏ ।

(୧) ବଟମ୍ ବୋର୍ଡ (Bottom Board) : ମହୁ ବାକ୍ସକୁ ଯେଉଁ ପଟା ଉପରେ ଖାପ ଖୁଆଇ ରଖାଯାଇଥାଏ, ତାହାକୁ ବଟମ୍ ବୋର୍ଡ କହନ୍ତି ।

(୨) ବ୍ରୁଡ୍ ଚାମ୍ବର (Brood Chamber) : ବାକ୍ସର ବଡ଼ ଓ ତଳ ଥାକ, ଯେଉଁଥିରେ ଫ୍ରେମ୍‌ଗୁଡ଼ିକ ବଡ଼, ତାହାକୁ ବ୍ରୁଡ ଚାମ୍ବର କହନ୍ତି । ଏହିଠାରେ ରାଣୀମାଛି ଅଣ୍ଡା ଦେଇ ଛୁଆ କରେ ।

(୩) ସୁପର (Super) : ତଳ ଥାକର ଉପରକୁ ଛୋଟଫ୍ରେମ୍ ଥାଇ ଯେଉଁ ଥାକଟି ବା ଥାକଗୁଡ଼ିକ ରଖାଯାଇଥାଏ, ତାହାକୁ ସୁପର୍ କହନ୍ତି ।

(୪) ଟପ୍ (Top) : ଯେଉଁ ଅଂଶ ଦ୍ୱାରା ମହୁ ବାକ୍ସର ଉପର ଭାଗକୁ ବନ୍ଦ କରାଯାଇଥାଏ, ତାହାକୁ ଟପ୍ କହନ୍ତି ।

## କୁଇନ୍ ଗେଟ୍ କିପରି ଲଗାଯାଏ ?

ମହୁମାଛିମାନେ ବାକ୍ସରେ ପଶିବାପାଇଁ ଥିବା ବାଟର ଦୁଇ ପାଖରେ ବଟମ୍ ବୋର୍ଡ଼ର ଉପରେ ଦୁଇଟି କଣ୍ଟା ପିଟି ବ୍ରୁଡ୍ ଚାମ୍ବରର ଆଗପଟା ଓ କଣ୍ଟା ମଧ୍ୟରେ କୁଇନ୍ ଗେଟ୍ ରଖି ଏହିପରି ଭାବରେ ବାଟଟି ବନ୍ଦ କରି ଦିଆଯାଇଥାଏ ।

## ରାଣୀମାଛିକୁ ଚିହ୍ନିବ କିପରି ?

ମହୁମାଛିମାନଙ୍କ ମଧ୍ୟରେ ରାଣୀ ମହୁମାଛି ସବୁଠାରୁ ବଡ଼ ଓ ଦେଖିବାକୁ ସୁନ୍ଦର । ଶ୍ରମିକ ବା କର୍ମୀ ମାଛିମାନଙ୍କର ରଙ୍ଗ ମାଟିଆ ଓ ଅଣ୍ଡିରା ମାଛିର ରଙ୍ଗ କଳା । ରାଣୀର ରଙ୍ଗ ହଳଦିଆ ମିଶା ଲାଲ ଓ ଏହା ଦେଖିବାକୁ ବିରୁଡ଼ି ପରି । ଅଣ୍ଡିରା ଓ ରାଣୀ ମହୁମାଛିର ନାହୁଡ଼ ନାହିଁ । ତେଣୁ ସହଜରେ ଧରିହୁଏ । ପାହାଡ଼ୀ ସାତଫେଣିଆ ରାଣୀମାଛିର ରଙ୍ଗ ସବୁଜ ଓ ଚକଚକିଆ । ରାଣୀମାଛି ସର୍ବଦା ଆସ୍ତେ ଆସ୍ତେ ଚାଲେ ଓ ଡେଣା ମେଲା କରି ଉଡ଼ିଯାଏ । ଅନ୍ୟ ମାଛିମାନଙ୍କଠାରୁ ଏହାର ମୁଣ୍ଡ,ଗଣ୍ଡି ମୋଟା ଓ ପେଟଟା ମୋଟା ଓ ଲମ୍ବା ଅଟେ ।

## ମହୁମାଛି ଦଳ ଧରିବା

ପ୍ରଥମେ ପାଳନ ପାଇଁ ଉପଯୁକ୍ତ ମହୁମାଛି ଦଳ କେଉଁଠାରେ ଅଛନ୍ତି ତାହା ଠାବ କରିବାକୁ ହେବ । ତା ପରେ ମାଛି ଦଳ ଧରିବା ଦିନ ବଡ଼ି ସକାଳୁ ନିମ୍ନଲିଖିତ ଜିନିଷମାନ ଧରି ମହୁମାଛି ବସାପାଖକୁ ଯିବା ଉଚିତ । ଯଥା–ଗୋଟିଏ ମହୁବାକ୍ସ,ଦୁଇଟି କୁଇନ୍ ଗେଟ୍,ସ୍ମୋକର,ଛୁରୀ,ଗଛ ବାହୁଙ୍ଗା କାଟିବା ପାଇଁ ହତିଆର,ନଡ଼ିଆକତା,ରୁମାଲ ବା ତଉଲିଆ,ଛିଣ୍ଡାକନା,କଦଳୀପଟ,ପାଣି ପାତ୍ର,ଖୋଲା ଓ ଢାଠିଥିବା ଦୁଇଟି ଦିଆସିଲି,ଦୁଇଖଣ୍ଡ ଦଉଡ଼ି ଓ କିଛି ଖାଦ୍ୟପଦାର୍ଥ ।

ପ୍ରଥମେ ମହୁ ବାକ୍ସଟିକୁ ସଫା କରି ଫ୍ରେମଗୁଡ଼ିକୁ ସଜାଇ ଠିକ୍ ଭାବରେ ରଖାଯାଏ । ତା'ପରେ ସ୍ମୋକରଟି ପ୍ରସ୍ତୁତି କରିବା ଉଚିତ । ଯେଉଁ ସ୍ଥାନ ଦେଇ ମହୁମାଛିମାନେ ଯିବାଆସିବା କରୁଛନ୍ତି ସେହି ସ୍ଥାନକୁ କାଟି ବାଟଟି ବଡ଼ କରିବା ଉଚିତ ଯେପରି ଭିତରେ ଥିବା ଫେଣାଗୁଡ଼ିକ ଦେଖାଯିବ । ଏ ସମୟରେ ଭିତରେ ଥିବା ଫେଣା ଉପରେ ଯେପରି ଆଘାତ ନ ଲାଗେ ସେପରି କରିବା ଉଚିତ । ମହୁମାଛି ଥିବା ସ୍ଥାନକୁ ବା ଫେଣା ଆଡ଼କୁ ଧୂଆଁ ଦେଇ ମାଛିମାନଙ୍କୁ ବାହାରକୁ ଘଉଡ଼ାଇ ଦେବା ଉଚିତ । ଏହି ସମୟରେ ସତର୍କତାର ସହିତ ଭିତରେ ଥିବା ଫେଣାଗୁଡ଼ିକୁ କାଟି ଆଣି ବାକ୍ସର ବ୍ରୁଡ୍ ଚାମ୍ବର (ଅଣ୍ଡା ଥାକ ଫ୍ରେମ)ରେ ବାନ୍ଧି ଦେବା ଉଚିତ । ବସା ଭିତରୁ ମାଛିମାନଙ୍କୁ ଘଉଡ଼ାଇଲା ବେଳେ ତତ୍ପରତାର ସହିତ ରାଣୀ ମାଛିକୁ ଧରି ବାକ୍ସ ଭିତରେ ପୂରାଇ ଦେବା ଉଚିତ ଓ ତତ୍‌କ୍ଷଣାତ୍ ବାକ୍ସ ବନ୍ଦ କରି କୁଇନ୍ ଗେଟ୍ ଲଗାଇ ଦେବା ଆବଶ୍ୟକ । ରାଣୀ ମାଛିକୁ ଖୋଜି ଖୋଜି ଅନ୍ୟ ମାଛିମାନେ ଧୀରେ ଧୀରେ ବାକ୍ସ ଭିତରେ ପ୍ରବେଶ କରିବେ ।

## ମହୁମାଛିମାନଙ୍କର ଖାଦ୍ୟ (Bee Pasture)

ମହୁମାଛି ବର୍ଷର ସବୁ ସମୟରେ ସକ୍ରିୟ ରହନ୍ତି ଏବଂ ବିଭିନ୍ନ ଋତୁରେ ଫୁଟୁଥିବା ଫୁଲ,ଫଳ, ପନିପରିବା ତଥା ଗୁଳ୍ମରୁ ମକରନ୍ଦ ଓ ରେଣୁ ସଂଗ୍ରହ କରନ୍ତି । ଯେଉଁ ଗଛଗଡ଼ିକରୁ ମହୁମାଛିମାନେ ମଧୁ ସଂଗ୍ରହ କରନ୍ତି ସେଗୁଡ଼ିକୁ ସାଧାରଣତଃ ତିନି ଶ୍ରେଣୀରେ ବିଭକ୍ତ କରାଯାଇଥାଏ , ଯଥା–

**(୧) ମକରନ୍ଦ ଉତ୍ପାଦନକାରୀ ବୃକ୍ଷ :** ଜାମୁକୋଳି ବିଭିନ୍ନ ରକମର ଗୋଲାପ, ଜିନିଆ, ଅର୍ଜୁନ, ଧନିଚା, ସଜନା, ଇଉକାଲିପଟାସ, ମହୁଲ, ନିମ୍ବ, ଶିଶୁ, ଶିମିଳି, ତେନ୍ତୁଳି ଓ ଶିରିଶ ଇତ୍ୟାଦି ।

**(୨) ରେଣୁ ଉତ୍ପାଦନକାରୀ ବୃକ୍ଷ :** ଖଜୁରୀ, ଡାଳିମ୍ବ, ଜଡ଼ା, ସୁନାରୀ, କୃଷ୍ଣଚୂଡ଼ା, ପାଳଙ୍ଗ, କନ୍ଦମୂଳ, ବାଇଗଣ, ଲଙ୍କା, ବିଭିନ୍ନ ଡାଲି ଜାତୀୟ ଫସଲ ଓ ମକା ଇତ୍ୟାଦି ।

**(୩) ରେଣୁ ଓ ମକରନ୍ଦ ଉତ୍ପାଦନକାରୀ ବୃକ୍ଷ :** କଦଳୀ,ଲେମ୍ବୁ,ନଡ଼ିଆ, ପିଜୁଳି, ଲଙ୍କା, ଆମ୍ବ, ବିଭିନ୍ନ ଜାତୀୟ କୋଳି,ସୋରିଷ, ଅଳସୀ, ସୂର୍ଯ୍ୟମୁଖୀ, ରାଶି, କଖାରୁ ଜାତୀୟ ଫସଲ, ପିଆଜ, ରସୁଣ, ମୂଳା,ପାନମଧୁରୀ ଓ ଧନିଆ ଇତ୍ୟାଦି ।

ଯଦି ବର୍ଷର କୌଣସି ସମୟରେ ମହୁ ଚାଷ କରାଯାଉଥିବା ସ୍ଥାନରେ ବ. ଅଞ୍ଚଳରେ ମହୁମାଛିର ପ୍ରାକୃତିକ ଖାଦ୍ୟର ଅଭାବ ପରିଲକ୍ଷିତ ହୁଏ, ତେବେ ଚିନିକୁ ଶିରା କରି କୃତ୍ରିମ ଉପାୟରେ ଗୋଟିଏ ପାତ୍ରରେ ମହୁ ବାକ୍ସ ପାଖରେ ମାଛିମାନଙ୍କୁ ଖାଦ୍ୟ ରୂପେ ଦେବାକୁ ହେବ ।

## ମହୁମାଛିମାନଙ୍କର ଶତ୍ରୁ

ଭାଲୁ, କୋକିଶିଆଳି, ଏଣୁଅ, ସାପ, ଝିଟିପିଟି, ବେଙ୍ଗ, ବୁଢ଼ିଆଣୀ, ଜନ୍ଦା ଓ ପିମ୍ପୁଡ଼ି ପ୍ରଭୃତି ମହୁମାଛିମାନଙ୍କର ଶତ୍ରୁ । ତେଣୁ ଏମାନଙ୍କ ଦାଉରୁ ମହୁ ବାକ୍ସକୁ ରକ୍ଷା ନ କଲେ ଏମାନେ ମହୁମାଛି ତଥା ବାକ୍ସ ନଷ୍ଟ କରି ଦିଅନ୍ତି ।

## ମହୁ ବାକ୍ସ କେଉଁଠି ଓ କିପରି ରଖାଯାଏ ?

୨" × ୨" ମୋଟା ସାଇଜ୍‌ର ଖଣ୍ଡିଏ ଚାରିଫୁଟ ଲମ୍ବା କାଠର ଗୋଟିଏ ମୁଣ୍ଡରେ ଏକ ଫୁଟ ଚଉଡ଼ା ଓ ଲମ୍ବାର ଖଣ୍ଡିଏ ପଟାକୁ କଣ୍ଟା ପିଟି କିମ୍ବା ସାଲ କରି ଲଗାଇଦେଲେ ଏହା ଏକ ଷ୍ଟାଣ୍ଡ ପରି ହୋଇଯାଏ । ଏହି ଷ୍ଟାଣ୍ଡଟିକୁ ଗୋଟିଏ ଛାଇ ସ୍ଥାନରେ ପୋତି ଦିଆଯାଏ, ଯେପରି ତାହା ମାଟି ଉପରୁ ଅଢ଼େଇ ଫୁଟ ଛାଡ଼ି ରହିବ । ଷ୍ଟାଣ୍ଡର ତଳଟିକୁ ସିମେଣ୍ଟ ଇଟା ଦ୍ୱାରା ଗୋଟିଏ କୁଣ୍ଡ ପରି କରିବା ଉଚିତ (ଜଳଯନ୍ତ୍ର)

ଯେପରିକି ସେଥିରେ ପାଣିଥିଲେ ଆଉ ଜନ୍ଦା, ପିମ୍ପୁଡ଼ି ଷ୍ଟାଣ୍ଡ ଦେଇ ମହୁ ବାକ୍ସକୁ ଯାଇ ପାରିବେ ନାହିଁ । ବାକ୍ସଟିକୁ ଏହି ଷ୍ଟାଣ୍ଡ ଉପରେ ରଖାଯାଏ । ଦିନେ ଦୁଇଦିନ ମାଛିମାନେ ଟିକିଏ ଅସ୍ଥିର ହୋଇ ଉଡ଼ିବୁଲିବା ଦେଖାଯିବ । ତା'ପରେ ସେମାନେ ବାକ୍ସକୁ ଆଦରି ଯିବେ ଓ ବାହାରୁ ଉଡ଼ି ବୁଲି ମହୁ ବା ମକରନ୍ଦ ଫୁଲରେଣୁ ଇତ୍ୟାଦି ସଂଗ୍ରହ କରିବାରେ ଲାଗି ପଡ଼ିବେ ।

## ମହୁମାଛି ବିନ୍ଧିବାର କାରଣ

ସାଧାରଣତଃ ମେଘୁଆ, କୋହଳ ବା ଥଣ୍ଡା ପାଗରେ କିମ୍ବା ସେମାନଙ୍କୁ ବିରକ୍ତ କଲେ ମହୁମାଛିମାନେ ରାଗିଯାଇ ଶତ୍ରୁକୁ ଆକ୍ରମଣ କରନ୍ତି । ମହୁମାଛିମାନଙ୍କର ଯତ୍ନ ନେବାପାଇଁ ବାକ୍ସ ଖୋଲିଲା ବେଳେ ଅନେକ ସମୟରେ ମହୁମାଛି ଆକ୍ରମଣ କରିଥାନ୍ତି । ଉତ୍କଟ ଝାଳ ଗନ୍ଧ, ଉଜ୍ଜ୍ୱଳ ଧାତବ ପଦାର୍ଥ, କଳା, ମାଟିଆ ବା ଲାଲ ରଙ୍ଗର ପୋଷାକ ଦ୍ୱାରା ମହୁମାଛିମାନେ ବିଚଳିତ ହୁଅନ୍ତି । ମହୁମାଛିମାନଙ୍କର ପଥ ଅବରୋଧ କଲେ ମଧ୍ୟ ସେମାନେ ଉତ୍ୟକ୍ତ ହୋଇଉଠନ୍ତି ।

## ସତର୍କତା

(୧) ମହୁ ବାକ୍ସ ପରିଦର୍ଶନ ସମୟରେ ମୁଖ ବନ୍ଦ ରଖିବା ଉଚିତ, କାରଣ ଜିଭରେ ମହୁମାଛି ବିନ୍ଧିଲେ ଜଟିଳ ପରିସ୍ଥିତି ସୃଷ୍ଟି ହୋଇଥାଏ ।

(୨) ମହୁମାଛି ବସା ଦେଖିବା ବା ପରୀକ୍ଷା କଲାବେଳେ ସାମନାପଟୁ ଯାଇ କଡ଼ରୁ ମହୁ ବାକ୍ସ ନିକଟକୁ ଯିବା ଉଚିତ । ନିର୍ଭୀକ ଓ ସାବଧାନତାର ସହିତ ମହୁ ବାକ୍ସକୁ ଧୀର ସ୍ଥିର ଭାବେ ଖୋଲିଲେ ମହୁମାଛି ବିଚଳିତ ହେବାର ଆଶଙ୍କା ନ ଥାଏ ଏବଂ ସେମାନଙ୍କର ଆକ୍ରମଣ କରିବାର ସମ୍ଭାବନା ନ ଥାଏ ।

(୩) ମହୁମାଛିଙ୍କୁ ଆୟତ୍ତ କରିବା ପାଇଁ ଧୂଆଁନଳୀ ବ୍ୟବହାର କରିବା ଉଚିତ ।

(୪) ମହୁଘରା ଖୋଲିବା ପୂର୍ବରୁ "ଆପିସ୍ ମେଲ୍" ନାମକ ହୋମିଓପାଥିକ ଔଷଧ ସେବନ କଲେ ମହୁମାଛି ଆକ୍ରମଣଜନିତ ଅସୁବିଧାର ଭୟ ନ ଥାଏ ।

(୫) ମହୁମାଛିଙ୍କ ଦାଉରୁ ରକ୍ଷା ପାଇବାପାଇଁ ଅନୁମୋଦିତ ପୋଷାକ ଓ ମୁହଁର ଢାଙ୍କୁଣୀ (Bee Veil) ବ୍ୟବହାର କରିବା ଉଚିତ ।

## ମହୁ ବାହାର କରିବା (Extraction of honey)

ସାଧାରଣତଃ ବର୍ଷାକାଳ ପରଠାରୁ ଗ୍ରୀଷ୍ମକାଳ ପର୍ଯ୍ୟନ୍ତ ମହୁ ସଂଗ୍ରହ କରାଯାଏ ।

ସବୁ ସୁପର ଚାମ୍ବର ଓ ବ୍ରୁଡ ଚାମ୍ବରର ସବୁ ଫେଣାରେ ମହୁ ହେଲେ ମହୁ ବାହାର କରାଯାଏ । କେବଳ ସୁପର ଫେଣାଗୁଡ଼ିକରୁ ମହୁ ବାହାର କରାଯାଏ । ବ୍ରୁଡ ଫେଣାର ମହୁ, ମହୁମାଛିମାନଙ୍କର ବ୍ୟବହାର ପାଇଁ ରଖି ଦିଆଯାଏ । ସୁପର ଫେଣାର ମହୁ କୋଷ ମଧ୍ୟରୁ ଶତକଡ଼ା ୮୦ ରୁ ୯୦ ଭାଗ ବନ୍ଦ ହୋଇଥିବା ବେଳେ ମହୁ ସଂଗ୍ରହ କରିବା ଉଚିତ ।

ସୁପର ଫେଣାରୁ ଗୋଟିକ ପରେ ଗୋଟିଏ ଲେଖାଏଁ ୪ ଫେଣା ବାହାର କରାଯାଏ । ପ୍ରତ୍ୟେକରୁ ମାଛିମାନଙ୍କୁ ବାହାର କରି ଦିଆଯାଏ ।



ତା ପରେ ଏହି ଫ୍ରେମ୍ ସହ ଫେଣାକୁ ହାତରେ ଧରି ପତଳା ଛୁରୀ ଦ୍ୱାରା ବନ୍ଦ ଥିବା ମହୁ କୋଷଗୁଡ଼ିକରେ ଉପର ଆବରଣକୁ ଚାଞ୍ଛି ଦିଆଯାଏ । ଏହା ଦ୍ୱାରା ମହୁ କୋଷଗୁଡ଼ିକର ମୁହଁ ଖୋଲିଥାଏ । ଫେଣାର ଉଭୟ ପଟର କୋଷ ମୁହଁ ଚାଞ୍ଛି ସାରିବା ପରେ ଫେଣାଗୁଡ଼ିକୁ ମହୁ ବାହାର କରିବା ଯନ୍ତ୍ରରେ ସଜାଇ ରଖାଯାଏ । ଯନ୍ତ୍ରକୁ ବୁଲାଇ ମହୁ ବାହାର କରାଯାଏ । ତା'ପରେ ଫେଣାଗୁଡ଼ିକୁ ପୁଣି ନେଇ ମହୁ ବାକ୍ସର ସୁପର ଚାମ୍ବରରେ ପୂର୍ବ ପରି ସଜାଇ ରଖାଯାଏ । ଯଦି କୌଣସି ଫେଣା ଭାଙ୍ଗି ଯାଇଥାଏ, ତେବେ ତାକୁ ଫ୍ରେମ୍ ସହିତ କଦଳୀ ପଟୁକା ଦ୍ୱାରା ବାନ୍ଧି ଦିଆଯାଏ । ସାଧାରଣତଃ ସକାଳ ୮ଟାରୁ ୯ ଟା ମଧ୍ୟରେ ମହୁ ବାହାର କରାଯାଏ ।

●

# ଜୀବ ପ୍ରଗତି ଆମ ସଂସ୍କୃତି

## ପ୍ରକୃତି ଓ ପ୍ରାକୃତିକ ବିଭବ

ଯେଉଁ ଦେଶର ସଭ୍ୟତା ଯେତେ ଉନ୍ନତ ତାହା ସେତିକି ତାର ସଂସ୍କୃତିର ସମୀପବର୍ତ୍ତୀ ହୁଏ । ଆମେ ସଭ୍ୟତାରେ ଉନ୍ନତ ହେଉଛୁ,ମାତ୍ର ଆମ ସଂସ୍କୃତି ଠାରୁ ଦୂରେଇ ଯାଉଛୁ ।

ପୃଥିବୀର ଅବିଭାଜ୍ୟ ସୀମିତ ପରିବର୍ତ୍ତନଶୀଳ ପରିବେଶ ସୁନ୍ଦର କରି ଗଢ଼ି ତୋଳିବାର ସମୟ ଆଜି ପହଞ୍ଚିଛି । ଜୀବନର ବିକାଶ ଓ ସୁରକ୍ଷା ଲାଗି ଏକ ସୁନ୍ଦର ସମନ୍ୱିତ ଜୀବ ସଂସ୍କୃତି ଏବଂ ତାର ନୂତନ ଉନ୍ମେଷ ଲାଗି ଆମେ ସମସ୍ତେ ପ୍ରତିଶ୍ରୁତିବଦ୍ଧ । ଆଗାମୀ ଦିନର ଶିଶୁ ପାଇଁ ଏବଂ ସୁନ୍ଦର ଓ ଉନ୍ନତ ଧରଣର ଭୂସ୍ୱର୍ଗ ସୃଷ୍ଟିକରିବା ପାଇଁ ଆମ ସମସ୍ତଙ୍କର ଲକ୍ଷ୍ୟ ଓ ଧ୍ୟେୟ ହେଉ ।

ବାସ୍ତବରେ ଏହି ସନ୍ଦେଶକୁ ବିଶ୍ଳେଷଣ କଲେ ମନେହୁଏ ପ୍ରକୃତିର ଘନନୀଳିମାଘେରା ପାହାଡ଼,ପର୍ବତ,ନଦନଦୀ,ବୃକ୍ଷଲତା ପରିପୂର୍ଣ୍ଣ ଛାୟାବୀଥି,ବିସର୍ପିଳ ନଦୀପଥର ସ୍ୱରନିର୍ଯ୍ୟାସ,ଅନୁତ୍ତେଜିତ ବନ୍ୟ ପଶୁପକ୍ଷୀର ସମ୍ମିଳିତ ପଦଧ୍ୱନି ଓ ସେମାନଙ୍କର ସ୍ୱର କାକଳିର ବନ୍ୟା,ଲକ୍ଷ ଲକ୍ଷ ବନ୍ୟଜୀବନର ଗ୍ରନ୍ଥିତ ସୂଚୀଚିତ୍ର ଓ ସଙ୍ଗୀତ ସହସା ଯେପରି ଛିନ୍ନ ହୋଇ ନିଶ୍ଚିହ୍ନ ହୋଇଆସୁଛି । କେତେକ ଅଭୟାରଣ୍ୟରେ ଯାହା କିଛି ରହିଯାଇଛି ସୀମିତ ଅରଣ୍ୟଶିଖା ଓ ପଶୁପକ୍ଷୀ ମୁଖରିତ ବନଭୂମିର ପ୍ରକୃତ ଭଗ୍ନାଂଶ । ସବୁକିଛି ଅନିର୍ଦ୍ଦିଷ୍ଟ,ଦୁର୍ବୋଧ୍ୟ ଇତିହାସରେ ସ୍ୱାକ୍ଷର ବହନ କରି ଦଣ୍ଡାୟମାନ ହୋଇ ରହିଛି । କ୍ଷୀଣ ପ୍ରକୃତିର ବାସ୍ତବ ନଗ୍ନତା ଆକାରହୀନ ଧୂସର ଧୂମାଳ ନଗ୍ନ ପାହାଡ଼ର ବିଭୀଷିକା ଦେଖି କେହି କହିବ ନାହିଁ ଯେ ଦିନେ ଏଠାରେ ପ୍ରଶସ୍ତ ବନ୍ୟପ୍ରାଣୀ ମୁଖର ସୀମାହୀନ ସବୁଜ ବନାନୀ ଏବଂ ତା'ରି କୋଳରେ ଶାୟିତା ଚିରସ୍ରୋତା ଗିରିଝରଣା ଉଚ୍ଛଳ ତରଙ୍ଗ ବାୟୁରେ ଅଜସ୍ର କଂପନ ସୃଷ୍ଟି କରୁଥିଲା । ଏହି ନିଷ୍ଠୁର ସତ୍ୟକୁ ଉପଲବ୍ଧି କରିଥିଲେ ଯେଉଁ ବନଜୀବନ ଆମ ଗୌରବମୟ ପରଂପରା ହୋଇ ରହିଥିଲା ଯାହାସବୁ ଆମ ସଂସ୍କୃତିକୁ ପରିପୁଷ୍ଟ ଓ ପୁଷ୍କଳ କରି ଗଢ଼ି ଏକ ନବ ଜାଗରଣ ସୃଷ୍ଟି କରିଥିଲା, ତାରି ଅତୀତକୁ ବଡ଼ ବିଷର୍ଣ୍ଣ ଭାବରେ ଝୁରିବାକୁ ପଡ଼େ ।

## ଆଶ୍ରମ ଓ ଅରଣ୍ୟ ସଭ୍ୟତା

ଆମ ସଭ୍ୟତା ଉତ୍କର୍ଷ ଲାଭ କରିଥିଲା ଆଶ୍ରମ ସଭ୍ୟତାରୁ । ଅଗଣିତ ମୁନିଋଷି ବନଜୀବନ ଗହଳରେ ତା'ରି ପଟ୍ଟଭୂମିରେ ନିର୍ବାକ ନିଷ୍ପନ୍ଦ ଅଥଚ ଅତ୍ୟନ୍ତ ଗୂଢ଼ ଜୀବନଦର୍ଶନର ଅନନ୍ତ ଗୋପନୀୟ ରହସ୍ୟ ଆବିଷ୍କୃତ କରି ଦର୍ଶନର ଆଲୋକକୁ ଉଦ୍‌ଘାଟିତ କରିଥିଲେ ।

ଆମର ଅରଣ୍ୟସଂସ୍କୃତି,ଆଦିବାସୀ ସଂସ୍କୃତି, ନଦନଦୀ ସଂସ୍କୃତି,ଦ୍ରବ୍ୟଗୁଣ ସଂସ୍କୃତି, ନାଟ୍ୟସଂସ୍କୃତି, ସ୍ଥାପତ୍ୟ-କଳା ସଂସ୍କୃତି ଗୋଟି ଗୋଟି କରି ବିଶ୍ଳେଷଣ କଲେ ବନ୍ୟଜୀବନର ପ୍ରଭାବ ଆମ ଜୀବନଧାରାକୁ କିଭଳି ଭାବରେ ପ୍ରଭାବିତ କରିଛି ତାହା ସ୍ପଷ୍ଟ ଭାବରେ ହୃଦୟଙ୍ଗମ କରିହୁଏ । ସଂସ୍କୃତି ଆମର ଜୀବନ ବିକାଶ ଲାଗି ଯେତିକି ଆବଶ୍ୟକ, ବନଜୀବନର ବିକାଶ ତତୋଽଧିକ ହେବା ଆହୁରି ଶ୍ରେୟସ୍କର । ଉନ୍ନତ ସଂସ୍କୃତି ବିନା ଜାତୀୟ ଚରିତ୍ରର ବିବର୍ତ୍ତନ ହୋଇପାରେ ନାହିଁ । ସେହିପରି ବ୍ୟକ୍ତି ଚରିତ୍ରର ବିକାଶ ନ ଘଟିଲେ ଯେଉଁ ଅପସଂସ୍କୃତିର ସ୍ଫୁରଣ ଘଟେ ତାହା ଯେ କେବଳ ଅପାଂକ୍ତେୟ ତା ନୁହେଁ,ଅସ୍ପୃହଣୀୟ ମଧ୍ୟ । ସୁତରାଂ ସଂସ୍କୃତି ହିଁ ଜୀବନ ଧାରଣର ମାନ ଏବଂ ଆମ ପ୍ରକୃତିର ଚିନ୍ତା ଚେତନା, ଦର୍ଶନ, ଅଭିବ୍ୟକ୍ତି, ଧର୍ମ, ସାହିତ୍ୟ, ସୃଷ୍ଟି, କୃଷ୍ଟି ଓ ସଂହତିର ମୂଲ୍ୟଭିତ୍ତିକ ଆଦ୍ୟ ଉତ୍ସ ବୋଲି ଅଂସ୍ୱୀକାର କରାଯାଇନପାରେ । ତେଣୁ ସଂସ୍କୃତିର ଅଭ୍ୟୁଦୟ ଓ ଚରମ ବିକାଶ ଲାଗି ପ୍ରକୃତି ଓ ତା କୋଳରେ ଓ ବଢୁଥିବା ଜୀବଜନ୍ତୁମାନଙ୍କ ଲାଗି ସ୍ନେହ ଶ୍ରଦ୍ଧା ଦେଖାଇବାକୁ ହେବ । ଆର୍ଯ୍ୟସଭ୍ୟତା ପ୍ରତିଷ୍ଠିତ ହେବାର ବହୁ ପୂର୍ବରୁ ଆମ ଦେଶରେ ପଶୁପକ୍ଷୀମାନଙ୍କର ଉଚ୍ଛ୍ୱସିତ ଜୀବନାଦର୍ଶକୁ ନେଇ ଭାରତୀୟ ସଂସ୍କୃତି ପରିପୁଷ୍ଟ ହୋଇଆସିଥିଲା । ଆର୍ଯ୍ୟୋତ୍ତର ଯୁଗରେ ଆର୍ଯ୍ୟ ମୁନିଋଷିମାନେ ପଶୁପକ୍ଷୀମାନଙ୍କ ପବିତ୍ରତାକୁ ନେଇ ଯେଉଁ ନୀତିଗର୍ଭକ ସୂକ୍ତି ସେମାନଙ୍କର ଶାସ୍ତ୍ର ପୁରାଣରେ ଉଲ୍ଲେଖ କରି ଯାଇଥିଲେ, ସେଗୁଡ଼ିକ ଆହୁରି ବ୍ୟାପକ ଓ ବିଶଦଭାବରେ ଗ୍ରହଣ କରାଗଲା ଏବଂ ଧର୍ମ ସହିତ ସେଗୁଡ଼ିକୁ ପୂର୍ଣ୍ଣମାତ୍ରାରେ ମଧ୍ୟ ଜଡ଼ିତ କରାଗଲା । ବ୍ରହ୍ମାଙ୍କ ସହିତ ହଂସ, ବିଷ୍ଣୁଙ୍କର ଗରୁଡ଼, ଶିବଙ୍କର ବୃଷଭ ଓ ସର୍ପ, ଦୁର୍ଗାଙ୍କର ସିଂହ, ଇନ୍ଦ୍ରଙ୍କର ଐରାବତ ହସ୍ତୀ, ଗଣେଶଙ୍କ ସହ ମୂଷା, ଲକ୍ଷ୍ମୀଙ୍କର ହସ୍ତୀ ଓ ପେଚକ, ଅଗ୍ନିଙ୍କର ମେଣ୍ଢା, ଯମଙ୍କର ମଇଁଷି, ବରୁଣଙ୍କର କୁମ୍ଭୀର, ବାୟୁଙ୍କର ମୃଗ, କୁବେରଙ୍କର ଘୋଡ଼ା, ଅନନ୍ତଙ୍କର କଇଁଚ ଓ କାର୍ତ୍ତିକେୟଙ୍କର ମୟୂର ଇତ୍ୟାଦିଙ୍କ ବାହନ ତଥା ସମ୍ପୃକ୍ତ ଭାବରେ କଳ୍ପନା କରାଯାଇଛି । ଏହାର ଅର୍ଥ ବିଭିନ୍ନ ଦେବଦେବୀ ପଶୁପକ୍ଷୀମାନଙ୍କର ସହାୟତାରେ ମଣିଷକୁ ଦୁଃଖ ଦୁର୍ଦ୍ଦଶାରୁ ଉଦ୍ଧାର କରିବାଲାଗି ସେମାନଙ୍କୁ ଧରି ଚାଲିଆସିଥାଆନ୍ତି । ସୌରଜଗତର ରବି, ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଶନି ଏପରିକି ରାହୁ ଓ କେତୁ ଭଳି ଅମଙ୍ଗଳସୂଚକ ଗ୍ରହାଦିଙ୍କ ସହିତ ପଶୁପକ୍ଷୀ ଜୀବନକୁ ଯେତେ

ସୁନ୍ଦର ଓ ଆଶ୍ଚର୍ଯ୍ୟ ଭାବରେ ସଂଶ୍ଳିଷ୍ଟ କରାଯାଇଛି, ତାହା ପ୍ରଣିଧାନଯୋଗ୍ୟ । ଆମର ଆଦିବାସୀ ସଂସ୍କୃତି, ଦ୍ରାବିଡ଼ ସଂସ୍କୃତି ଯେଉଁଥିରେ ଆଧୁନିକ ସଂସ୍କୃତି ରୂପାନ୍ତରିତ ହୋଇଛି, ତାହା ମଧ୍ୟ ପଶୁପକ୍ଷୀ ପ୍ରଭାବରୁ ବାଦ ଯାଇ ନାହିଁ । ଯେଉଁଠି ପ୍ରାଣୀ ଦେହରେ ଜୀବନ ସଞ୍ଚାର କରିବା ମନୁଷ୍ୟର ଅକ୍ତିଆର ବାହାରେ, ଜୀବନ ସୂତ୍ରକୁ ଛିନ୍ନ କରିବାର ଐତିହ୍ୟକୁ ରସାପ୍ଲୁତ ଓ ଭାବ ବିମଣ୍ଡିତ କରିପାରିଛି ।

## ପ୍ରକୃତିକୁ ବିଦୀର୍ଣ୍ଣ

ଶିମିଳିପାହାଡ଼ ଘଞ୍ଚଅରଣ୍ୟର କେଉଁ ଏକ ପ୍ରଚ୍ଛନ୍ନ ପର୍ବତ ଶିଖରୁ ବହିଆସିଛି ଯୋରନ୍ଦା ଜଳପ୍ରପାତ । ମନେହୁଏ ଆକାଶର ଧୂଆନୀଳ ବକ୍ଷ ଦେଇ ଗଦାଏ ନୀଳ ସୁଷମାକୁ ନିମ୍ନଦେଶର ଧୂସର ଗିରିଗହ୍ୱର ସହିତ ସଂଯୋଗ କରିଛି ଗୁଡ଼ାଏ ଶୁଭ୍ରନିଭ ଜଳଧାରା ! ଶ୍ୱାପଦସଙ୍କୁଳ ଏଇ ବନସ୍ଥଳୀର ନିମ୍ନ ଅନ୍ୟ ଏକ ପାହାଡ଼ର ଶିଖରଦେଶରେ ଅଛି କ୍ଷୁଦ୍ର ଏକ ଡାକବଙ୍ଗଳା । ନିର୍ଜନ, ନିରଭିମାନ ଶାନ୍ତିପ୍ରଦ ଏହି ସ୍ଥାନଟିର ପ୍ରକୃତିକୁ ଆହୁରି ଜୀବନ୍ତ ଓ ମନୋରମ୍ କରିଦେଇଛନ୍ତି ବହୁ ଜାତି ବିଜାତିର କୀଟପତଙ୍ଗ ଓ ଜୀବଜନ୍ତୁ । ମଣିଷ ପ୍ରକୃତିର ସଂରକ୍ଷକ, ବନ୍ୟଜନ୍ତୁର ହତ୍ୟାକାରୀ ଓ ବନ୍ୟଜନ୍ତୁ ସହିତ ପ୍ରତିଯୋଗିତାରେ ଅବତୀର୍ଣ୍ଣ ହୋଇଛି ରହିବା ଲାଗି ସ୍ଥାନ ଏବଂ କ୍ଷୁଧା ପ୍ରଶମନ ଉଦ୍ଦେଶ୍ୟରେ ଖାଦ୍ୟଲାଗି । ବନ୍ୟ ପ୍ରାଣୀ ଅପେକ୍ଷା ମନୁଷ୍ୟ ପ୍ରକୃତିର କ୍ଷତି ଘଟାଇ ଚାଲିଛି ଅଧିକ ମାତ୍ରାରେ, ଛିନ୍ନଭିନ୍ନ କରିଛି ତାର ଭାରସାମ୍ୟକୁ ଅଥଚ ପ୍ରକୃତିର ସେ ଏକ ଅନ୍ତରଙ୍ଗ ଅଙ୍ଗବିଶିଷ୍ଟ । ଏହାହିଁ ଉଦ୍‌ବେଗ ଓ କ୍ଷୋଭର କାରଣ ।

## ପ୍ରକୃତି ଓ ପ୍ରାଣୀରାଜି

ଭୌଗୋଳିକ ଅବସ୍ଥା ଓ ଜଳବାୟୁର ଭିନ୍ନତା ଦୃଷ୍ଟିରୁ ଆମ ଦେଶରେ ଅନେକ ମୂଲ୍ୟବାନ୍ ବୃକ୍ଷଲତା ଓ ପଶୁପକ୍ଷୀ ରହିଛନ୍ତି । ବନ୍ୟଜନ୍ତୁ ଯେ କେବଳ କୃଷି ଓ ଅରଣ୍ୟ ବିସ୍ତାରରେ ସାହାଯ୍ୟ କରନ୍ତି ତା'ନୁହେଁ, ମୂଲ୍ୟବାନ ବୈଦେଶିକ ମୁଦ୍ରା ଅର୍ଜନ କରିବା ସଙ୍ଗେ ସଙ୍ଗେ ଆମ ଜୀବନର ପ୍ରତ୍ୟେକ ସ୍ତରରେ ଶିକ୍ଷା, ସ୍ୱାସ୍ଥ୍ୟ, ସଂସ୍କୃତି ଏବଂ ଐତିହ୍ୟକୁ ପୂର୍ଣ୍ଣ ପ୍ରାଣରେ ପ୍ରଭାବିତ କରି ଆମ ଜୀବନକୁ ପୂର୍ଣ୍ଣାଙ୍ଗ ଏବଂ ବିକଶିତ କରନ୍ତି । ସେମାନଙ୍କର ମୂଲ୍ୟାଙ୍କନ ଅର୍ଥାକାରରେ କରିବା ଏକ ଦୁରୂହ ବ୍ୟାପାର । ପ୍ରାୟ ୧୫୦୦୦ ବୃକ୍ଷଲତା, ୨୦୦୦ ପ୍ରକାରର ପକ୍ଷୀ ଏବଂ ୫୦୦ ରକମର ପଶୁ ଆମ ଅରଣ୍ୟ ସଂପଦକୁ ବିଭବଶାଳୀ କରିପାରିଛନ୍ତି । ଜୀବଜନ୍ତୁଙ୍କର ବାସସ୍ଥାନ ଅରଣ୍ୟ ପ୍ରକୃତିକୁ ଧ୍ୱଂସ କରାଯିବା ଫଳରେ ଆଶାତୀତ ଭାବରେ ସେମାନଙ୍କର ସଂଖ୍ୟା ହ୍ରାସ ପାଇଛି ।

ଶୁଭଯାତ୍ରା ସମୟରେ ନେଉଳ, ଗାଈ, ଶଂଖଚିଲ, ଭଦଭଦଳିଆ ପକ୍ଷୀ, ହଳଦୀବସନ୍ତ, ବଣି, ଶୃଗାଳ, ମୃଗ ଦେଖିଲେ ଯାତ୍ରା ଶୁଭ ହୁଏ ବୋଲି କୁହାଯାଏ । ତେଣୁ ଲୋକେ କହନ୍ତି -

*'ବାମେ ଶବ, ଶିବା କୁମ୍ଭା,*
*ଦକ୍ଷିଣେ ଗୋଦ୍ୱିଜ ମୃଗା'*

ଦେଖିଲେ ଯାତ୍ରା ଅତ୍ୟନ୍ତ ଶୁଭଦାୟକ ହୁଏ । ମଣିଷ ଅଙ୍ଗର ସ୍ଥଳବିଶେଷରେ ପଲ୍ଲୀ ପତନର ଶୁଭାଶୁଭ ଫଳ ମଧ ନିର୍ଣ୍ଣୟ କରି ଯାଇଥାଏ । କେବଳ ଏତିକି ନୁହେଁ, ପଶୁପକ୍ଷୀ ଯେ ଆମର ଜାଗତିକ ଅବସ୍ଥାକୁ ପ୍ରଭାବିତ କରିଛନ୍ତି ତା ନୁହେଁ, ସ୍ୱପ୍ନାବସ୍ଥାରେ ବିଭିନ୍ନ ପଶୁପକ୍ଷୀକୁ ଦେଖିଲେ ଯେଉଁ ଶୁଭଫଳ ମିଳେ, ତାହା ଅନୁସାରେ ଲୋକେ ଆଶ୍ୱାସନା ଓ ଶାନ୍ତି ଆଶାରେ ଆଶାୟୀ ହୋଇଉଠନ୍ତି ।

ବନ୍ୟଜନ୍ତୁ, ପକ୍ଷୀ, ସରୀସୃପର ଆଚାର ବ୍ୟବହାର, ଆହାର ବିହାର, ଭାବଭଙ୍ଗୀ, ଶରୀରର ସୌନ୍ଦର୍ଯ୍ୟକୁ ନେଇ କବି, ଭାବୁକ, ଦାର୍ଶନିକ ବହୁ କାବ୍ୟକବିତା ରଚନା କରି ଯାଇଛନ୍ତି ।

## ପ୍ରାଣୀ ଓ ମନୁଷ୍ୟର ମନୋରଞ୍ଜନ

ବନ୍ୟଜନ୍ତୁର କ୍ରୀଡ଼ାଚଞ୍ଚଳ ଜୀବନ, ଅପରୂପ ସୌନ୍ଦର୍ଯ୍ୟ ଏବଂ ବନଭୂମିର ଅଜସ୍ର ସ୍ୱର ସଂପଦର ବ୍ୟାମୋହ ଭିତରେ ଯେଉଁ ନୈସର୍ଗିକ ଶାନ୍ତି ମିଳେ ତାକୁ ମଣିଷ ଭୁଲିପାରେ ନାହିଁ । ଇଚ୍ଛା ହୁଏ ସେ ଏଇ ଅମୃତ ଆସ୍ୱାଦନ କରି ଚିରଦିନ ବନଜୀବନର ନିଛକ ଗହଳ ଭିତରେ ରହିଯିବାକୁ । ସେଠାରେ ଅଛି ଝରନିର୍ଝରର ସୁମଧୁର ସଙ୍ଗୀତ, ଜାତିବିଜାତି ପକ୍ଷୀମାନଙ୍କର କାକଳି, ଝିଙ୍କାରିର ଯନ୍ତ୍ରସଙ୍ଗୀତ, ବଡ଼ ସାନ ଜୀବଜନ୍ତୁର ଉଲ୍ଲାସୋଦ୍ଦୀପକ କଣ୍ଠସ୍ୱର, ନିର୍ଜନ ନୀଳଧୂସର ପର୍ବତ ଫାଙ୍କ ଦେଇ ବହିଆସୁଥିବା ପବନର ସ୍ୱରସଙ୍ଗମ । ଏଇତ ସୃଷ୍ଟିର ଆଦିମ ସଙ୍ଗୀତ, ଯାହାକୁ ନେଇ କବିର କାବ୍ୟ, ଦାର୍ଶନିକର ତାତ୍ତ୍ୱିକ ଦର୍ଶନ ,ଆମର ସାରସ୍ୱତ ଯାଇଛି । ବହୁ ଉପାଦେୟ ବୃକ୍ଷଲତା, ଜୀବଜନ୍ତୁ ଆଜି ଲୁପ୍ତ ଏବଂ ଅନେକ ଲୁପ୍ତପ୍ରାୟ । ଆସାମର କାଜିରଙ୍ଗାର ଗଣ୍ଡାର, ଗିର ଅଭୟାରଣ୍ୟର ସିଂହ ଏବଂ ଆମ ଦେଶରେ ଥିବା ବ୍ୟାଘ୍ର ସୁରକ୍ଷା କେନ୍ଦ୍ର ପ୍ରତି ଯଦି ଠିକ୍ ସମୟରେ ସୁରକ୍ଷା ପ୍ରଦାନ କରାଯାଇ ନ ଥାନ୍ତା ତେବେ ସେମାନେ ପୋଥିପତ୍ରର କାଳ୍ପନିକ ବସ୍ତୁ ହୋଇ ରହିଯାଇଥାଆନ୍ତେ ।

ଆମର ସଂସ୍କୃତି ଯେଉଁ ଜୀବଜୀବନ ଉପରେ ଆଧାରିତ ଓ ପରିପୁଷ୍ଟ ତାକୁ ଧ୍ୱଂସ ଆଡ଼କୁ ଟାଣିନେବା ଅମାନୁଷିକତା ।



# ଅଣୁଜୀବର ଅଚିହ୍ନା ରୋଗ

## ଆମର ଧାରଣା ଓ କୁଷ୍ଠ

"ମାଲୋ ମାଆ ଗଣ୍ଡେ ଭିକ ଦେଲ– ଛୋଟା ଲେଙ୍ଗେଡ଼ାଟା ଭିକ ଦୁଇଟା ମାଗୁଛି ।" ଗୋଟିଏ ଭିକାରି ଏମିତି କହି ଦୁଆର ଦୁଆର ବୁଲି ଭିକ ମାଗୁଥାଏ । ଏତିକିବେଳେ ନିପୁର ଆଈ ନିପୁକୁ କହିଲେ– " ନିପୁ ଗଲୁ ଗଲୁ ସେ କୁଷ୍ଠରୋଗୀଟାକୁ ମନା କରିଦେବୁ । ଏ ଅଚିହ୍ନା ରୋଗଧରା ଭିକାରିଟା କାହିଁକି ଦୁଆରେ ଠିଆ ହୋଇଛି । ଏଇଟା ଗୋଟେ ଅସାଧ ଡିଆଁରୋଗ ।" ଆଈଙ୍କ କଥା ଶୁଣି ନିପୁ ରାଗିକରି ଭିକାରିକୁ ତଡ଼ିଦେଲା । ଏତିକିବେଳେ ନିପୁର ବଡ଼ାବାପା ଆସି କହିଲେ– "ଆରେ କ'ଣ ହେଲା– ଭିକାରିଟା ଉପରେ ବିରକ୍ତ ହେଉଛୁ କାହିଁକି ? ତାକୁ ଗଣ୍ଡେ ଭିକ ଦେଇଦେଲୁନି ।" "ନାଇଁ ବଡ଼ବାପା ! ଆଈ ସେ ଭିକାରୀକୁ କୁଷ୍ଠରୋଗୀ କହି ଘୃଣା କଲେ । କହିଲେ ଡିଆଁରୋଗ ଅଛି ତା'ଠାରେ । ତାକୁ ଜଲ୍‌ଦି ତଡ଼ିଦେବୁ ।" ବଡ଼ବାପା ଏକଥା ଶୁଣି ହସିକରି ଉଡ଼ାଇଦେଲେ ଓ କହିଲେ– " ଆରେ ଶୁଣ । କୁଷ୍ଠ ବିଷୟରେ ଆଈ ଯାହା କହିଲେ ଭୁଲ । ଠିକ୍ କଥାଟି ମନଦେଇ ଶୁଣ ।"

## କୁଷ୍ଠରୋଗ କଅଣ ?

କୁଷ୍ଠ ଏକ ସଂକ୍ରାମକ ରୋଗ । ଏହାକୁ ଇଂରାଜୀ ଭାଷାରେ ଲେପ୍ରସି (Leprosy) ବୋଲି କୁହାଯାଏ । ଏକ ପ୍ରକାର ବ୍ୟାକ୍‌ଟେରିଆ (Bacteria) ବା ବୀଜାଣୁ ଏ ରୋଗ ସୃଷ୍ଟି କରିଥାଏ । ବୈଜ୍ଞାନିକ ଭାଷାରେ ଏ ବ୍ୟାକ୍‌ଟେରିଆ ନାମ ହେଉଛି ମାଇକୋବ୍ୟାକ୍‌ଟେରିୟମ୍ ଲେପ୍ରେ (*Mycobacterium leprae*) । ଏହା ଖାଲି ଆଖିକୁ ଦେଖାଯାଏ ନାହିଁ । ଅଣୁବୀକ୍ଷଣ ଯନ୍ତ୍ରରେ ଦେଖିଲେ ଖୁବ୍ ଛୋଟ ବାଡ଼ିପରି ଦେଖାଯାଏ । ଏ ବ୍ୟାକ୍‌ଟେରିଆ ପ୍ରଥମେ ଡଃ ଜି . ଏ . ହାନ୍‌ସେନ୍ (G.A.Hansen) ନାମକ ଜଣେ ବୈଜ୍ଞାନିକ ଚିହ୍ନିପାରିଥିଲେ ୧୮୭୩ ମସିହାରେ । ସେଥିପାଇଁ କୁଷ୍ଠକୁ "ହାନ୍‌ସେନ୍‌ଙ୍କ ରୋଗ"(Hansen's Disease) ବୋଲି କୁହାଯାଏ ।

## କୁଷ୍ଠରୋଗର ପ୍ରକାର ଓ କାରଣ

ଏ ବୀଜାଣୁ ବାୟୁରେ ଥାଆନ୍ତି । ଏମାନେ ପ୍ରଶ୍ୱାସରେ ବା ଖାଇବା ସମୟରେ

ମଣିଷ ଦେହ ଭିତରକୁ ଆସନ୍ତି । ଠିକ୍ ଯକ୍ଷ୍ମା ଓ ଇନ୍‌ଫ୍ଲୁଏନ୍‌ଜା ରୋଗ ଜୀବାଣୁ ଦେହକୁ ଆସିବା ପରି କୁଷ୍ଠ ଜୀବାଣୁ ଆସନ୍ତି । କିନ୍ତୁ କୁଷ୍ଠରୋଗୀକୁ ଛୁଇଁଲେ ଏ ରୋଗ ହୁଏ ନାହିଁ । ଏହା ଏକ ଅନ୍ଧବିଶ୍ୱାସ ଅଟେ । ଏହି ରୋଗ ମଧ୍ୟ ସମସ୍ତଙ୍କୁ ହୁଏ ନାହିଁ । ଏ ରୋଗର ବୀଜାଣୁ ସମସ୍ତଙ୍କ ଦେହରେ ଥାଇପାରନ୍ତି । ରୋଗ ହେବା ବା ନ ହେବା ନିର୍ଭର କରେ ଦେହର ପ୍ରାକୃତିକ "ରୋଗ ପ୍ରତିରୋଧକ ଶକ୍ତି" (Immunity) ଉପରେ । ସଂକ୍ରମଣ ଅନୁଯାୟୀ ଏ ରୋଗ ଦୁଇପ୍ରକାର । ଯାହାର ପ୍ରତିରୋଧକ ଶକ୍ତି ବହୁତ ଅଧିକ, କୁଷ୍ଠରୋଗ ବୀଜାଣୁର ସେଠାରେ ବିକାଶ ଘଟେ ନାହିଁ । ପ୍ରତିରୋଧକ ଶକ୍ତି ନ ଥିବା ମଣିଷ ଦେହରେ ଏ ବୀଜାଣୁ ଭଲଭାବରେ ବଢ଼ିପାରେ । ଏହାର ସଂଖ୍ୟା ଖୁସିରେ ବଢ଼ିଯାଏ ଦେହ ଉପର ଚମରେ ଓ ନାକ ଭିତରେ ଥିବା ପତଳା ଚମରେ । ଏମିତି ରୋଗକୁ କୁହାଯାଏ "ବହୁ ବୀଜାଣୁ କୁଷ୍ଠ" (Multibacillary leprosy) । ରୋଗ ପ୍ରତିରୋଧକ ଶକ୍ତି କମ୍‌ଥିବା ମଣିଷ ଦେହରେ ବି ଏ ବୀଜାଣୁ ବଢ଼ିଥାଏ । ମାତ୍ର ଏତେ ଅଧିକ ସଂଖ୍ୟାରେ ବଢ଼ିପାରେ ନାହିଁ । ଏଣୁ ଏ ରୋଗ ହେଉଛି "ସ୍ୱଳ୍ପବୀଜାଣୁ କୁଷ୍ଠ" (Paucibacillary leprosy) ।

## ରୋଗ ଆକ୍ରମଣର ପ୍ରଭାବ

ଏ ବୀଜାଣୁ ଦେହର ଥଣ୍ଡା ଅଂଶ, ଚମ, ମୁହଁ, ହାତ ଓ ଗୋଡ଼ର ସ୍ନାୟୁଗୁଡ଼ିକୁ ସଂକ୍ରମିତ କରେ । ଦେହର ଥଣ୍ଡା ଅଂଶଗୁଡ଼ିକ ହେଉଛି ଆଖିତନ୍ତୁ ଓ ଅଣ୍ଡକୋଷ । ଏ ରୋଗରେ ସବୁଠାରୁ ବେଶି କ୍ଷତି ହୋଇଥାଏ ସ୍ନାୟୁଗୁଡ଼ିକରେ । ତେଣୁ ରୋଗୀର ସ୍ନାୟୁ କାର୍ଯ୍ୟ କରେ ନାହିଁ । ଦୁର୍ବଳ ହୋଇଯାଏ ଓ ଶେଷରେ ପକ୍ଷାଘାତ ଘଟେ । ବିଶେଷ କରି ସ୍ନାୟୁ କାର୍ଯ୍ୟ ନ କରିବାରୁ ରୋଗୀ ଥଣ୍ଡା ଓ ଗରମ ଇତ୍ୟାଦି ଅନୁଭବ କରିପାରେ ନାହିଁ । ସ୍ନାୟୁ କାର୍ଯ୍ୟ ନ କରିବାରୁ ମୁହଁ, ଗୋଡ଼ ଆଙ୍ଗୁଳି, ହାତ ଆଙ୍ଗୁଳି, ନାକ, କାନ ଓ ଆଖି ଇତ୍ୟାଦି ଅଙ୍ଗଗୁଡ଼ିକ ବିକୃତ ଦେଖାଯାଏ । "ବହୁବୀଜାଣୁ" କୁଷ୍ଠରୋଗୀ ଦେହରେ ସାଧାରଣତଃ ଛାପ ଛାପ ଚିହ୍ନ ଦେଖାଯାଏ ଓ ଗଣ୍ଠିପରି ଫୁଲାଦାଗ ଜଣାପଡ଼େ । ଅନୁଭବ ଶକ୍ତି ନ ରହିବା ଦ୍ୱାରା ଧୀରେ ଧୀରେ ହାତଗୋଡ଼ ଓ ଆଙ୍ଗୁଳିଗୁଡ଼ିକର କ୍ଷତି ଘଟେ ।

## କୁଷ୍ଠରୋଗର ଚିକିତ୍ସା

କୁଷ୍ଠ ଛୁଆଁରୋଗ ବା ଡିଆଁରୋଗ ନୁହେଁ । ଏହା ଏକ ଭୁଲ୍‌କଥା । ରୋଗ ଆରମ୍ଭରେ ଚିକିତ୍ସା କଲେ ଏହା ସଂପୂର୍ଣ୍ଣ ଭଲ ହୋଇଯାଏ । ତିନିପ୍ରକାର ଔଷଧର ମିଶ୍ରଣ ଏକାଠି ଖାଇଲେ ଛଅମାସରୁ ଦୁଇବର୍ଷ ଭିତରେ ରୋଗ ଛାଡ଼ିଯାଏ । ଏ ତିନିପ୍ରକାର

ଔଷଧ ହେଲା ରିଫାମ୍ପିସିନ୍, ଡାପ୍‌ସନ୍ ଓ କ୍ଲୋଫାଜିମିନ୍ । ଏହାକୁ ''ବହୁ ଔଷଧ ଚିକିତ୍ସା'' (Multi Drug Therapy ବା MDT) ବୋଲି କୁହାଯାଏ । ଏ ଔଷଧ ଗୁଡ଼ିକ କୁଷ୍ଠ ବୀଜାଣୁଗୁଡ଼ିକୁ ମାରି ପକାଏ ଓ ସ୍ନାୟୁକୁ କ୍ଷତି କରିବାରୁ ରକ୍ଷା କରେ । ଆରମ୍ଭରୁ ଚିକିତ୍ସା କଲେ ରୋଗୀ ବିକଳାଙ୍ଗ ହୁଏ ନାହିଁ ।

ପ୍ରଥମରୁ ରୋଗୀର ଚିକିତ୍ସା ଆରମ୍ଭ ହେଲେ ତାହା ଆଉ ସଂକ୍ରମିତ ଅବସ୍ଥାରେ ରୁହେ ନାହିଁ । ତେଣୁ ତାକୁ ଅଲଗା ରଖିବା ଦରକାର ନାହିଁ । ଏ ରୋଗ ପାଇଁ ଚିକିତ୍ସା ଘରେ କରାଯାଇପାରେ । ସେଥିରେ କିଛି ଅସୁବିଧା ନାହିଁ । କିନ୍ତୁ ଭୁଲ କଥା, କୁସଂସ୍କାର ବା ଅନ୍ଧବିଶ୍ୱାସ ଯୋଗୁଁ ଏ ରୋଗ ବଢ଼ିଯାଏ । ସମାଜରେ ରୋଗୀକୁ ଘୃଣା କରାଯାଏ ବୋଲି ସେ ରୋଗକୁ ଲୁଚାଏ ଓ ଏହା ବଢ଼ିଯାଏ । ତେଣୁ ଆରୋଗ୍ୟ ହେବା କଷ୍ଟ ହୁଏ । ପ୍ରାଥମିକ ଚିକିତ୍ସାଦ୍ୱାରା ଏହା ସଂପୂର୍ଣ୍ଣ ଭଲ ହୋଇଯାଏ । ସମୟ ଥିଲା ବସନ୍ତ ରୋଗ ଭଲ ହୋଇପାରୁ ନ ଥିଲା ଓ ଲୋକ ଏହାକୁ ଠାକୁରାଣୀ ବୋଲି ପୂଜା କରୁଥିଲେ । କିନ୍ତୁ ବର୍ତ୍ତମାନ ତାହା ଆଉ ନାହିଁ । ଠିକ୍ ସେପରି ଆମେ ସମସ୍ତେ ସଚେତନ ହେଲେ ଓ ଘୃଣା ନ କରି ସେମାନଙ୍କୁ ବୁଝାଇଲେ ଏ ରୋଗ ସଂପୂର୍ଣ୍ଣ ଦୂର ହୋଇଯିବ । ଏହା ଆଉ ବଡ଼ରୋଗ ବା ସାଂଘାତିକ ରୋଗ ବୋଲି କହିବା ଠିକ୍ ହେବ ନାହିଁ । ରୋଗୀ ଓ ସମସ୍ତଙ୍କ ମନରେ ଠିକ୍ ଧାରଣା ସୃଷ୍ଟି କରିବା ପାଇଁ ପ୍ରତିବର୍ଷ ଜାନୁଆରୀ ମାସ ୨୩ ତାରିଖକୁ ''କୁଷ୍ଠ ନିରାକରଣ ଦିବସ''(Leprosy Eradication Day) ରୂପେ ପାଳନ କରାଯାଉଛି ।

ଏତେ ସବୁ ବୁଝାଇ କହିବାପରେ ବଡ଼ବାପା ନିପୁକୁ ପଚାରିଲେ– ''ବୁଝିଲୁ ତ କୁଷ୍ଠ କ'ଣ ? ଏ ଗୋଟିଏ ସାଧାରଣ ରୋଗ । ଏହା ସଂପୂର୍ଣ୍ଣ ଭଲ ହୋଇଯାଏ । ଏହା ଛୁଆଁରୋଗ ନୁହେଁ । ଏ ରୋଗୀକୁ ଘୃଣା କରିବା ଠିକ୍ ନୁହେଁ । ତୁ ଆଉ ଏପରି ଘୃଣା କରିବୁନି କି ଅନ୍ଧବିଶ୍ୱାସ ମନରେ ରଖିବୁନି । ଏ କଥା ତୋ ସାଙ୍ଗମାନଙ୍କୁ ବି ବୁଝାଇ ଦେବୁ ।''



# ଚଳଚଞ୍ଚଳ ସେ ଚିତ୍ରା ଚିତଲ

## ଏକ ଛାପିଛାପିକା ପ୍ରାଣୀ

ସମ୍ବର, ବାରଶିଙ୍ଗା, କୁଟୁରା, କସ୍ତୁରୀମୃଗ, ଚିତଲ ପ୍ରଭୃତି ହରିଣ ପରିବାରର ରୋମନ୍ଥନକାରୀ ତୃଣଭୋଜୀ ପ୍ରାଣୀ । ଏ ସମସ୍ତଙ୍କ ମଧ୍ୟରେ ଚିତଲ ହେଉଛି ସର୍ବାପେକ୍ଷା ସୁନ୍ଦର ଓ ଆକର୍ଷଣୀୟ । ଏମାନେ ଭାରତର ସାଧାରଣ ହରିଣ । ବୈଜ୍ଞାନିକ ଭାଷାରେ ଏମାନଙ୍କୁ ଏକ୍ସିସ ଏକ୍ସିସ *(Axis axis)* ବୋଲି ଡକାଯାଏ । ଓଡ଼ିଆରେ କିନ୍ତୁ ଏମାନେ ଚିତ୍ରା ବା ଝିଆଦ ନାମରେ ପରିଚିତ । ହିମାଳୟର ପାଦଦେଶଠାରୁ ଆରମ୍ଭ କରି କନ୍ୟାକୁମାରୀ ଯାଏ ବ୍ୟାପି ରହିଥିବା ଅଞ୍ଚଳରେ ଚିତଲ ଜାତୀୟ ପ୍ରାଣୀ ଦୃଷ୍ଟିଗୋଚର ହୁଅନ୍ତି । କିନ୍ତୁ ଆସାମ, ପଞ୍ଜାବ ଓ ରାଜସ୍ଥାନରେ ଏମାନଙ୍କୁ ଦେଖିବାକୁ ମିଳେ ନାହିଁ । ଭାରତର ସମତଳ ଅଞ୍ଚଳ ଏବଂ ୧୨୦୦ ମିଟର ଉଚ୍ଚାଯାଏ ରହିଥିବା ପାର୍ବତ୍ୟ ଭୂମି ଏମାନଙ୍କର ପରିସ୍ଥାନ । ଭାରତ ବାହାରେ ଶ୍ରୀଲଙ୍କା ଓ ବଙ୍ଗୋପସାଗରର ପୂର୍ବରେ ଥିବା ଦେଶ ସମୂହରେ ବି ଚିତଲ ଦେଖାଯାଆନ୍ତି ।



ଚିତଲ

## ଚିତଲର ଅବସ୍ଥିତି ଓ ଆକାର

ପ୍ରାପ୍ତବୟସ୍କ ଗୋଟିଏ ଅଣ୍ଡିରା ଚିତଲ ୭୫ ରୁ ୯୦ ସେ.ମି. ପର୍ଯ୍ୟନ୍ତ ଉଚ୍ଚା ଓ ପ୍ରାୟ ୮୬ କି.ଗ୍ରା. ଯାଏ ଓଜନିଆ ହୁଏ । ମାଈ ଚିତଲ ଅପେକ୍ଷାକୃତ ଅଳ୍ପ ଉଚ୍ଚା ଓ କମ୍

ଓଜନର ହୋଇଥାଏ । ହିମାଳୟ ପାଦଦେଶର ଅରଣ୍ୟାଞ୍ଚଳରେ ବସବାସ କରୁଥିବା ଚିତଳମାନେ ସବୁଠାରୁ ବଡ଼ ଏବଂ ମନୋରମ । ଦକ୍ଷିଣଭାରତୀୟ ଚିତଳମାନେ ତୁଳନାତ୍ମକଭାବେ ଛୋଟ । ଅଣ୍ଡିରା ଚିତଳର ମୁଣ୍ଡ ଉପରେ ଶିଙ୍ଗ ଥାଏ । ତାହା ଅସ୍ଥି ନିର୍ମିତ ଓ ନିଦା । ସେଥିରୁ ତିନୋଟି ଶାଖା ବାହାରିଥାଏ । ପ୍ରତିବର୍ଷ ସେହି ଶିଙ୍ଗ ଝଡ଼ିପଡ଼େ ଏବଂ ଝଡ଼ିବା ସ୍ଥାନରୁ ନୂଆ ଶିଙ୍ଗ ଉଠେ । ସାଧାରଣତଃ ଅଗଷ୍ଟ କିମ୍ବା ସେପ୍ଟେମ୍ବର ମାସରେ ଶିଙ୍ଗ ଝଡ଼ିଥାଏ ।

ମାଈ ଓ ଅଣ୍ଡିରା ଉଭୟ ପ୍ରକାର ଚିତଳଙ୍କର ଦେହର ବର୍ଣ୍ଣ ବାଦାମୀ । ସେଥିରେ ଧଳା ରଙ୍ଗର ଟୋପା ଟୋପା ଉଜ୍ଜ୍ୱଳ ଚିହ୍ନ ପଡ଼ିଥାଏ । ଚିତଳର କାନର ବାହାରପାଖ ବାଦାମୀ ଏବଂ ଭିତର ପାଖ ଧଳା । ତା' ଛଡ଼ା ଏହାର ଗଳା ଏବଂ ତଳପେଟର ବର୍ଣ୍ଣ ମଧ ଧଳା, ପିଠି ଉପରେ କଳାରଙ୍ଗର ଗାର ପଡ଼ିଥାଏ, ଚିତଳର ସୌନ୍ଦର୍ଯ୍ୟ ଏହି ପ୍ରକାର ଚିତ୍ରିତ ଲୋମଶ ଚର୍ମଯୋଗୁଁ ସମ୍ଭବ ହୋଇଥାଏ । ପୁଣି ଏହି ଚିତ୍ରିତ ରୂପ ଏହାକୁ ଗଛଲତା ଉହାଡ଼ରେ ଲୁଚିବାରେ ମଧ ସାହାଯ୍ୟ କରେ । ତେଣୁ ପ୍ରାକୃତିକ ପରିବେଶରେ ଥିଲାବେଳେ ଚିତଳକୁ କେହି ସହଜରେ ଠାବ କରିପାରନ୍ତି ନାହିଁ । ଏହି ହରିଣର ଗୋଡ଼ଗୁଡ଼ିକ ସରୁ, ବେକ ଲମ୍ବା ଏବଂ ଲାଞ୍ଜ ଛୋଟ । ଗୋଡ଼ର ଖୁରା ଦୁଇଫାଳିଆ ଓ ଗୋଜିଆ ।

## ଚିତଳର ଘର ଓ ଖାଦ୍ୟ

ସାମାଜିକ ଜନ୍ତୁ ହୋଇଥିବାରୁ ଚିତଳମାନେ ବୃହତ୍ ଦଳବାନ୍ଧି ରହନ୍ତି । ଗୋଟିଏ ଗୋଟିଏ ଦଳରେ ୧୦ ରୁ ୩୦ଟି ଯାଏ ପ୍ରାଣୀ ଥାଆନ୍ତି । ଏମାନଙ୍କର ଦଳ ସ୍ଥାୟୀ ନୁହେଁ । ତାହା ବଦଳୁଥାଏ । ଏପରିକି ପ୍ରତିଦିନ ମଧ ବଦଳେ । କେତେକ ଚିତଳ ଦଳ ଭାଙ୍ଗି ଅନ୍ୟତ୍ର ଯାଇ ନୂଆଦଳ ଗଠନ କରନ୍ତି । ସେଥିରେ ଅନ୍ୟମାନେ ଆସି ଯୋଗ ଦିଅନ୍ତି । ଚିତଳମାନେ ଘଞ୍ଚଜଙ୍ଗଲ, ଚିରହରିତ୍ ଅରଣ୍ୟ ତଥା ବୃଷ୍ଟିବହୁଳ ଅରଣ୍ୟଠାରୁ ଦୂରେଇ ରହନ୍ତି । ଶୁଷ୍କ ଅଞ୍ଚଳରେ ମଧ ବାସ କରନ୍ତି ନାହିଁ । କାରଣ ଏମାନେ ତୃଷାର୍ତ୍ତ ପ୍ରାଣୀ । ବେଶି ଜଳ ଆବଶ୍ୟକ କରିଥାଆନ୍ତି । ସାଧାରଣତଃ ଏମାନେ ସମତଳ ଅଞ୍ଚଳର ତୃଣଭୂମି ଓ ଜଙ୍ଗଲର ଝରଣା କୂଳରେ ବିଚରଣ କରନ୍ତି । ଛୋଟ ଛୋଟ କଅଁଳିଆ ଘାସ ଏମାନଙ୍କର ପ୍ରିୟ ଖାଦ୍ୟ । ସମ୍ବର ଜାତୀୟ ହରିଣଙ୍କ ଭଳି ମୋଟା ଓ ଟାଣ ଘାସ ଖାଇବାକୁ ପସନ୍ଦ କରନ୍ତି ନାହିଁ । ପତ୍ରଝଡ଼ା ଜଙ୍ଗଲରେ ଥିଲେ ଏମାନେ ଘାସ ପରିବର୍ତ୍ତେ ଡାଳପତ୍ର, ଗୁଳ୍ମ, ଫଳ ଓ କୋଳି ପ୍ରଭୃତି ଭକ୍ଷଣ କରନ୍ତି ।

ଏମାନଙ୍କର ଖାଦ୍ୟ ଗ୍ରହଣ କରିବା ସମୟ ହେଉଛି ସକାଳ ଓ ସନ୍ଧ୍ୟା । ଅନ୍ୟ ସମୟରେ ଏମାନେ ବୃକ୍ଷ ତଳେ ବିଶ୍ରାମ ନିଅନ୍ତି । ଖୋଲା ସ୍ଥାନରେ ମଣିଷର ଗତାଗତ ଦେଖି ଏମାନେ ରାତ୍ରିରେ ମଧ ଖାଦ୍ୟ ଚରିବାକୁ ବାହାରନ୍ତି । କିନ୍ତୁ ସମ୍ବରମାନଙ୍କ ଅପେକ୍ଷା କମ୍ ରାତ୍ରିଚର ହୋଇଥାଆନ୍ତି । ବେଳେବେଳେ ଏମାନେ ଶସ୍ୟକ୍ଷେତ୍ର ଭିତରକୁ ପ୍ରବେଶ କରି ଫସଲ ମଧ ଖାଇଯାଆନ୍ତି ।


ହରିଣର ଶିଙ୍ଗ

## ଚିତଲର ବ୍ୟବହାର

ନିରାପଦ ସମୟ ଦେଖି ଦଳର ସମସ୍ତ ଚିତଲ ଗୋଟିଏ ସ୍ଥାନରେ ଜମା ହୁଅନ୍ତି । ସେତେବେଳେ ଅଣ୍ଡିରା ଚିତଳମାନଙ୍କର ଶିଙ୍ଗ ସବୁ ଉପରକୁ ଉଠି ରହିଥାଏ । ଫଳରେ ଶିଙ୍ଗର ଗୋଟିଏ ଜଙ୍ଗଲ ସୃଷ୍ଟି ହେଲାଭଳି ପ୍ରତୀୟମାନ ହୁଏ । ଏମାନେ ଗୋଟିଏ ସ୍ଥାନରେ ମଳତ୍ୟାଗ କରନ୍ତି ନାହିଁ । ଛେଳିମାନଙ୍କ ସଦୃଶ ଏମାନଙ୍କ ମଳ ଗୋଟି ଗୋଟି ହୋଇ ପଡ଼ି ପଡ଼ି ଯାଏ । କାଦୁଅରେ ଗଡ଼େଇ ହେବାକୁ ଏମାନେ ଭଲ ପାଆନ୍ତି ନାହିଁ । ସମ୍ବର ଜାତୀୟ ହରିଣମାନେ ଏହିପରି କରିଥାଆନ୍ତି । ସୁରକ୍ଷା ଓ ଖାଦ୍ୟ ପାଇବା ପାଇଁ ଏମାନେ କେତେକ ଜାତିର ବନ୍ୟପ୍ରାଣୀ ଦଳରେ ଚରୁଥିବାର ଦେଖାଯାଏ । ବୃକ୍ଷବାସୀ ମାଙ୍କଡ଼ ଓ ହନୁମାନଙ୍କ ସହିତ ଏମାନେ ସମ୍ପର୍କ ସ୍ଥାପନ କରିଥାଆନ୍ତି । ସେମାନେ ଯେଉଁ ବୃକ୍ଷ ଉପରେ ଥାଆନ୍ତି, ତା'ରି ତଳେ ଚିତଳମାନେ ନିରାପଦ ମଣି ଆଶ୍ରୟ ନିଅନ୍ତି । କାରଣ ଶତ୍ରୁପ୍ରାଣୀର ଆଗମନ ସୂଚନା ଏମାନେ ସେମାନଙ୍କଠାରୁ ପାଇଯାଆନ୍ତି । ପୁଣି ଫଳନ୍ତି ଗଛରୁ କୋଳି ବା ଫଳ ସେମାନେ ଝାଡ଼ି ତଳେ ପକାନ୍ତି । ସେଗୁଡ଼ିକୁ ଏମାନେ ମନ ଖୁସିରେ ଭକ୍ଷଣ କରନ୍ତି । ପରିଣାମରେ ଏମାନଙ୍କୁ ଖାଦ୍ୟ ଖୋଜିବାକୁ ପଡ଼େ ନାହିଁ ।

## ଚିତଲର୍ ପ୍ରଜନନ ଓ ଛୁଆ

ଚିତଳମାନଙ୍କର ସନ୍ତାନ ଉତ୍ପାଦିକା କ୍ଷମତା ବେଶି । ତାହା କିନ୍ତୁ ନିରାପତ୍ତା ଓ ଖାଦ୍ୟର ପ୍ରାଚୁର୍ଯ୍ୟ ଉପରେ ନିର୍ଭରଶୀଳ । ଏମାନଙ୍କର ନିର୍ଦ୍ଦିଷ୍ଟ ଓ ସୀମିତ ପ୍ରଜନନ କାଳ ନ ଥାଏ । ଯାହାକି ଅନ୍ୟାନ୍ୟ ତୃଣଭୋଜୀ ପ୍ରାଣୀମାନଙ୍କଠାରେ ରହିଥିବାର ଦେଖାଯାଏ । ଏହି କାରଣ ଯୋଗୁଁ ଚିତଳ ଦଳରେ ବର୍ଷର ସମସ୍ତ ମାସରେ ଛୋଟ ଛୁଆଠାରୁ ଆରମ୍ଭ କରି ବୃଦ୍ଧ ପର୍ଯ୍ୟନ୍ତ ସବୁ ବୟସର ପ୍ରାଣୀ ଥିବାର ଦେଖାଯାଏ । ଏହି ଚିତଳ ଜାତୀୟ ହରିଣମାନଙ୍କର ଗୋଟିଏ ବିଶେଷତ୍ୱ । ମାଈ ଚିତଳ ଥରକେ ଦୁଇଟି ଛୁଆ ଜନ୍ମଦିଏ । ନବଜାତ ଛୁଆର ରୂପ ହିଁ ବୟସ୍କ ଚିତଳ ଭଳି ହୋଇଥାଏ ।

## ଚିତଳର ରୋଗ ଓ ଶତ୍ରୁ

ଏମାନଙ୍କର ଶରୀର ଖୁବ୍ ଦୃଢ଼ ଓ ହୃଷ୍ଟପୁଷ୍ଟ । ବିଭିନ୍ନ ପ୍ରକାର ସଂକ୍ରାମକ ରୋଗ ଯଥା - ଛେରାବସନ୍ତ, କ୍ଷୁରା ଓ ମୁଖରୋଗ ଇତ୍ୟାଦି ଦ୍ୱାରା ଆକ୍ରାନ୍ତ ହୁଅନ୍ତି ନାହିଁ । କିନ୍ତୁ ଜଙ୍ଗଲର ଅନ୍ୟ ତୃଣାଚାରୀ ଜୀବମାନେ ଏସବୁ ରୋଗକୁ ପ୍ରତିରୋଧ କରିପାରନ୍ତି ନାହିଁ । ଏମାନେ ଭାରି ଡରକା ଜନ୍ତୁ । ମଣିଷର ଉପସ୍ଥିତି ଓ ପ୍ରବେଶକୁ ଜାଣିପାରି ସତର୍କ ହୋଇଯାଆନ୍ତି । ବାଘ, ଚିତାବାଘ ଓ ଜଙ୍ଗଲୀ କୁକୁର ଏମାନଙ୍କର ପ୍ରଧାନ ପ୍ରାକୃତିକ ଶତ୍ରୁ । ଚିତଳ ବଂଶକୁ ସେମାନେ ନିୟନ୍ତ୍ରଣ କରନ୍ତି । ମାତ୍ର ଚିତଳମାନଙ୍କର ସଂଖ୍ୟା ନିୟନ୍ତ୍ରଣ କରିବାରେ ବେଶି ଦକ୍ଷ ଓ ସଫଳ ପ୍ରାଣୀ ହେଉଛନ୍ତି ଜଙ୍ଗଲୀ କୁକୁର । ସେମାନଙ୍କୁ ବାଦଦେଲେ ଅଜଗର ଭଳି ବୃହତ୍ ସାପମାନଙ୍କ କବଳରେ ପଡ଼ି ଏହି ହରିଣମାନେ ମୃତ୍ୟୁବରଣ ମଧ କରୁଥିବାର ଜଣାଯାଇଛି । ଶତ୍ରୁ ପ୍ରାଣୀର ସମ୍ମୁଖୀନ ହୋଇଗଲେ ଏମାନେ ଦ୍ରୁତବେଗରେ ଦୌଡ଼ି ତା'ଠାରୁ ରକ୍ଷା ପାଇବାକୁ ଚେଷ୍ଟା କରନ୍ତି । ଦୌଡ଼ିବା ହେଉଛି ଏହି ନିରୀହ ଜନ୍ତୁମାନଙ୍କର ମୁଖ୍ୟ ଅସ୍ତ୍ର ।

## ଏକ ଉପକାରୀ ପ୍ରାଣୀ

ଚିତଳମାନଙ୍କର ଆଖି ଖୁବ୍ ସୁନ୍ଦର । ଚାହାଣୀ ଚଞ୍ଚଳ । ତେଣୁ ସୁନ୍ଦରୀମାନଙ୍କର ଆଖିକୁ ଏହି ଚିତ୍ରିତ ହରିଣମାନଙ୍କ ଆଖି ସହିତ ତୁଳନା କରାଯାଇଥାଏ ଏବଂ ସେମାନେ "ମୃଗନୟନା" ନାମରେ ଅଭିହିତ ହୋଇଥାଆନ୍ତି । ଚିତଳମାନଙ୍କର ବାସସ୍ଥଳୀ ଭୂମିର ଉର୍ବରତାର ସୂଚନା ଦିଏ ବୋଲି ଲୋକମାନଙ୍କର ବିଶ୍ୱାସ । ଏମାନଙ୍କର ମାଂସ ସୁସ୍ୱାଦୁ । ତାହା ଖାଦ୍ୟ ରୂପେ ବ୍ୟବହୃତ ହୋଇ ବହୁ ପୁରାତନ କାଳରୁ ଚଳିଆସୁଅଛି । ଚର୍ମ ଓ ଶିଙ୍ଗ ବିଭିନ୍ନ କାର୍ଯ୍ୟରେ ଉପଯୋଗ ହୁଏ । ସାଧୁସନ୍ଥ ତଥା ସନ୍ନ୍ୟାସୀମାନେ ଲୋମଶ ଚିତଳ ଚମଡ଼ାକୁ ଆସନ ଓ ଶଯ୍ୟା ରୂପେ ବ୍ୟବହାର କରନ୍ତି । ଶାଖାଯୁକ୍ତ ଶିଙ୍ଗ ଗୃହ ସଜାଇବା ଦ୍ରବ୍ୟ ଭାବେ ଏବଂ ଲୋମଶ ଚମଡ଼ା ଜୋତା ଓ ପେଡ଼ି ଆଦି ତିଆରିରେ ବ୍ୟବହୃତ ହୁଏ । ମାଂସ ଓ ଚମଡ଼ା ନିମନ୍ତେ ଏମାନଙ୍କୁ ଲୋକେ ଶିକାର କରନ୍ତି । ଏହା ଫଳରେ ଜଙ୍ଗଲର ଶୋଭାବର୍ଦ୍ଧକ ଏହି ମନୋରମ ହରିଣମାନଙ୍କର ସଂଖ୍ୟା ପ୍ରାକୃତିକ ପରିସ୍ଥାନରୁ କ୍ରମେ କ୍ରମେ ହ୍ରାସ ପାଇଯାଉଛି । ଖୁସିର କଥା ଯେ ସଂରକ୍ଷଣ ପାଇଁ ତଥା ମନୋରଞ୍ଜନ ନିମନ୍ତେ ଏମାନଙ୍କୁ ରଖି ମୃଗବିହାର ଅନେକ ସ୍ଥାନରେ ପ୍ରତିଷ୍ଠା କରାଯାଉଛି । କଟକ, ତପ୍ତପାଣି, କପିଳାସ ଓ ଭୁବନେଶ୍ୱରର ରାଜଭବନ ମୃଗବିହାର ଉଲ୍ଲେଖନୀୟ ।



# ଜଳେ ନାହିଁ ସେ ଜୁଳୁଜୁଳିଆ

## ଜୀବ ଦେହରୁ ଆଲୁଅ

''ନିଆଁ ନ ଜଳି ଆଲୁଅ''— ଶୁଣିଲେ ହସ ଲାଗିବ ନିଶ୍ଚୟ । କାରଣ ଆଲୋକ ହିଁ ଦୃଶ୍ୟର କାରଣ (Light is the cause of sight) ! ଆମ ଜୀବଜଗତରେ ଏପରି ଜୀବ ଅଛନ୍ତି ଯେଉଁମାନେ ନିଜ ଦେହରୁ ଆଲୋକ ବାହାର କରିଥାଆନ୍ତି । ରାତ୍ରିରେ ଦେଖିଲେ ଜଣାଯାଏ କଅଣ ଗୋଟିଏ ଦପ୍ ଦପ୍ ହୋଇ ଜଳିଯାଉଛି । ଆଉ କେତେକ ମଧ ଭୂତ, ପ୍ରେତ ବା ଡାହାଣୀ ଆଲୁଅ ବୋଲି ଭାବିଥାଆନ୍ତି । କିନ୍ତୁ ସେହି ପୋକଟି ହେଉଛି ଅତି ଜଣାଶୁଣା, ନାଁ ତାର ଜୁଳୁଜୁଳିଆ ପୋକ (Glow worm) । କେବଳ ଏ ପୋକଟି କାହିଁକି ଆହୁରି ଅନେକ ଜୀବ ଦେହରୁ ଆଲୋକ ବାହାରିବାର ଦେଖାଯାଇଥାଏ । କେତେକ ବ୍ୟାକ୍‌ଟେରିଆ, ସ୍ପଞ୍ଜ, ଜେଲିମାଛ, ଭଙ୍ଗୁରଶୀଳ ତାରା (Brittle star), କେତେକ ଶାମୁକା ଓ ମାଛ ଆଦି ଏ ଶ୍ରେଣୀର ଅନ୍ତର୍ଭୁକ୍ତ । ପ୍ରତ୍ୟକ୍ଷ ଭାବରେ ଦେଖିବାକୁ ଗଲେ କେତେକ ବଡ଼ ବଡ଼ କାତିଥିବା ସାମୁଦ୍ରିକ ମାଛକୁ ଗାଢ଼ ଅନ୍ଧକାରରେ ରଖିଦେଲେ ଦେଖାଯିବ ଯେ ତା ଦେହରୁ ଖୁବ୍ ଚକ୍ ଚକ୍ ଶୁଭ୍ର ଆଲୋକ ନିସ୍ରୁତ ହେଉଛି । ଏହି ଜୀବମାନଙ୍କ ଦେହରୁ ବାହାରୁଥିବା ଆଲୋକ ଅବଶ୍ୟ ପ୍ରକୃତ ଆଲୋକ ବା ଜଳିବା ଅର୍ଥରେ ଆଲୋକ ନୁହେଁ । ମାତ୍ର ଯେଉଁ ପ୍ରାଣୀ ବା ଜୀବମାନେ ନିଜେ ଆଲୋକ ବାହାର କରିଥାଆନ୍ତି ସେମାନଙ୍କ ଆଲୋକକୁ ଜୈବାଲୋକ (Bioluminescence ବା Phosphorescence) ବୋଲି କୁହାଯାଇଥାଏ । ଏହି ଜୈବାଲୋକ ପ୍ରଥମେ ନାବିକମାନେ ସମୁଦ୍ରରେ ରାତ୍ରିରେ ଯାତ୍ରା କରିବା ସମୟରେ ନୀଳଜଳରେ ଲକ୍ଷ୍ୟ କରିଥିଲେ । ଏଥିରୁ ସେମାନେ ଅନୁଭବ କରିଥିଲେ କଣ ଗୁଡ଼ିଏ ଜଳରେ ଚକ୍ ଚକ୍ କରି ଆଲୋକ ପ୍ରଦାନ କରୁଛି, ନିଶ୍ଚୟ କିଛି ହୋଇଥିବ । ସୁତରାଂ ଦେଖାଯାଉ ଏ ଆଲୋକ କଣ ଓ କିପରି ସୃଷ୍ଟି ହୋଇଥାଏ ?

## ଆଲୁଅ ବାହାର କରୁଥିବା ପ୍ରାଣୀ

କହିବା ବାହୁଲ୍ୟ ଯେ ଉପରୋକ୍ତ ପ୍ରାଣୀମାନଙ୍କ ବ୍ୟତୀତ କେତେକ ଛତୁ ଶ୍ରେଣୀୟ ଉଦ୍ଭିଦ ରହିଛି, ଯେଉଁମାନେ କି ରାତ୍ରିରେ ଚକ୍ ଚକ୍ କରିଥାଆନ୍ତି । ସେମାନଙ୍କୁ ଚକ୍‌ଚକ୍ କବକ (Luminescent fungi) ବୋଲି କୁହାଯାଏ । ରାତ୍ରିରେ ପେଚା

ଯେତେବେଳେ ଏହି କବକ (Fungi) ସଂସ୍ପର୍ଶରେ ଆସିଥାଏ, ଏଗୁଡ଼ିକ ପରରେ ଲାଗି ଚକ୍ ଚକ୍ କରିଥାଏ । ଅବଶ୍ୟ ଏହା ଏକ ଭିନ୍ନ ଆଲୋକ ଉତ୍ସ । କିନ୍ତୁ ଜୁଳୁଜୁଳିଆ ପୋକ ଓ ନକ୍ଟିଲ୍ୟୁକା (Noctiluca) ନାମକ ଏକ ସାମୁଦ୍ରିକ ଏକକୋଷୀ ପ୍ରାଣୀ (Protozoa) ମାନଙ୍କର ଆଲୋକ ନିସ୍ସୃତ ଏ ରାସାୟନିକ ପ୍ରକ୍ରିୟା ଯୋଗୁଁ ସଂଘଟିତ ହୋଇଥାଏ ।

## ଜୁଳୁଜୁଳିଆ ଆଲୁଅ କେମିତି ?

ଏ ପ୍ରାଣୀଗୁଡ଼ିକ ଦେହରେ ଏକପ୍ରକାର କଣିକା (Photogenic granule) ରହିଥାଏ ଏବଂ ଏଗୁଡ଼ିକ ହିଁ ଆଲୋକ ଉତ୍ପାଦନର ମୁଖ୍ୟ ଉତ୍ସ । ଲୁସିଫେରିନ୍ (Luci ferin) ନାମକ ଏକ ପୁଷ୍ଟିସାର ଜିନିଷରେ କଣିକାଗୁଡ଼ିକ ଗଠିତ, ଯାହାକି ଲୁସିଫେରେଜ୍ ଏନ୍‌ଜାଇମ୍ (Luciferase enzyme) ଓ ବାୟୁମଣ୍ଡଳସ୍ଥ ଅମ୍ଳଜାନ ସଂସ୍ପର୍ଶରେ ଆସିବାରୁ ଆଲୋକ ପ୍ରଦାନ କରିଥାଏ । ଲୁସିଫେରିନ୍ ନାମକ ପଦାର୍ଥ ପ୍ରଥମେ ଏମିଲ୍ ଡ୍ୟୁବଏସ୍ (Emil Dubois) ନାମକ ବ୍ୟକ୍ତି ୧୮୮୫ ମସିହାରେ ନାମକରଣ କରିଥିଲେ । ଏହି ଆଲୋକ ପ୍ରଦାନ ସମୟରେ ପ୍ରାଣୀ ଦେହରୁ ଖୁବ୍ କମ୍ ପରିମାଣରେ ଉତ୍ତାପ ବାହାରିଥାଏ ଅର୍ଥାତ୍ ଏହା ଗରମ ହୋଇ ନ ଥିବାରୁ ନିସ୍ସୃତ ହେଉଥିବା ସବୁଜ ବା ପୀତସବୁଜ ବା ଶ୍ୱେତନୀଳ ଆଲୋକକୁ ଥଣ୍ଡା ଆଲୋକ (Cold light) ବୋଲି କୁହାଯାଏ । ଏହା ଜୀବପାଇଁ କ୍ଷତିକାରକ ହୋଇ ନ ଥାଏ । ସାଧାରଣ ଲୋକମାନେ ଏହାକୁ ଦେଖି ମନେକରନ୍ତି ଯେ ଜୀବଟି ଆଲୋକ ତା ଦେହରୁ ବାହାର କଲେ ବି କିପରି ନିଜେ ଜଳିଯାଉ ନାହିଁ । ମାତ୍ର କଥା ହେଉଛି ସେଗୁଡ଼ିକତ ନିଜ ଦେହରେ ଥିବା କଣିକା, ଯାହାକି ଆଲୋକ ପ୍ରଦାନ କରିବାର କାରଣ ।

## ଏକ ଅଦ୍ଭୁତ ସୃଷ୍ଟି

ଆମର ଏ ସୃଷ୍ଟି ଏତେ ବିଚିତ୍ର ଓ ରଙ୍ଗିନମୟ ଯେ ତାହା କଳ୍ପନା କରିବା ବା ପରିପ୍ରକାଶ କରିବା ବହୁ କଷ୍ଟକର । ବଣ, ଜଙ୍ଗଲ, ପାହାଡ଼, ପର୍ବତ, ନଦୀ ଓ ଝରଣା ଇତ୍ୟାଦି ପ୍ରାକୃତିକ ପରିବେଶ ମଧ୍ୟରେ ବିଭିନ୍ନ ପ୍ରକାର ଜୀବଜନ୍ତୁର ସମାହାର ବାସ୍ତବରେ ବଡ଼ ମନୋମୁଗ୍ଧକର । ସେଥିରେ ପୁଣି କ୍ଷୁଦ୍ରାତିକ୍ଷୁଦ୍ର ଜୀବମାନେ ଅନ୍ଧକାରରେ ଜୁଳୁଜୁଳୁ ଆଲୋକ ପ୍ରଦାନ କରିବା କଥା ତ ଆହୁରି ବିଚିତ୍ର ଘଟଣା । ତେବେ କଥା ହେଉଛି ଏଡ଼ିକି କ୍ଷୁଦ୍ରପ୍ରାଣୀ ହେଲେ ବି ଏହି ବିଚିତ୍ର ଘଟଣା ତା ପକ୍ଷରେ ଏ ସୃଷ୍ଟିର ବୈଚିତ୍ର୍ୟ ତଥା ଆଶୀର୍ବାଦ ନ ହୋଇ କଣ ବା ହୋଇପାରେ !!!



# ମନିଟର

## ମନିଟର କଅଣ ?

ବିଦ୍ୟାଳୟମାନଙ୍କରେ ଥିବା ପ୍ରତ୍ୟେକ ଶ୍ରେଣୀରେ ଯେପରି ମନିଟର କାର୍ଯ୍ୟ କରନ୍ତି, ସେହିପରି ପ୍ରାଣିଜଗତ୍‌ରେ ମଧ୍ୟ 'ମନିଟର' ଅଛନ୍ତି । ତୁମେ ହୁଏତ ଏକଥା ଜାଣି ନ ଥିବ । ପ୍ରାଣିଜଗତ୍‌ର 'ମନିଟର' କୁହାଯାଉଥିବା ଜୀବଟି ହେଉଛି 'ଗୋଧି' । ଏ ହେଉଛି ଗୋଟିଏ ସରୀସୃପ । କଇଁଚ, କୁମ୍ଭୀର, ଝିଟିପିଟି ଓ ସାପ ଆଦି ପ୍ରାଣୀଗୁଡ଼ିକ ସରୀସୃପ ଶ୍ରେଣୀର । ଏମାନେ ଯେପରି ବିଭିନ୍ନ ପ୍ରକାରର ଅଛନ୍ତି, ଠିକ୍ ସେମିତି ଝିଟିପିଟି ମଧ୍ୟ ଅନେକ ପ୍ରକାରର । ଗୋଧି ହେଉଛି ଝିଟିପିଟି ପରିବାରର ଗୋଟିଏ ପ୍ରାଣୀ ।

## ପ୍ରାଣୀରାଜ୍ୟରେ ସ୍ଥାନ

ଝିଟିପିଟିମାନଙ୍କ ମଧ୍ୟରେ ଗୋଧି ସବୁଠାରୁ ବଡ଼ ହୋଇଥିବାରୁ ଏହାକୁ 'ମନିଟର ଝିଟିପିଟି' (Monitar Lizard) ବା କେବଳ 'ମନିଟର' ବୋଲି କୁହାଯାଏ । ମାତ୍ର ସାଧାରଣଭାବରେ ଏହା ଗୋଧିରୂପେ ଜଣାଶୁଣା । କେତେକ ଯେମିତି ତିମିକୁ ଭୁଲ୍‌ରେ ତିମିମାଛ ବୋଲି କହିଥାଆନ୍ତି, ଠିକ୍ ସେମିତି ଗୋଧିକୁ ଭୁଲ୍‌ରେ ଗୋଧିସାପ ବୋଲି କହିଥାଆନ୍ତି । କିନ୍ତୁ ଗୋଧି ଆଦୌ ସାପ ନୁହେଁ । ଏହା ଏକପ୍ରକାରର ସରୀସୃପ । ସାପ ମଧ୍ୟ ଆଉ ଗୋଟିଏ ପ୍ରକାରର ସରୀସୃପ । ଇଂରାଜୀରେ ଏହାର ନାମ 'ଭାରାନାସ୍' *(Varanus)* ।

## ମନିଟରର ଘର

ପୃଥିବୀରେ ସତେଇଶ ପ୍ରକାରର ଗୋଧି ବା ମନିଟର ଦେଖାଯାଆନ୍ତି । ଏମାନେ ଦେଖିବାକୁ ମିଳନ୍ତି ଆଫ୍ରିକା, ଭାରତ, ମାଲୟେସିଆ ଓ ଅଷ୍ଟ୍ରେଲିଆ ମହାଦେଶରେ । ଓଡ଼ିଶାରେ ପ୍ରାୟ ସବୁ ସ୍ଥାନରେ ଗୋଧି ଦେଖାଯାଆନ୍ତି । ଓଡ଼ିଶାର ଭିତରକନିକା ଅଭୟାରଣ୍ୟରେ ବେଶି ସଂଖ୍ୟାରେ ଏମାନଙ୍କୁ ଦେଖିବାକୁ ମିଳେ । ଏମାନଙ୍କ ଭିତରୁ କେତେକ ଜଙ୍ଗଲରେ, କେତେକ ମରୁ ଅଞ୍ଚଳରେ ଓ ଆଉ କେତେକ ପାଣିରେ ରହନ୍ତି । ଜଙ୍ଗଲରେ ରହୁଥିବା ଗୋଧିଗୁଡ଼ିକ ମଧ୍ୟରୁ କିଏ ଗଛରେ ତ ଆଉ କିଏ ମାଟି ଭିତରେ ବା ଗାତରେ ରହିବାକୁ ଭଲପାଆନ୍ତି । ପାଣିରେ ରହୁଥିବା ଗୋଧିଗୁଡ଼ିକ ପାଣିରେ ପହଁରି

ସମୟ କାଟନ୍ତି ଓ ବେଳେବେଳେ ଶୁଖିଲା ସ୍ଥାନକୁ ଚାଲିଆସନ୍ତି । ଭୂଇଁରେ ଚାଲିଲାବେଳେ ପେଟକୁ ଘୋଷାରି ଘୋଷାରି ଚାଲିବା ଏମାନଙ୍କ ସ୍ୱଭାବ । ଏହା ପ୍ରତ୍ୟେକ ସରୀସୃପର ପ୍ରକୃତି ।

## ଶରୀର ଗଠନ ଓ ଆକାର

ଏମାନଙ୍କର ଆକାର ଦଶ ଇଞ୍ଚରୁ ଆରମ୍ଭ କରି ପାଞ୍ଚ ଫୁଟ ପର୍ଯ୍ୟନ୍ତ । ଏମାନଙ୍କ ମଧ୍ୟରେ ସବୁଠାରୁ ବଡ଼ ମନିଟର ବି ଅଛନ୍ତି । ସେମାନେ ଲମ୍ବାରେ ପ୍ରାୟ ବାର ଫୁଟ ବା ତା'ଠାରୁ ଅଧିକ । ଏମାନଙ୍କ ଓଜନ ଏକ କୁଇଣ୍ଟାଲରୁ ବେଶି । ଏମାନଙ୍କୁ 'କୋମୋଡୋ ଡ୍ରାଗନ୍' (Komodo Dragon) ବୋଲି କୁହାଯାଏ । କୋମୋଡୋ ନାମକ ଦ୍ୱୀପରେ ଦେଖାଯାଆନ୍ତି ବୋଲି ଏମାନଙ୍କର ଏପରି ନାମକରଣ ହୋଇଛି । ସତରେ ଏମାନେ ଖୁବ୍ ବିରାଟ ! ସେଥିପାଇଁ ମଣିଷ ଗୋଧିଗୁଡ଼ିକୁ ଦେଖିଲେ ଡରିଯାଆନ୍ତି ।



ଗୋଧି

ଦେହଟି ଏମାନଙ୍କର ଲମ୍ବା । ବେକଟି ସରୁ ଓ ଲମ୍ବା । ଲାଞ୍ଜଟି ଦେହର ଅଧାରୁ ଅଧିକ ଲମ୍ବା । ମରୁଭୂମିରେ ରହୁଥିବା ଗୋଧିଗୁଡ଼ିକର ଲାଞ୍ଜ ଗୋଲାକାର; ମାତ୍ର ଅନ୍ୟ

ଗୁଡ଼ିକର ଲାଞ୍ଜ ଦୁଇକଡ଼ରୁ ଚେପ୍‌ଟା । ଦେହର ବର୍ଣ୍ଣ ମାଟିଆ ବା ଧୂସରିଆ । ଦେହସାରା କାତିରେ ପୂର୍ଣ୍ଣ । ଗୋଲ ଗୋଲ କାତିଗୁଡ଼ିକ ସାଧାରଣତଃ ଗୋଧିର ଦେହରେ ଓ ଚାରିକୋଣିଆ କାତିଗୁଡ଼ିକ ତା ପେଟ ପାଖରେ ଥାଏ । କାତିଗୁଡ଼ିକ ଏପରି ସଜେଇ ରଖିଲାପରି ହୋଇଥାଏ ଯେ, ଦେଖିଲେ ମନେହେବ ଯେମିତି ତା' ଦେହସାରା ଛୋଟ ଛୋଟ ମାଳିଗୁଡ଼ିଏ କିଏ ଖଞ୍ଜି ଦେଇଛି । ଭାରତରେ ଦେଖାଯାଉଥିବା ଗୋଧିମାନଙ୍କର ରଙ୍ଗ ଧୂସରିଆ ଓ ପିଠିରେ ଥାଏ ହଳଦିଆ ଓ କଳାର କାତି । ମାତ୍ର ପେଟ ପାଖରେ କାତିଗୁଡ଼ିକ ମଇଳା ଧଳାରଙ୍ଗର । ଦେହରୁ କାତି ଛାଡ଼ିବା ସମୟରେ ଏମାନେ ଖୁବ୍ ସୁନ୍ଦର ଦେଖାଯାନ୍ତି । କେତେକ ଗୋଧିର ଦେହସାରା ପଟାପଟା ଗାର ତ କେତେକଙ୍କ ଦେହରେ ହଳଦିଆ ଗୋଲ୍ ଗୋଲ୍ ଚିହ୍ନ ଥାଏ । ଆଉ କେତେକଙ୍କ ଦେହରେ ଥାଏ ଛାପିଛାପିକା ଚିହ୍ନ । ଗୋଧିର ଗୋଲ ଗୋଲ ଆଖିଦୁଇଟି ବଡ଼ ବଡ଼ । ଜିଭଟି ସାପପରି ଦୁଇଫାଳିଆ । ମୁଣ୍ଡ ତୁଳନାରେ ଯଥେଷ୍ଟ ଲମ୍ବା । ସାପ ପରି ଏମାନେ ଦୁଇଫାଳିଆ ଜିଭଟିକୁ ସବୁବେଳେ ହଲହଲ କରନ୍ତି । ଜିଭ ଫକଫକ କରି ଏମାନେ ନିକଟରେ ଥିବା ଶିକାର ବିଷୟରେ ଜାଣିପାରନ୍ତି । ଜିଭଟି ଏମାନଙ୍କୁ ଶୁଙ୍ଘିବାରେ ସାହାଯ୍ୟ କରେ । ତେଣୁ ଶିକାର ଦୂରରେ ଥିଲେ ମଧ୍ୟ ଗୋଧି ତା' ଜିଭଦ୍ୱାରା ସେକଥା ଜାଣିପାରି ସହଜରେ ଶିକାର ପାଇପାରେ ।

## ଶିକାର ଓ ଖାଦ୍ୟ

ଗୋଧିଗୁଡ଼ିକ ପେଟୁ ଓ ମାଂସାଶୀ । ଏମାନେ ରାତିରେ ଚଲାବୁଲା କରି ଛୋଟ ଛୋଟ ସ୍ତନ୍ୟପାୟୀ ବେଙ୍ଗପରି ଉଭୟଚରୀ ଓ କୀଟପତଙ୍ଗ ଆଦି ଜୀବମାନଙ୍କୁ ଖାଆନ୍ତି । କଇଁଚ,ଛେଳି,ହରିଣଛୁଆ ଓ ବଣଘୁଷୁରି ପରି ବଡ଼ ବଡ଼ ପ୍ରାଣୀ ଏବଂ ଗୁଣ୍ଡୁଚିମୂଷା ପରି ଛୋଟ ଛୋଟ ପ୍ରାଣୀ ଆଉ ପକ୍ଷୀ ଓ କୁମ୍ଭୀରମାନଙ୍କର ଅଣ୍ଡା ମଧ୍ୟ ଏମାନଙ୍କର ସୁଖାଦ୍ୟ । ପାଣିରେ ରହୁଥିବା ଗୋଧିଗୁଡ଼ିକର ଖାଦ୍ୟ ହେଲା—ମାଛ,ଗେଣ୍ଡା ଓ କଙ୍କଡ଼ାଆଦି ପ୍ରାଣୀ । ଯେଉଁ ପାଣି-ଗୋଧି କୁମ୍ଭୀର ରହୁଥିବା ସ୍ଥାନରେ ରହନ୍ତି, ସେମାନଙ୍କର ପ୍ରିୟ ଖାଦ୍ୟ ହେଲା କୁମ୍ଭୀର ଅଣ୍ଡା । କୁମ୍ଭୀର ଅଣ୍ଡା ଦେଇ ତା' ବସାରେ ଜଗିଥିଲେ ମଧ୍ୟ କୌଶଳରେ ସେଇ ଅଣ୍ଡା ନେଇଆସି ଗୋଧି ଖାଇଥାଏ । ଗୋଧିର ବେକଟି ଲମ୍ବା ହୋଇଥିବାରୁ ବେକକୁ ସହସା ଲମ୍ବାଇଦେଇ ସେ ତା'ର ଶିକାରକୁ ଅକ୍ତିଆର କରିଥାଏ । ତେଣୁ ଶିକାରଟିଏ ଗୋଧି ହାବୁଡ଼ରୁ ଖସିଯିବା ବହୁତ କଷ୍ଟ । ଶିକାର ପାଇଲେ ନ ଚୋବାଇ ସାପପରି ଗିଳିପକାଇବା ଏମାନଙ୍କର ପ୍ରକୃତି ।

## ମନିଟରର ବ୍ୟବହାର ଓ ଛୁଆ

ଦିନର ଅନେକ ସମୟ ଖରାରେ କାଟିବାକୁ ଭଲ ପାଏ ଗୋଧି । ବିପଦ ଜାଣିପାରିଲେ ସେ ଲାଞ୍ଜକୁ ସାପ ପରି ବଙ୍କେଇ ବଙ୍କେଇ ଖୁବ୍ ଜୋର୍‌ରେ ଦୌଡ଼େ । ତେଣୁ ଏମାନଙ୍କୁ ଧରିବା ବଡ଼ କଷ୍ଟ । ଏମାନେ ସାପ, କୁମ୍ଭୀର ଓ କଇଁଚ ପରି ଭୂଇଁରେ କରିଥିବା ବସାରେ ବା ଗଛ କୋରଡ଼ରେ ଅଣ୍ଡା ଦେଇଥାଆନ୍ତି । ଭାରତରେ ଦେଖାଯାଉଥିବା ଗୋଧିଗୁଡ଼ିକ ତାଙ୍କ ଆଗ ଗୋଡ଼ରେ ଥିବା ଶକ୍ତ ପଂଝାରେ ମାଟି ଖୋଳି ଗାତରେ ଅଣ୍ଡା ଦିଅନ୍ତି । ଏ ଗାତଗୁଡ଼ିକ ପ୍ରାୟ ଏକଫୁଟ ଗଭୀରର ହୋଇଥାଏ । ଅଣ୍ଡା ଦେବା ପରେ ଏମାନେ ମୁଣ୍ଡ ଥୋମଣିରେ ମାଟି ଆଣି ଗାତ ପୂର୍ଣ୍ଣ କରିଦିଅନ୍ତି । ଏମାନେ ଥରକରେ ୧୬ଟିରୁ ୩୪ଟି ପର୍ଯ୍ୟନ୍ତ ଅଣ୍ଡା ଦିଅନ୍ତି । ଅଣ୍ଡାଗୁଡ଼ିକ ଧଳା, ଗୋଲ୍‌ଗୋଲ୍, ପତଳା ଓ ନରମ ମଧ । ଅଣ୍ଡାଗୁଡ଼ିକ ଫୁଟିବା ପରେ ଛୁଆଗୁଡ଼ିକ ଧୀରେ ଧୀରେ ଆପେ ମାଟି ଉପରକୁ ବା ଗଛ କୋରଡ଼ରୁ ବାହାରକୁ ଚାଲିଆସନ୍ତି ।


ଗୋଧିର ଶିକାର ପାଇଁ ଉଦ୍ୟତ

ଗୋଧି ଏତେ ବଡ଼ ହୋଇ ମଧ କୁମ୍ଭୀର ଓ ବଡ଼ ବଡ଼ ପକ୍ଷୀ ତା'ର ଶତ୍ରୁ । ଆଖିରେ ପଡ଼ିଲେ ମଣିଷ ବି ଏମାନଙ୍କୁ ମାରିଦେଇଥାଏ । କାମୁଡ଼ିଲେ କାଳେ ଏହା ବିଷରେ ମଣିଷ ମରିଯିବ, ସେଥିପାଇଁ ମଣିଷ ଏହି ଜୀବଗୁଡ଼ିକୁ ମାରିଥାଏ । ତେବେ ଏ ଶତ୍ରୁ ମୁହଁରୁ ବଞ୍ଚିବା ପାଇଁ ଏମାନଙ୍କର ଅସ୍ତ୍ର ହେଉଛି ଶକ୍ତ ମାଢ଼ି, ବଡ଼ ପାଟି ଓ ଶକ୍ତ ତୀକ୍ଷଣ ପଂଝା । ବିରାଟ ପାଟି ମେଲାଇ ଗୋଧି ତା'ର ଶତ୍ରୁକୁ କାବୁ କରିଦିଏ । ପାଣିରେ ବା ପାଣିପାଖରେ ରହୁଥିବା ଗୋଧିଗୁଡ଼ିକ ଶତ୍ରୁର ସୂଚନା ପାଇଲେ ରକ୍ଷା ପାଇବା ପାଇଁ ପାଣିକୁ ଡେଇଁପଡ଼ନ୍ତି ।

## ଏକ ବିଷହୀନ ପ୍ରାଣୀ

ଅନେକ ଲୋକ ଗୋଧିକୁ ବିଷାକ୍ତ ବୋଲି ମନେ କରନ୍ତି । ମାତ୍ର ଏମାନେ ବିଷହୀନ । କାମୁଡ଼ିଲେ କିଛି ହୁଏ ନାହିଁ । ଗୋଧିର ବିରାଟ ଭୟଙ୍କର ରୂପ ଦେଖି ଲୋକମାନେ ଗୋଧି ସଂପର୍କରେ ଏପରି କଳ୍ପନାଜଳ୍ପନା କରିଥାନ୍ତି ।



ପୃଥିବୀରେ ଯେତେ ସରୀସୃପ ଦେଖାଯାଆନ୍ତି, ସେମାନଙ୍କ ମଧ୍ୟରୁ କେବଳ ବିଷାକ୍ତ ସାପଗୁଡ଼ିକ ଓ ହେଲୋଡ଼ର୍ମା *(Heloderma)* ନାମକ ଆଉ ଗୋଟିଏ ସରୀସୃପ ବିଷାକ୍ତ । ଅନ୍ୟସବୁ ସରୀସୃପ ଆଦୌ ବିଷାକ୍ତ ନୁହନ୍ତି । ବିଷଧର ଭାବି ଏମାନଙ୍କୁ ମାରିବା ଭୁଲ୍ । ନନ୍ଦନକାନନରେ ଥିବା ସରୀସୃପ ଜୀବଉଦ୍ୟାନରେ ଗୋଧିମାନଙ୍କୁ ସହଜରେ ଦେଖିହେବ । ଭୁଲରେ ବିଷାକ୍ତ ଭାବି ଗୋଧିଗୁଡ଼ିକୁ ମାରିଦେଲେ ଅଚିରେ ଏମାନଙ୍କର ବଂଶ ଲୋପ ପାଇଯିବ । ତେଣୁ ଏମାନଙ୍କୁ ଆମେ ସମସ୍ତେ ଭଲ ପାଇଲେ ଖୁସିରେ ଏମାନେ ବଞ୍ଚିପାରିବେ । ଏମାନଙ୍କ ସଂଖ୍ୟା ବଢିବ । ଆଉ ଆମ ଚାରିପଟେ ଆନନ୍ଦରେ ଏମାନେ ଚରାବୁଲା କରିପାରିବେ । ଶ୍ରେଣୀର ମନିଟର କଥା ପିଲାମାନେ ଯେମିତି ମାନନ୍ତି, ତାକୁ ସମ୍ମାନ କରନ୍ତି; ଠିକ୍ ସେପରି ଆମ ଜୀବଜଗତର ମନିଟରଙ୍କୁ ଆମେ ଭଲପାଇଲେ ଓ ଶ୍ରଦ୍ଧା କଲେ ଏମାନେ ଅନ୍ତତଃ ନିର୍ଭୟରେ ବଞ୍ଚିପାରିବେ । ନଚେତ୍ ଦିନ ଆସିବ, ଡାଇନୋସର ପରି ଏମାନେ ମଧ୍ୟ ପୃଥିବୀପୃଷ୍ଠରୁ ସମୂଳେ ଲୋପ ପାଇଯିବେ ।



# ଶୋଷି ଶୋଷି ସିଏ ପିଅଇ ରକ୍ତ, ଜୀବଟି ଜୋକ

## ଜୋକ କଅଣ ?

ମିଟୁ ଆଉ ମିଲି ଦୁହେଁ ଭାଇ ଭଉଣୀ । ଥରେ ଗାଁ ପାଖ ସ୍କୁଲରେ ବିଜ୍ଞାନ ପ୍ରଦର୍ଶନୀ ହେଉଥାଏ । ଦୁହେଁ ବଡ଼ଭାଇଙ୍କ ସାଙ୍ଗରେ ପ୍ରଦର୍ଶନୀ ଦେଖିବାକୁ ଯାଇଥାନ୍ତି । ଚାରିଆଡ଼େ ବୁଲି ଦେଖୁ ଦେଖୁ ହଠାତ୍ ମିଟୁ ପାଣି ଭିତରେ ଗୋଟିଏ କୁକୁଡ଼ା ଅଣ୍ଡା ଘୂରୁଥିବାର ଦେଖିଲା । ତାକୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ସେ ମିଲିକୁ କହିଲା- ''ଦେଖ ଲୋ ମିଲି ! କେମିତି ଅଣ୍ଡାଟା ମନକୁ ମନ ପାଣିରେ ଘୂରୁଛି ।''

ଭାଇ କଲେଜର ବିଜ୍ଞାନ ଛାତ୍ର । ସେ କହିଲେ –''ମନକୁ ମନ ଅଣ୍ଡା କେମିତି ଘୂରିବ ମ !''

ମିଲି ପଚାରିଲା –''ଅଣ୍ଡାଟା ତେବେ ପାଣିରେ ଘୂରୁଚି କେମିତି ?'' ଭାଇ କହିଲେ–''ଗୋଟିଏ ଖାଲି ଅଣ୍ଡା ଖୋଳ ଭିତରେ ଜୋକଟିଏ ପଶିଛି,ସେ ଯେତେବେଳେ ଚାଲବୁଲ କରୁଛି,ଅଣ୍ଡା ପାଣିରେ ଘୂରୁଛି ।''

ମିଟୁ ପଚାରିଲା –''ଜୋକଗୁଡ଼ିକ ପରା ରକ୍ତ ଶୋଷନ୍ତି ?''

ଦୁହିଁକୁ ଭାଇ ଜୋକ କଥା ବୁଝାଇଲେ । ସେ କହିଲେ –''ମାଛ, ବେଙ୍ଗ, ଗୋରୁଗାଈ ଏପରିକି ମଣିଷମାନଙ୍କର ରକ୍ତ ଶୋଷିବା ଜୋକମାନଙ୍କର ଅଭ୍ୟାସ ।

## ଜୋକର ଆକାର

କେତେକ ଜୋକ କୀଟପତଙ୍ଗ,ଛୋଟ ଶାମୁକା ମଧ୍ୟ ଖାଇଥାଆନ୍ତି । ଏମାନଙ୍କର ଲମ୍ବ ପ୍ରାୟ ୧୦ ରୁ ୧୫ ସେ.ମି. । କିନ୍ତୁ ବଡ଼ ବଡ଼ ଜୋକ ୩୦ରୁ ୩୫ ସେ.ମି. ପର୍ଯ୍ୟନ୍ତ ହୋଇଥାଏ । ଛିଆପରି ଏମାନେ ଜାକି ହୋଇଯାଆନ୍ତି । ଜାକି ହେବା ସମୟରେ କଲମ ପରି ଏମାନେ ଗୋଲାକାର ଦିଶନ୍ତି । ଲମ୍ବିଯିବା ସମୟରେ ଫିତାପରି ପତଳା ହୋଇଯାଆନ୍ତି । ଏମାନଙ୍କର ଦେହର ଉପରଭାଗ ଦେଖିବାକୁ ଗାଢ ସବୁଜ ଓ ତଳଭାଗର ରଙ୍ଗ କମଳା ହଳଦିଆ ମିଶା । ସମୁଦାୟ ଦେହଟି ମୁଦିପରି ପାଖକୁ ପାଖ ଲାଗିଥିବା ତେତିଶଟି ଅଂଶରେ ବିଭକ୍ତ । ''

ମିଳି ପଚାରିଲା–''ଭାଇ ! ଏମାନେ କେମିତ ମଣିଷଠାରୁ ରକ୍ତ ଶୋଷନ୍ତି ?''



ଜୋକର ଆକାର

ଭାଇ କହିଲେ -''ଏମାନଙ୍କର ଦେହର ପ୍ରଥମ ଓ ଶେଷ ଭାଗରେ ଗୋଟିଏ zæ̃ Úùæêcé ›©ææ‘uÏæç‘(Sucker) କୁହାଯାଏ । ଯେକୌଣସ ସ୍ଥାନ ବା ଜୀବ ଦେହରେ ଲାଗିରହିବା ଏ ଦୁଇଟି ଶୋଷକର କାମ । ଅନ୍ୟ ସ୍ଥାନକୁ ଯିବା ସମୟରେ ମଧ୍ୟ ଶୋଷକ ଦୁଇଟି ସାହାଯ୍ୟ କରିଥାନ୍ତି । ଏମାନଙ୍କ ମୁଣ୍ଡ ପାଖରେ ଥିବା ଶୋଷକର ପାଟି ଭିତରେ ତିନିମୁନିଆ ମାଢ଼ି ଥାଏ । ପ୍ରତ୍ୟେକ ମାଢ଼ିରେ ଗୁଡିଏ ଛୋଟ ଛୋଟ ଦାନ୍ତ ମଧ୍ୟ ଥାଏ । ଏହା ଦେଖିବାକୁ କରତ ପରି । ରକ୍ତ ଶୋଷିବା ସମୟରେ ଏହି ଦାନ୍ତଗୁଡ଼ିକ ପାଟି ଭିତରୁ ବାହାରି ଆସି ଚମକୁ କାଟନ୍ତି ଓ କ୍ଷତ କରିଦିଅନ୍ତି । ଏହି ସମୟରେ କ୍ଷତସ୍ଥାନର ରକ୍ତ ଓ ଶୋଷିଥିବା ରକ୍ତ ଜମାଟ ବାନ୍ଧେ ନାହିଁ । କାରଣ ପାଟିରେ ଥିବା ଲାଳ ଗ୍ରନ୍ଥିରୁ 'ହିରୁଡ଼ିନ୍' (Hirudin) ନାମକ ରାସାୟନିକ ପଦାର୍ଥ ଜମାଟ ବନ୍ଧାଇ ଦିଏ ନାହିଁ ।''

ମିଟୁ ପଚାରିଲା-''ଭାଇ,ସବୁଦିନେ କ'ଣ ଜୋକମାନଙ୍କୁ ରକ୍ତ ଶୋଷିବା ପାଇଁ ମିଳେ ?''

**ରକ୍ତ ଏହାର ଖାଦ୍ୟ**

ଭାଇ କହିଲେ–''ଅରେ ରକ୍ତ ଖାଇଲେ ମାସ ମାସ ଏପରିକି ବର୍ଷେ ପର୍ଯ୍ୟନ୍ତ କିଛି ନ ଖାଇ ଜୋକ ବଞ୍ଚି ଯାଇପାରେ । କାରଣ ଏହାର ଖାଦ୍ୟନଳୀରେ ଅନେକ କୋଠରି ପରି ଅଂଶ ଥିବାରୁ ସେଥିରେ ସେ ରକ୍ତ ସାଇତି ରଖେ । ରକ୍ତ ଶୋଷିବା ବେଳେ ସବୁ କୋଠରି ରକ୍ତରେ ପୂର୍ଣ୍ଣ ହୋଇଗଲେ ଜୋକ ଆପେ ଆପେ ଖସିଯାଏ । ତା'ପରେ ସେ ଅନ୍ଧାରିଆ ସ୍ଥାନ ଖୋଜି ଆରାମ କରେ । ରକ୍ତ ଧୀରେ ଧୀରେ ହଜମ ହୋଇଯାଏ ।''

ମିଲି ପଚାରିଲା– ''ଭାଇ,ଏମାନେ ତ ରକ୍ତ ଖାଇ ଆମର କ୍ଷତି କରନ୍ତି । କିଛି ଉପକାର କ'ଣ କରନ୍ତି ନାହିଁ ?''

**ଜୋକ ଆମର ଉପକାରୀ**

ଭାଇ ହସି ହସି କହିଲେ–''ହଁ ,ଏମାନେ ଅପକାର କଲେ ମଧ ଉପକାର କରିଥାନ୍ତି । କେତେକ ମାଛ,ବତକ ଓ ପକ୍ଷୀମାନଙ୍କର ଜୋକ ଏକ ପ୍ରଧାନ ଖାଦ୍ୟ । ଏପରିକି କେତେକ ଲୋକ ଖାଦ୍ୟରୂପେ ଏହାକୁ ବ୍ୟବହାର କରିଥାନ୍ତି । ତା'ଛଡା କେତେକ ଜାତିର ଜୋକକୁ ଔଷଧ ରୂପେ ବ୍ୟବହାର କରାଯାଏ । ବାଳ ନ ପାଚିବା ପାଇଁ ଔଷଧ ଏମାନଙ୍କ ଦେହରୁ ତିଆରି ହୁଏ ।''

ଜୋକମାନଙ୍କ କାହାଣୀ ସତେ କେଡ଼େ ମଜା !



ଜୋକର ଶରୀର ଓ ଶୋଷକ

# ଯାହାର ପାଟିକୁ ଡର ସିଏ କୁମ୍ଭୀର

## କୁମ୍ଭୀର ଓ ଲୋକକଥା

ଜୀବଜଗତ କ୍ଷୁଦ୍ରାତିକ୍ଷୁଦ୍ର ବୀଜାଣୁ (Bacteria),ଭୂତାଣୁ (Virus), କ୍ଷୁଦ୍ର ପିମ୍ପୁଡ଼ି,ମାଛିଠାରୁ ଆରମ୍ଭ କରି ତିମି,ହାତୀ,ଗଣ୍ଡା ଓ କୁମ୍ଭୀର ଆଦି ବିରାଟ ବିରାଟ ପ୍ରାଣୀରେ ପୂର୍ଣ୍ଣ । ତେବେ ଏ ପ୍ରାଣୀମାନଙ୍କ ମଧ୍ୟରେ ଏମିତି କେତେକ ପ୍ରାଣୀ ରହିଛନ୍ତି ଯେଉଁମାନଙ୍କୁ ଦେଖିଲେ ଭୟ ସଂଚାର ହୁଏ । ଏପରି ଏକ ଭୟଙ୍କର ପ୍ରାଣୀ ମଧ୍ୟରେ କୁମ୍ଭୀର ଏକ ପ୍ରକାର । କୁମ୍ଭୀର କଥା ପଡ଼ିଲେ ମନରେ ଛାନିଆ ପଶିଯାଏ –ସତେକି କାମୁଡ଼ି ପକାଇବ ଅଥବା ଗିଳିଦେବ କିମ୍ୱା ଲାଞ୍ଜରେ ପିଟି ମାରିଦେବ । ତା'ଛଡ଼ା ମଝିରେ ମଝିରେ କୁମ୍ଭୀର ମଣିଷ ଖାଇଦେବା କଥା ବି ଶୁଣିବାକୁ ମିଳେ । କୁମ୍ଭୀର ପ୍ରତି ମଣିଷର ଆତଙ୍କ ମନୋଭାବ ପ୍ରକାଶ ପାଇଥାଏ । ଏ ପ୍ରାଣୀର ତ କିଛି ଉପକାର ନାହିଁ–ଖାଲି ମଣିଷକୁ କେମିତି ଖାଇବ ତା'ର ଲକ୍ଷ୍ୟ । ତେଣୁ ସମୟ ସୁଯୋଗ ପାଇଲେ ମନୁଷ୍ୟ ଏ ପ୍ରାଣୀମାନଙ୍କୁ ମାରିପକାଇବାକୁ ପଶ୍ଚାତ୍‌ପଦ ହୁଏ ନାହିଁ । ସତରେ କ'ଣ ଏ ପ୍ରାଣୀର ପ୍ରାଣିଜଗତ ପ୍ରତି କିଛି ଅବଦାନ ନାହିଁ ? ଖାଲି କ'ଣ ମନୁଷ୍ୟ ଏହାର ଖାଦ୍ୟ ? ଯଦି ମନୁଷ୍ୟ ପ୍ରତି ଏ ପ୍ରାଣୀ ବିପଦପୂର୍ଣ୍ଣ ତେବେ ମନୁଷ୍ୟ କାହିଁକି ଏ ପ୍ରାଣୀଗୁଡ଼ିକ କିପରି ବଞ୍ଚିବେ, ଏମାନଙ୍କର କିପରି ରକ୍ଷଣାବେକ୍ଷଣ ହୋଇପାରିବ ତଥା ଏମାନଙ୍କର ବଂଶବୃଦ୍ଧି କିପରି ଘଟିବ, ସେଥିପାଇଁ ଚିନ୍ତିତ ?

## କୁମ୍ଭୀର କ'ଣ ?

କୁମ୍ଭୀର ମେରୁଦଣ୍ଡୀ (Vertebrate) ବିଭାଗର ସରୀସୃପ (Reptile) ଜାତୀୟ ଏକ ପ୍ରାଣୀ । ଅର୍ଥାତ୍ ସାପ, କଇଁଚ, ଝିଟିପିଟି ଓ ଏଣ୍ଡୁଅ ପରି ଏହା ଏକ ସରୀସୃପ । ଏ ପ୍ରାଣୀମାନଙ୍କର ବିଶେଷତ୍ୱ ହେଉଛି ଭୂଇଁ ଉପରେ ପେଟକୁ ଘୋଷାରି ଘୋଷାରି ଚାଲିବା । ବିବର୍ତ୍ତନରେ ଦେଖାଯାଇଛି ସରୀସୃପ ପ୍ରାଣୀମାନଙ୍କ ମଧ୍ୟରେ ଯେତେ ସବୁ ପ୍ରାଣୀ ସୃଷ୍ଟି ହୋଇଛନ୍ତି ବା ଯେତେ ଲୀନ ହୋଇଗଲେଣି ସେମାନଙ୍କ ମଧ୍ୟରେ କୁମ୍ଭୀରମାନେ ସରୀସୃପ ଭାବରେ ପ୍ରାଣି ଜଗତ୍‌ରେ ଆବିର୍ଭାବ ହୋଇଥିଲେ । ତେବେ ଭୂତାତ୍ତ୍ୱିକ ସମୟ (Geological Time) ଅନୁଯାୟୀ ଏମାନଙ୍କର ଉତ୍ପତ୍ତି ଘଟିଥିଲା ଟ୍ରାୟାସିକ (Triassic) ସମୟରେ । ଏମାନେ ମୁଖ୍ୟତଃ ଜଳରେ ରହିବାର ଦେଖାଯାଏ ।

କେତେକ ମଧୁରଜଳରେ ଓ ଆଉ କେତେକ ଲୁଣି ଜଳରେ ରହିଥାଆନ୍ତି । ଶରୀରଟି ଖୁବ୍ ଶକ୍ତିଶାଳୀ । ପାଟିଟି ଦାନ୍ତରେ ପୂର୍ଣ୍ଣ ଓ ଲାଞ୍ଜ ଦୁଇକଡ଼ରୁ ଚେପ୍ଟା । ମାଛ ସାଧାରଣତଃ ଏମାନଙ୍କ ମୁଖ୍ୟ ଖାଦ୍ୟ ।

## କୁମ୍ଭୀର ସଂରକ୍ଷଣର ଗୁରୁତ୍ୱ

ଆଗରୁ ଆଲୋଚନା କରାଯାଇଛି ଯେ କୁମ୍ଭୀର ଏକ ମଣିଷଖିଆ ପ୍ରାଣୀ ବୋଲି ମନୁଷ୍ୟ ମନରେ ଏ ପ୍ରାଣୀପ୍ରତି ଘୃଣା ମନୋଭାବ ରହିଛି । ତା ଛଡ଼ା ପୁରାଣରେ ବର୍ଣ୍ଣିତ ଯେ ଶ୍ରୀକୃଷ୍ଣଙ୍କୁ ହାତୀ ପ୍ରାର୍ଥନା କରି ଜଣାଇଲା ବୋଲି କୁମ୍ଭୀର ଖାଇଯାଉଥିବା ହାତୀକୁ ଶ୍ରୀକୃଷ୍ଣ ଚକ୍ର ପେଷି ଉଦ୍ଧାର କରିଥିଲେ କୁମ୍ଭୀର ମୁଖରୁ । ଯାହାହେଲେବି କୁମ୍ଭୀର ଆମର ଅପକାରୀ ପ୍ରାଣୀ ନୁହେଁ,ବାସ୍ତବରେ ଏହା ଆମର ଉପକାରୀ ପ୍ରାଣୀ । ସ୍ଥଳଭାଗରେ ବାଘ ଖାଦ୍ୟ ଶିକୁଳୀର ଉଚ୍ଚରେ ଥିବା ପରି ଜଳଭାଗରେ ଏ ପ୍ରାଣୀ ମଧ ଶୀର୍ଷରେ । ଜଳଭାଗରେ ରହି ଜଳଭାଗର ଅପକାରୀ ପ୍ରାଣୀ ତଥା ଜଳରେ ମରି ଭାସୁଥିବା ଅନ୍ୟ ପ୍ରାଣୀମାନଙ୍କୁ ଖାଇ (Predator ଓ Scavenger) ଥାଆନ୍ତି । (୧) ତେଣୁ ଜଳରୁ ଏପରି କେତେକ ଅନିଷ୍ଟକାରୀ ତଥା ଅଦରକାରୀ ପ୍ରାଣୀଙ୍କୁ ଭକ୍ଷଣ କରି ଜଳୀୟ ପରିବେଶ ପରିଷ୍କାର ରଖିବାରେ ଏମାନେ ସହାୟକ ହୋଇଥାଆନ୍ତି । (୨) ସେମାନେ ଦୁର୍ବଳ, ରୋଗଣା ଓ କ୍ଷତବିକ୍ଷତ ପ୍ରାଣୀମାନଙ୍କୁ ଖାଇବାରେ ଲକ୍ଷ୍ୟ ରଖିଥାଆନ୍ତି । ତେଣୁ ଜଳଭାଗର ପ୍ରାଣୀମାନଙ୍କ ଅନୁବଂଶ ଗୁଣ ସୁରକ୍ଷା (Raising genetic quality) ରେ ସାହାଯ୍ୟ କରିଥାଆନ୍ତି । (୩) ପରିବେଶୀୟ ପିରାମିଡ୍ (Ecological pyramid) ର ଉପରେ ଥିବାରୁ (ନଦୀ,ହ୍ରଦ,ସନ୍ତସନ୍ତିଆ ସ୍ଥାନ ତଥା ଲୁଣାଜଳ) ପରିବେଶ ଭାରସାମ୍ୟ (Ecological balance) ରକ୍ଷା କରିଥାଆନ୍ତି । ଅର୍ଥାତ୍ କୁମ୍ଭୀରମାନେ ଥିବାରୁ ଜଳଭାଗରେ ନିଶୁଆମାଛ (Cat fishes) ଗୁଡ଼ିକ କେଉଟମାନଙ୍କ ପାଇଁ ବିପଦ ସୃଷ୍ଟି କରିପାରନ୍ତି ନାହିଁ । ନଚେତ୍ ନିଶୁଆମାଛମାନେ ଅନେକ ସଂଖ୍ୟାରେ ବଢ଼ି ଅନ୍ୟ ମାଛଗୁଡ଼ିକୁ ଖାଇଯାଇ ମାଛଚାଷରେ ଅନେକ କ୍ଷତି ଘଟାନ୍ତେ । ବିଶେଷକରି ରୋହୀ, ଭାକୁର, ମିରିକାଳି (Carps) ଓ ଟିଲାପିଆ (Tilapia) ନାମକ ମାଛବଂଶର ଅନେକ କ୍ଷତି ଏ ନିଶୁଆମାଛମାନେ ଘଟାଇଥାନ୍ତି । କୁମ୍ଭୀରମାନଙ୍କ ଯୋଗୁଁ ଏ ମାଛର ବଂଶବୃଦ୍ଧି ସହଜରେ ହୋଇପାରି ନ ଥାଏ ।

ଏହିସବୁ କାରଣରୁ କୁମ୍ଭୀର ଆମର ଉପକାରୀ । କିନ୍ତୁ ଆମେ ଏହା ନ ଜାଣିପାରି ମନୁଷ୍ୟକୁ ଖାଇଯାଏ ଭାବି କୁମ୍ଭୀରଗୁଡ଼ିକୁ ମାରିପକାଇବା ଠିକ୍ ନୁହେଁ । ମନୁଷ୍ୟକୁ ଖାଇବା ଆଶଙ୍କା ଛଡ଼ା କେତେକ ଲୋକ ଏହାର ଅଣ୍ଡାଗୁଡ଼ିକୁ ଓ ଏହାର ମାଂସ ଲୋଭରେ ଶିକାର କରିବାକୁ ଆଗଭର ହୋଇଥାଆନ୍ତି । ଏପରିକି ଏହାର ଚମଡ଼ା ଆନ୍ତର୍ଜାତିକ

ବଜାରରେ ଚାହିଦାପୂର୍ଣ୍ଣ ହୋଇଥିବାରୁ ଆମ ଦେଶରୁ ଅନେକ ପରିମାଣରେ କୁମ୍ଭୀର ଚମଡ଼ା ଅନ୍ୟ ଦେଶକୁ ପ୍ରଚୁର ଅର୍ଥରେ ବିକ୍ରୟ କରାଯାଇଥାଏ । ତେଣୁ ମନୁଷ୍ୟ କେବଳ ଯେ କୁମ୍ଭୀରକୁ ଶତ୍ରୁ ମନେକରି ଶିକାର କରିଥାଏ ତାହା ନୁହେଁ ତାହା ଶରୀରର ସମସ୍ତ ଅଂଶ ଦରକାରରେ ଲାଗୁଥିବାରୁ ଅର୍ଥ ଲାଳସାରେ ତା'ର ବଂଶ ନିପାତ କରିବାରେ ଆଗେଇ ଯାଇଛି । ଏପରି କରିବା ଦ୍ୱାରା ପ୍ରକୃତି ତା'ର ପ୍ରାକୃତିକ ଭାରସାମ୍ୟ ହରାଇବ ।

## କୁମ୍ଭୀରର ପ୍ରକାର ଭେଦ

କୁମ୍ଭୀର ମୁଖ୍ୟତଃ ତିନି ପ୍ରକାର ଯଥା (୧) ମଗର ବା ଗୋମୁହାଁ (Mugger) (୨) ବଉଳା ବା ଲୁଣା କୁମ୍ଭୀର (Salties) (୩) ଘଡ଼ିଆଳ ବା ଥଣ୍ଟିଆ କୁମ୍ଭୀର (Gharial ବା Naka) । ଓଡ଼ିଶାରେ ଏ ତିନି ପ୍ରକାର କୁମ୍ଭୀର ଦେଖାଯାଉଥିବାରୁ ଓ ପ୍ରଜନନ ସମ୍ଭବ ହୋଇପାରିଥିବାରୁ ସମଗ୍ର ଭାରତବର୍ଷରେ ଏହା ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି ।

**(୧) ମଗର ବା ଗୋମୁହାଁ କୁମ୍ଭୀର (Mugger ବା Marsh Crocodile) :** ସାଧାରଣ ଲୋକମାନେ ଏହାକୁ ମଗରମାଛ ବୋଲି କହିଥାଆନ୍ତି ; ମାତ୍ର ଏହା ମାଛ ନୁହେଁ । ବୈଜ୍ଞାନିକ ଭାଷାରେ ଏହାର ନାମ (*Crocodilus palustris*) । ଏହା ଭାରତର ମଧୁରଜଳ କୁମ୍ଭୀରଭାବେ ଭଲଭାବରେ ଜଣାଶୁଣା । ରହିବାର ସ୍ଥାନ ହେଉଛି ଝରଣା, ନଦୀ, ନାଳ, ହ୍ରଦ ଓ ବିଭିନ୍ନ ପ୍ରକାର ଜଳାଶୟ ଆଦି । ଅନ୍ୟ ଦୁଇଜାତିର କୁମ୍ଭୀର ତୁଳନାରେ ଏହା ଛୋଟ । ଆକାରରେ ପ୍ରାୟ ଚାରିମିଟର ଓ ଓଜନ ୩୦୦ କି.ଗ୍ରା. । ଏହାର ଚର୍ମ ଖୁବ୍ ଖଦଖଦଡ଼ିଆ । ମାଛ ମୁଖ୍ୟ ହେଲେ ହେଁ ହରିଣ ଓ ବଣଘୁଷୁରି ବ୍ୟତୀତ ଜଳାଶୟ ନିକଟରେ ଦେଖାଯାଉଥିବା ମୃତ ପ୍ରାଣୀମାନଙ୍କୁ ମଧ୍ୟ ଏହା ବ୍ୟବହାର କରିଥାଏ । ସେମାନେ ଖରା ଖାଇବା ପାଇଁ ଓ ଜଳ ଉପରେ ଧୀରେ ଧୀରେ ଭାସିବା ପାଇଁ ଖୁବ୍ ଭଲପାଆନ୍ତି । ଡିସେମ୍ବର ମାସରେ ପୁରୁଷ ମଗର ପାଟି ଫକ୍ ଫକ୍ କରି ଖୁବ୍ ଜୋର୍‌ରେ ରଡ଼ି ଛାଡ଼ନ୍ତି । ଏହା ତାଙ୍କ ପ୍ରଜନନ ସମୟ । ସଙ୍ଗମର ଏକମାସ ପରେ ଅଣ୍ଡାଦେବା ଆରମ୍ଭ କରନ୍ତି । ଜଳାଶୟ ଧାରରେ ବସାବାନ୍ଧି ବା ବେଳେବେଳେ ପଛ ଗୋଡ଼ରେ ଖୋଳି ଗାତ ମଧ୍ୟରେ ୨୦-୩୦ଟି ଅଣ୍ଡା ଦେଇଥାଏ । ବେଳେବେଳେ ମଧ୍ୟ ଗୁଡ଼ିଏ ଗାତ ଖୋଳି ପକାଇଥାଏ । ଅଣ୍ଡାଗୁଡ଼ିକ କୁକୁଡ଼ା ଅଣ୍ଡା ଆକାରଠାରୁ ପ୍ରାୟ ତିନିଗୁଣ ବଡ଼ । ୭୦-୮୦ ଦିନ ପରେ ଅଣ୍ଡାଫୁଟି ଛୁଆ ବାହାରିଯାଏ । ଅଣ୍ଡାଦେବା ପରେ ମାଆ ପ୍ରାୟ ବସା ପାଖ ଜଗି ରୁହେ । ଏ ସମୟରେ ସେ ଭୀଷଣ ରାଗିଯାଏ । ପୁରୁଷ କୁମ୍ଭୀର ସ୍ତ୍ରୀ ସହ ମଧ୍ୟ ବସା ଜଗିବାରେ ସାହାଯ୍ୟ କରେ ।

ଧଳା ଅଣ୍ଡାଗୁଡ଼ିକ ଫୁଟିବା ଆରମ୍ଭ ହେଲେ ଉଭୟ ପୁରୁଷ ଓ ସ୍ତ୍ରୀ କୁମ୍ଭୀର ବସାକୁ ଖୋଲି ଛୁଆମାନଙ୍କର ଯତ୍ନ ନିଅନ୍ତି । ଫୁଟିବାର ଠିକ୍ ପୂର୍ବରୁ ଛୁଆ କୁମ୍ଭୀର ଅଣ୍ଡା ମଧରେ ଏକପ୍ରକାର ଶବ୍ଦ (ଅର୍କ, ଅର୍କ, ଅର୍କ) କରେ । ତାପରେ ହଠାତ୍ କିଚିରି ମିଚିରି ଶବ୍ଦଗୁଡ଼ିଏ ଛୁଆଙ୍କର ଶୁଣାଯାଏ । ଯେଉଁ ଅଣ୍ଡାଗୁଡ଼ିକ ଫୁଟି ନ ଥାଏ, ମାଆ ସେ ଅଣ୍ଡାଗୁଡ଼ିକୁ ମୁହଁରେ ଫୁଟାଇଥାଏ । ଅନେକ ଲୋକ ଏ ମୁହଁରେ ଫୁଟାଇବା ଦେଖି ମାଆ ଛୁଆକୁ ଖାଇଯାଏ ବୋଲି ଭୁଲରେ କହିଥାଆନ୍ତି । ଏମାନେ କିଛି ମାସ ପାଇଁ ମାଆ ବା ଉଭୟଙ୍କ ପାଖରେ କଟାନ୍ତି । ପ୍ରାୟ ୩୫ ସେ.ମି. ଆକାରର ହେଲେ ନିଜେ ନିଜେ ବୁଲାଚଲା କରନ୍ତି । ଛୁଆଗୁଡ଼ିକ ୫-୭ ବର୍ଷ ହୋଇଗଲେ ସେମାନେ ମଧ ମାଆପରି ଅଣ୍ଡାଦେବା ଆରମ୍ଭ କରନ୍ତି ।

ଏମାନଙ୍କ ସଂଖ୍ୟା ଓଡ଼ିଶାରୁ ଯଥେଷ୍ଟ କମିଯାଇଥିଲା । ଖୁବ୍ କ୍ୱଚିତ୍ ବାଲିମେଳା ଓ ଅନ୍ୟ କେତେକ ସ୍ଥାନରେ ଦେଖାଯାଉଥିଲେ । ତେଣୁ ମୟୂରଭଞ୍ଜ ଜିଲ୍ଲାର ରାମତୀର୍ଥ (ଯଶୀପୁର) ଠାରେ ଏପ୍ରକାର କୁମ୍ଭୀର ଗବେଷଣା କେନ୍ଦ୍ର (Mugger Research Centre) ସ୍ଥାପିତ ହୋଇଛି । ଏମାନେ ଆବଦ୍ଧ ଅବସ୍ଥାରେ ଅଣ୍ଡା ଦେଇଛନ୍ତି ଓ ସଂଖ୍ୟା ଅଧିକ ହେବାରୁ ଶିମିଳପାଳର ବୁଢ଼ାବଳଙ୍ଗ ନଦୀରେ ଛଡ଼ାଯାଇଛି । ଆଶା କରାଯାଉଛି ଯେ ନଦୀରେ ଏମାନଙ୍କ ସଂଖ୍ୟା ମଧ ଅଧିକ ହେବ ।

**(୨) ବଉଳା ବା ଲୁଣା କୁମ୍ଭୀର (Salt-water Crocodile) Salties) :** ବଉଳା ଜାତୀୟ କୁମ୍ଭୀର ଲୁଣା ପାଣିରେ ଦେଖାଯାଉଥିବାରୁ ସେମାନଙ୍କୁ ଲୁଣା କୁମ୍ଭୀର (Salty) ବୋଲି କୁହାଯାଏ । ବୈଜ୍ଞାନିକ ଭାଷାରେ ଏହାର ନାମ (*Crocodylus porosus*) । ତିନି ଜାତିର କୁମ୍ଭୀର ମଧରେ ଏମାନେ ସବୁଠାରୁ ବଡ଼ । ସେଥିପାଇଁ ଏମାନେ "କୁମ୍ଭୀର ରାଜା" (King of the crocodiles) ଭାବରେ ଅଭିହିତ । ତା ବ୍ୟତୀତ ଏମାନେ ଅନେକ ସମୟରେ ଲୋକଙ୍କୁ ଖାଇଯିବାର ଦେଖାଯାଏ ବୋଲି ଏମାନଙ୍କୁ "ମଣିଷଖିଆ କୁମ୍ଭୀର" କୁହାଯାଏ । ଏ କୁମ୍ଭୀରଗୁଡ଼ିକ ବର୍ତ୍ତମାନ ଭିତରକନିକା ଅଭୟାରଣ୍ୟର ଜଳଭାଗ ଓ ଲୁଣାଜଙ୍ଗଲ (Mangrove forest) ଅଞ୍ଚଳରେ ଦେଖିବାକୁ ମିଳନ୍ତି । କିନ୍ତୁ ପୂର୍ବରୁ ବ୍ରାହ୍ମଣୀ ଓ ବୈତରଣୀ ନଦୀରେ ବହୁ ସଂଖ୍ୟାରେ ଦେଖାଯାଉଥିଲେ । ବର୍ତ୍ତମାନ ଭାରତର ଆଣ୍ଡାମାନ ନିକୋବର, ଓଡ଼ିଶା ଓ ପଶ୍ଚିମବଙ୍ଗ ହେନ୍ତାଳବନରେ ହିଁ ଦେଖାଯାଉଛନ୍ତି ଏମାନେ ।

ଲୁଣା କୁମ୍ଭୀରର ଲମ୍ବରେ ସାତ ମିଟର ପର୍ଯ୍ୟନ୍ତ ଓ ଓଜନ ଏକହଜାର କି.ଗ୍ରା. ହୋଇପାରେ । ଏମାନେ କଙ୍କଡ଼ା, ମାଛ, ବେଙ୍ଗ ଓ ଅନ୍ୟାନ୍ୟ ଛୋଟ ଛୋଟ ପ୍ରାଣୀ ଆଦି ଖାଇଥାଆନ୍ତି । ହାବୁଡ଼ରେ ପଡ଼ିଲେ ହରିଣ ଓ ବଡ଼ପ୍ରାଣୀ ଶିକାର କରନ୍ତି । ଅନ୍ୟ

କୁମ୍ଭୀରମାନଙ୍କ ପରି ଏମାନଙ୍କ ପ୍ରଜନନ ସମାନ । କିନ୍ତୁ ଲୁଣା କୁମ୍ଭୀର ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ (Territorial) ରହିବାକୁ ଭଲପାଏ । ପ୍ରଜନନ ସମୟରେ ବଡ଼ ବଡ଼ ପୁରୁଷ ଓ ସ୍ତ୍ରୀ କୁମ୍ଭୀରମାନଙ୍କଠାରୁ ଛୋଟ ଛୋଟ ପୁରୁଷ କୁମ୍ଭୀରଗୁଡ଼ିକ ଅନେକ ଦୂରରେ ରହିବାକୁ ପଡ଼େ । ନଚେତ୍ ସେମାନଙ୍କୁ ବଡ଼ କୁମ୍ଭୀର ଖାଇଯିବେ ।

ଲୁଣା କୁମ୍ଭୀରର ବସା ତିଆରି ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ । ମଗର ସ୍ତ୍ରୀ କୁମ୍ଭୀର ହିଁ ପତ୍ର ଓ କାଠି ଇତ୍ୟାଦି ସଂଗ୍ରହ କରି କୁଦଆକାର କରି ବସା ତିଆରି କରେ । ଏଥିରେ ସେ ଉପର ମୁଣ୍ଡରେ ଗୋଟିଏ ଗାତ କରି ୫୦ରୁ ୮୦ ଟି ଅଣ୍ଡା ଦିଏ । ବସାଟି ଜଳାଶୟ ନିକଟରେ ଥିଲେ ଜଳଭାଗରେ ରହି ସେ ଜଗିରୁହେ । କିନ୍ତୁ ଲୁଣାକୁମ୍ଭୀରର ଅଣ୍ଡାଦେବା ବ୍ୟବହାର ମଗରଠାରୁ ଭିନ୍ନ । ନଦୀର ମଧୁରଜଳ ଓ ସାଗରର ଲୁଣା ଜଳରେ ମିଳନ ସ୍ଥାନ ଅର୍ଥାତ୍ ହେନ୍ତାଳବନର ଧାରରେ ଅଣ୍ଡା ଦେଇଥାଏ । ଏହି ସ୍ଥାନରେ ଚୁଆପରି ଏକ ଛୋଟ ଗାତ ଖୋଳି ସେଠାରେ ଅଣ୍ଡାଦିଏ । ସାଗର ନଦୀଜଳ ଯିବାଆସିବା ଦ୍ୱାରା ଗାତଟି ପୂର୍ଣ୍ଣ ହୋଇଥାଏ । ଲୁଣା କୁମ୍ଭୀର ସେଠାରେ ଅଣ୍ଡାଦେଇ ତା ଉପରେ ପଡ଼ି ରୁହେ । ସେ ସ୍ଥାନ ଛାଡ଼ି କେଉଁଆଡ଼େ ଯାଏ ନାହିଁ ।

ଏହାର ସଂରକ୍ଷଣ ଓ ବଂଶବୃଦ୍ଧି ଭିତରକନିକା ଅଭୟାରଣ୍ୟର ଡାଙ୍ଗମାଳ ନାମକ ସ୍ଥାନରେ କୁମ୍ଭୀର ପ୍ରକଳ୍ପ ଜରିଆରେ କାର୍ଯ୍ୟକାରୀ କରାଯାଇଛି । ଏଠାରେ କୁମ୍ଭୀର ପାଳନ କରାଯାଇ ପ୍ରଜନନ ଘଟାଇ ଛୁଆମାନଙ୍କୁ ଭିତରକନିକାର ନଦୀ ଓ ନାଳମାନଙ୍କରେ ଛଡ଼ାଯାଉଛି । ଏଠାରେ ମଧ୍ୟ ବିରାଟ ଧଳା ମାଈ କୁମ୍ଭୀର ରଖାଯାଇଛି । ଏହାର ନାମ ଶଙ୍ଖୁଆ । ଏହାକୁ ୧୯୮୫ ମସିହାଠାରୁ ଆବଦ୍ଧ ପରିବେଶରେ ରଖାଯାଇଛି । ବହୁକଷ୍ଟରେ ବହୁବର୍ଷ ପରେ ଏହା ମଧ୍ୟ ଅଣ୍ଡାଦେବା ଆରମ୍ଭ କରିଛି । ଓଡ଼ିଶାର ନନ୍ଦନକାନନ ଜୀବ ଉଦ୍ୟାନରେ ମଧ୍ୟ ଏ ଜାତିର କୁମ୍ଭୀରମାନଙ୍କ ଉପରେ ପ୍ରଜନନ ଓ ବଂଶବୃଦ୍ଧି ଦିଗରେ ଗବେଷଣା ଅବ୍ୟାହତ ରହିଛି ।

୩. **ଘଡ଼ିଆଳ ବା ଥଣ୍ଟିଆ କୁମ୍ଭୀର** (Gharial ବା Naka) : ଥଣ୍ଟିଆ କୁମ୍ଭୀରର ମୁହଁଟି ବହୁତ ଲମ୍ବା ହୋଇ ଥଣ୍ଟପରି ହୋଇଥିବାରୁ ତାକୁ ଏପରି କୁହାଯାଏ । ତା'ଛଡ଼ା ସେ ଥଣ୍ଟପରି ଆକାରରେ ଶେଷଭାଗରେ କେବଳ ପୁରୁଷ ଥଣ୍ଟିଆଠାରେ ଘଡ଼ିପରି ଏକ ଆକୃତି ଥିବାରୁ ଏପରି ''ଘଡ଼ିଆଳ'' ନାମକରଣ କରାଯାଇଛି । କେବଳ ଏହି ଜାତୀୟ କୁମ୍ଭୀରରେ ପୁରୁଷ ଓ ସ୍ତ୍ରୀ ମଧ୍ୟରେ ପ୍ରଭେଦ ଏହି ଘଡ଼ିରୁ ହିଁ ଜଣାପଡ଼ିଯାଏ । ଲମ୍ବରେ ପ୍ରାୟ ପାଞ୍ଚମିଟର । ଲମ୍ବ ଅଣଓସାରିଆ, ଥଣ୍ଟଟି ତୀକ୍ଷ୍ଣ ଦାନ୍ତରେ ପୂର୍ଣ୍ଣ । ସେଥିପାଇଁ ଘଡ଼ିଆଳ ସହଜରେ ମାଛ ଶିକାର କରିପାରେ ଓ ଶିକାର ହିଁ ମୁହଁରୁ ମଧ୍ୟ ସହଜରେ ଖସିଯାଇପାରେ ନାହିଁ । ଘଡ଼ିଆଳ ଶରୀର ଚିକ୍‌କଣ ଓ ସରୁ । ପ୍ରାୟ

ସବୁବେଳେ ପାଣି ମଧ୍ୟରେ ରୁହେ । ବେଳେବେଳେ ଅର୍ଥାତ୍ କ୍ୱଚିତ୍ ଖରାପୋଇଁବା ପାଇଁ ଓ ଅଣ୍ଡାଦେବା ସମୟରେ ହିଁ ଜଳରୁ ସ୍ଥଳଭାଗକୁ ଚାଲିଆସେ । ମଗର ପରି ଏମାନେ ସ୍ଥଳଭାଗରେ ଚାଲନ୍ତି ନାହିଁ । ଗଭୀରଜଳରେ ରହିବା ଏମାନଙ୍କ ଅଭ୍ୟାସ । ଭାରତରେ ଦେଖାଯାଉଥିବା ଘଡ଼ିଆଳର ବୈଜ୍ଞାନିକ ନାମ *Gavialis gangeticus* ।

ଭାରତର ଗଙ୍ଗାନଦୀ, ବର୍ମା ଓ ମାଲେୟେସିଆ ଆଦି ସ୍ଥାନମାନଙ୍କରେ ଘଡ଼ିଆଳ ଦେଖାଯାଆନ୍ତି । ଓଡ଼ିଶାର ଅନୁଗୁଳ ଜିଲ୍ଲାର ଟିକରପଡ଼ାରେ ଓ ମହାନଦୀର ସାତକୋଶିଆ ଗଣ୍ଡରେ ମଧ ଦେଖାଯାଆନ୍ତି । ଥଣ୍ଟର ଶେଷ ଭାଗରେ ଥିବା ନାସାରନ୍ଧ୍ର (Nostril) ଉପର ଭାଗରେ ଘଡ଼ିପରି ଆକାର ଥିବାରୁ ଘଡ଼ିଆଳ ପବନ ଛାଡ଼ିବା ବେଳେ ଖୁବ୍ ଜୋର୍‌ରେ ଶବ୍ଦ ହୋଇଥାଏ । ଜଣାଯାଇଛି ଯେ ସ୍ତ୍ରୀ ଘଡ଼ିଆଳକୁ ଜଣାଇବା ବା ଆକର୍ଷଣ କରିବା ତଥା ଅନ୍ୟ ପୁରୁଷ ଘଡ଼ିଆଳକୁ ଦୂରରେ ରହିବା ପାଇଁ ଏ ଶବ୍ଦ ପ୍ରୟୋଗ ହୋଇଥାଏ । ଘଡ଼ିଆଳ କୁମ୍ଭୀରମାନଙ୍କ ମଧ୍ୟରେ ଭଦ୍ର ବା ଧୀରସ୍ଥିର ହେଲେ ହେଁ ପ୍ରଜନନ ସମୟରେ ହିଁ ପୁରୁଷ ଘଡ଼ିଆଳମାନଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ହୋଇଥାଏ ।

ସ୍ତ୍ରୀ ଘଡ଼ିଆଳ ଅତି ଯତ୍ନ ସହକାରେ ଓ ଭୟଙ୍କର ରୂପଧରି ନିଜ ବସାକୁ ପ୍ରତିରକ୍ଷା କରେ । ସ୍ତ୍ରୀ ଘଡ଼ିଆଳ ମାର୍ଚ୍ଚ ବା ଏପ୍ରିଲ୍ ମାସରେ ବଡ଼ ବଡ଼ ନଦୀ ପଠା ବା ବାଲୁକାକୂଳରେ ୪୦ ରୁ ୮୦ଟି ଅଣ୍ଡା ଦେଇଥାଏ । ଏମାନେ ମୁଖ୍ୟତଃ ଓଡ଼ିଶାର ମହାନଦୀ ରାଜସ୍ଥାନର ଚମ୍ବଲ, ମଧ୍ୟପ୍ରଦେଶ ତଥା ଗଙ୍ଗା ଓ ଯମୁନା ନଦୀର ଅନେକ ଉପନଦୀଗୁଡ଼ିକରେ ଅଣ୍ଡାଦେବାର ଦେଖାଯାଏ । ପ୍ରାୟ ୭୦ ଦିନ ବାଲିରେ ଉଷ୍ମମା ହେବା ପରେ ଛୁଆ ଫୁଟି ବାହାରନ୍ତି । ଫୁଟିବା ସମୟ ଆସିଲେ ଛୁଆମାନେ ଅଣ୍ଡା ମଧ୍ୟରେ ରହି ଏକପ୍ରକାର ରଡ଼ି ଛାଡ଼ନ୍ତି । ଏ ରଡ଼ି ମାଆ ଜାଣିପାରି ବାଲିକୁ ଖୋଳିବା ଆରମ୍ଭ କରେ । ତା'ପରେ ମାଆସହ ଜଳଭାଗକୁ ସେମାନେ ଚାଲିଯାଆନ୍ତି ଓ ଅନ୍ୟ କୁମ୍ଭୀରମାନଙ୍କ ପରି ମାଆଠାରୁ ଖାଇବା ଶିକ୍ଷା କରନ୍ତି ।

## ଓଡ଼ିଶାରେ କୁମ୍ଭୀର ପ୍ରକଳ୍ପ ଓ ସଂରକ୍ଷଣ

କୁମ୍ଭୀରମାନଙ୍କ ସଂଖ୍ୟା ଯଥେଷ୍ଟ ପରିମାଣରେ ହ୍ରାସ ପାଇଯିବାରୁ ସେମାନଙ୍କର ଯତ୍ନ ଓ ସଂରକ୍ଷଣ ନିମିତ୍ତ ୧୯୭୫ ମସିହାରେ ଜାତିସଂଘର ଖାଦ୍ୟ ଓ କୃଷି ସଙ୍ଗଠନ (Food and Agriculture Organisation of United Nations) କୁମ୍ଭୀର ପ୍ରକଳ୍ପ (Project Crocodile) ଆରମ୍ଭ କଲେ । ଏ ପ୍ରକଳ୍ପର ଉଦ୍ଦେଶ୍ୟ ଥିଲା ଭାରତରେ ଦେଖାଯାଉଥିବା ତିନିପ୍ରକାର କୁମ୍ଭୀରଗୁଡ଼ିକୁ ଧ୍ୱଂସ ମୁଖରୁ ରକ୍ଷା କରିବା । ସେହି ୧୯୭୫ ମସିହାରେ ଓଡ଼ିଶାରେ କୁମ୍ଭୀରମାନଙ୍କର ସଂରକ୍ଷଣ ଓ ବଂଶବୃଦ୍ଧି ତଥା ବଂଶରକ୍ଷା ନିମିତ୍ତ ଓଡ଼ିଶା ସରକାରଙ୍କ ବନ ବିଭାଗ ଭାରତ ସରକାରଙ୍କ ସହାୟତାରେ

ଏକ ଯୋଜନା ପ୍ରଣୟନ କଲେ । ସେହିଦିନଠାରୁ ସଫଳତାର ସହ ଏ କାର୍ଯ୍ୟକ୍ରମ ଆଗେଇ ଚାଲିଛି ।

ଏ ପ୍ରକଳ୍ପ ମାଧ୍ୟମରେ କୁମ୍ଭୀରମାନଙ୍କର ଅଣ୍ଡାଗୁଡ଼ିକୁ ସଂଗ୍ରହ କରାଯାଇ ସେଗୁଡ଼ିକୁ ଫୁଟାଇ ଛୁଆ ବାହାର କରାଯାଉଛି । ସେମାନଙ୍କୁ ଉପଯୁକ୍ତ ଭାବେ ଲାଳନ ପାଳନ କରି ବିଭିନ୍ନ ଜଳାଶୟରେ ଛାଡ଼ି ଦିଆଯାଉଛି । ଏହିପରି ଭାବରେ ବିଭିନ୍ନ କିସମର କୁମ୍ଭୀରମାନଙ୍କୁ ସେମାନଙ୍କ ପ୍ରିୟ ଜଳଭାଗଗୁଡ଼ିକରେ ଛାଡ଼ିବା ଫଳରେ ପ୍ରଜନନ ଓ ସଂଖ୍ୟା ବୃଦ୍ଧି ପାଇପାରୁଛି । ଦେଖାଯାଇଛି ଏପରି ପ୍ରକଳ୍ପ ଦ୍ୱାରା କୁମ୍ଭୀରମାନଙ୍କର ସଂଖ୍ୟାରେ ଯଥେଷ୍ଟ ଉନ୍ନତି ପରିଲକ୍ଷିତ ହୋଇଛି ।

## ଓଡ଼ିଶାର ନନ୍ଦନକାନନ ଓ କୁମ୍ଭୀର ଗବେଷଣା

ଓଡ଼ିଶାରେ ତିନିଜାତିର କୁମ୍ଭୀର ଦେଖାଯାଉଥିବାରୁ ଓ ସେମାନଙ୍କ ସଂଖ୍ୟାରେ ଆଶାନୁରୂପ ଉନ୍ନତି ଘଟିଥିବାରୁ ଓଡ଼ିଶା କୁମ୍ଭୀରମାନଙ୍କ ପାଇଁ ଭାରତରେ ଏକ ଶୀର୍ଷସ୍ଥାନ ଅଧିକାର କରିଛି । ଏ ତିନି ପ୍ରକାର କୁମ୍ଭୀରର ସଂରକ୍ଷଣ ଓ ଗବେଷଣା କାର୍ଯ୍ୟ ଆମ ରାଜ୍ୟ ପ୍ରାଣୀ ଉଦ୍ୟାନ (Zoological Park) ନନ୍ଦନକାନନରେ ସଫଳରୂପେ ସମ୍ଭବ ହୋଇପାରିଛି । କୁମ୍ଭୀରଗୁଡ଼ିକୁ ଆବଦ୍ଧ ଅବସ୍ଥାରେ ରଖାଯାଇ ସେମାନଙ୍କ ପ୍ରଜନନ ସଫଳ ରୂପେ କରାଯାଇପାରୁଛି । ଘଡ଼ିଆଳ ଯୋଜନା ହିଁ ଓଡ଼ିଶା ତଥା ଭାରତର ପ୍ରଥମ କୁମ୍ଭୀର ଯୋଜନା । ଏହି ଯୋଜନା ୧୯୭୫ ମସିହାରେ ଅନୁଗୁଳର ଟିକରପଡ଼ାରେ ଆରମ୍ଭ ହୋଇ ସଫଳ ହୋଇପାରିଛି । ୧୯୮୦ ମସିହାରେ ଏ ଘଡ଼ିଆଳଗୁଡ଼ିକର ପ୍ରଜନନ ଆବଦ୍ଧ ଅବସ୍ଥାରେ (Captive Breeding) ସମ୍ଭବ ହୋଇପାରି ବିଶ୍ୱରେ ଚହଳ ସୃଷ୍ଟି କରିଥିଲା । ଏହା ପୂର୍ବରୁ ଘଡ଼ିଆଳ ଆବଦ୍ଧ ଅବସ୍ଥାରେ ପୃଥିବୀର କୌଣସି ସ୍ଥାନରେ ଅଣ୍ଡାଦେବା ସମ୍ଭବ ହୋଇ ନ ଥିଲା । ପ୍ରଥମ ଥର ପାଇଁ ପଶ୍ଚିମ ଜର୍ମାନର ଫ୍ରାଙ୍କଫୁଟ୍ ଚିଡ଼ିଆଖାନାରୁ ଏକ ପୁରୁଷ ଘଡ଼ିଆଳ ଆଣି ପ୍ରଜନନ ଘଟାଇ କୃତକାର୍ଯ୍ୟ ହେବା ଓଡ଼ିଶା ପକ୍ଷରେ ଏକ ସଫଳ ପଦକ୍ଷେପ ।

ଘଡ଼ିଆଳ ବର୍ତ୍ତମାନ ନନ୍ଦନକାନନରେ ବହୁ ସଂଖ୍ୟାରେ ଦେଖିବାକୁ ମିଳେ । ଏହା ଛଡ଼ା ନନ୍ଦନକାନନରେ ବଉଳା କୁମ୍ଭୀର ଓ ମଗର କୁମ୍ଭୀର ପ୍ରଜନନ ମଧ୍ୟ ସଫଳତା ସହ କରାଯାଇପାରିଛି । ଆଉ ଏକ ଗର୍ବର ବିଷୟ ହେଉଛି ଭିତରକନିକାର ହେନ୍ତାଳ ବନରେ ଲୁଣିପାଣି କୁମ୍ଭୀର ଯୋଜନାଟି ଭାରତର ସର୍ବବୃହତ୍ତମ କୁମ୍ଭୀର ସଂରକ୍ଷଣ ଯୋଜନା । ମୟୂରଭଞ୍ଜର ଯଶୀପୁରଠାରେ ମଗର ଗବେଷଣା କେନ୍ଦ୍ର ଥିଲେ ହେଁ ଭାରତର ଅନ୍ୟାନ୍ୟ ରାଜ୍ୟ ତୁଳନାରେ ତାମିଲନାଡୁରେ ମଗର କୁମ୍ଭୀର ସର୍ବାଧିକ । ତେଣୁ ମଗର ସଂଖ୍ୟା ବଢ଼ାଇବା ଦିଗରେ ଆହୁରି ଉପଯୁକ୍ତ ପଦକ୍ଷେପ ଆଶା କରାଯାଏ ।

## କୁମ୍ଭୀର ଚାଷ ଓ ସେମାନଙ୍କ ଭବିଷ୍ୟତ

ମନୁଷ୍ୟ ଅନେକ ପ୍ରକାର ପକ୍ଷୀ ଓ ସ୍ତନ୍ୟପାୟୀ ପ୍ରାଣୀମାନଙ୍କୁ ଗୃହପାଳିତ ପ୍ରାଣୀ ହିସାବରେ ରଖିଆସିଛି । ସେମାନଙ୍କୁ ବିଭିନ୍ନ ପ୍ରଜନନ ମାଧ୍ୟମରେ ନୂତନ କିସମର ପ୍ରାଣୀ ଉତ୍ପାଦନ କରିପାରିଛି । ବ୍ରଏଲର କୁକୁଡ଼ା (Broiler Chicken), ବିଭିନ୍ନ ପ୍ରକାର କୁକୁର ଓ ଠେକୁଆ ଆଦି ସମ୍ଭବ ହୋଇପାରିଛି ଓ ସେମାନଙ୍କଠାରୁ ମଧ୍ୟ ବିଭିନ୍ନ ଉପକାର ପାଇପାରିଛି ; କିନ୍ତୁ କୁମ୍ଭୀରକୁ କରିପାରି ନାହିଁ । ଅଷ୍ଟ୍ରେଲିଆ ଓ ଆମେରିକାରେ ଅନେକ ଚାଷୀ କୁମ୍ଭୀରମାଂସ, ଅଣ୍ଡା ଓ ଚର୍ମ ଉଦ୍ଦେଶ୍ୟରେ ଯଥେଷ୍ଟ ସଂଖ୍ୟାରେ ପ୍ରଜନନ କରାଉଛନ୍ତି । ସେ ଦିଗରେ ଆମେ ପଛରେ ନ ପଡ଼ିଲେ ମଧ୍ୟ କୁମ୍ଭୀର ଚାଷ (Crocodile Farming) ଦିଗରେ ଉପଯୁକ୍ତ ଧ୍ୟାନ ଦିଆଯିବା ବାଞ୍ଛନୀୟ । ଏହା ଦ୍ୱାରା ଆମର ଅର୍ଥନୈତିକ ପ୍ରଗତି ଘଟିବା ସହ ବେକାର ସମସ୍ୟା ମଧ୍ୟ ଏ ଦିଗରେ ସମାଧାନ ହୋଇପାରିବ ।

ସୁସ୍ଥ ପରିବେଶ ପାଇଁ ପରିବେଶରେ ବିଭିନ୍ନ ପ୍ରକାର ପ୍ରାଣୀ ଓ ଉଦ୍ଭିଦ ରହିବା ଯେପରି ଉଚିତ ଠିକ୍ ସେପରି କୁମ୍ଭୀରମାନେ ଆମ ପରିବେଶରେ ଅଛନ୍ତି ସତ; ମାତ୍ର ସେମାନଙ୍କୁ ଯେପରି ଭାବରେ ଶିକାର କରାଯାଉଛି ସେ ଦିଗରେ ଧ୍ୟାନ ଦିଆନଗଲେ ୧୯୭୫ ମସିହା ପରି ସମସ୍ୟା ହୁଏତ ଦେଖାଯାଇପାରେ । ଲୋକମାନଙ୍କ ମତରେ କୁମ୍ଭୀରମାନଙ୍କ ସମ୍ପର୍କରେ ସଚେତନତା ସୃଷ୍ଟି କରି ସେମାନଙ୍କର ସଂରକ୍ଷଣ ଦିଗରେ ସତର୍କ କରାଇବା ଆବଶ୍ୟକ । ତା' ବ୍ୟତୀତ ବିଭିନ୍ନ ସ୍ଥାନରେ ବିଭିନ୍ନ ପ୍ରକଳ୍ପ ତଥା ବେସରକାରୀ ସଙ୍ଗଠନ (NGO) ଗୁଡ଼ିକ କୁମ୍ଭୀରଚାଷ ପ୍ରତି ଆଲୋକପାତ କଲେ ହୁଏତ ଏମାନଙ୍କର ସଂଖ୍ୟା ବଢ଼ିବା ସହ ଆମ ରାଜ୍ୟର ଅନେକ ସମସ୍ୟା ସମାଧାନ ହୋଇପାରିବ । ସୁତରାଂ ଜନସଚେତନତା ସହ ଗବେଷଣାକୁ ତ୍ୱରାନ୍ୱିତ କରି କୁମ୍ଭୀର ଚାଷ ପାଇଁ ପଦକ୍ଷେପ ନେବା ବର୍ତ୍ତମାନ ହିଁ ପ୍ରକୃଷ୍ଟ ସମୟ । ଗବେଷଣା ଦିଗରେ ଏ ତିନିଜାତି କୁମ୍ଭୀର ସଂରକ୍ଷଣରେ ଆମ ରାଜ୍ୟ ସଫଳତା ହାସଲ କରିଛି । କୁମ୍ଭୀର ଚାଷ କରିବାରେ ହୁଏତ କିଛି ଅସୁବିଧା ବିଶେଷ ନାହିଁ । ଏ ଦିଗରେ ସୁଚିନ୍ତିତ ଯୋଜନା ଓ ପ୍ରକଳ୍ପ ହିଁ ଆମ ରାଜ୍ୟର ସୁନାମ ଆଣିପାରିବ ।


କୁମ୍ଭୀରର ମାଛ ଖିଆ



# ଏକ ମୁଣ୍ଡଧାରୀ ଦୋମୁଣ୍ଡିଆ

## ସାପକୁ ଡର ସମସ୍ତଙ୍କର

ସାପ ଗୋଟିଏ ଏମିତି ପ୍ରାଣୀ ଯାହାକୁ ଦେଖିଲେ ବା ତା ନାଁ ଶୁଣିଲେ ପ୍ରାୟ ସମସ୍ତେ ଡରିଯାଆନ୍ତି । ତା'ର କାରଣ ମନୁଷ୍ୟର ଧାରଣା ଯେ ସାପ କାମୁଡ଼ିଲେ ଲୋକ ନିଶ୍ଚୟ ମରିଯାଏ । ଅବଶ୍ୟ ତାହା ସବୁବେଳେ ଠିକ୍ ନୁହେଁ । କାରଣ ଆମ ଚାରିପଟେ ଯେତେ ସାପ ଦେଖାଯାଆନ୍ତି,ସେମାନଙ୍କ ମଧ୍ୟରୁ ସମସ୍ତେ ବିଷଧର ନୁହନ୍ତି । ଅଳ୍ପ କେତେକ ସାପକୁ ବାଦ୍ ଦେଲେ



ଅଧିକାଂଶ ସାପ ବିଷହୀନ । ଅର୍ଥାତ୍ ସମୁଦ୍ର ସାପ, ଚିତି, ରଣା, ଗୋଖର, ଅହିରାଜ, ପ୍ରବାଳ, ଚନ୍ଦ୍ରବୋଡ଼ା, ଧୂଳିନାଗ ଓ ଗର୍ତ୍ତମସ୍ତକୀ ବୋଡ଼ା ଆଦି ସାପମାନେ ବିଷଧର । ଅନ୍ୟ ସାପମାନେ ବିଷହୀନ ।

## ବାଲିବୋଡ଼ା

ବିଷହୀନ ସାପ ମଧ୍ୟରୁ ଦୋମୁଣ୍ଡିଆ ସାପ ଗୋଟିଏ । ଏହାକୁ ହିନ୍ଦୀ ଭାଷାରେ ''ଦୋ ମୁହାଁ'' ବୋଲି କୁହାଯାଏ । ଏହା ବାଲିଆ ମାଟିରେ ଲୁଚି ରହିଥାଏ । ଫସଫସିଆ ନରମ ମାଟିରେ ତା'ଦେହ ରଙ୍ଗ ମିଶି ଯାଇଥାଏ । ସେଥିପାଇଁ ଇଂରାଜୀରେ ଏହାକୁ ''ସ୍ୟାଣ୍ଡ ବୋଆ'' ବା ବାଲିବୋଡ଼ା (Sand Boa) ବୋଲି କୁହାଯାଏ । ବର୍ଣ୍ଣ ଏହାର ଧୂସର । ଦେହସାରା ଗାଢ଼ ବାଦାମୀ ରଙ୍ଗର ଚିହ୍ନ ଏଣେତେଣେ ଦେଖାଯାଏ । ଚିହ୍ନଗୁଡ଼ିକର ପାର୍ଶ୍ୱ କଳା । ପେଟପାଖ ହାଲୁକା ହଳଦିଆ ଓ ବାହାର ପାର୍ଶ୍ୱକୁ ବାଦାମୀ ଦାଗସବୁ ଦେଖାଯାଏ । ଏହାକୁ ବୈଜ୍ଞାନିକ ଭାଷାରେ ଏରିକସ୍ କୋନିକସ୍ (*Eryx conicus*) ବୋଲି କୁହାଯାଏ ।

## ମୁଣ୍ଡ ଗୋଟିଏ

ଏହା ଭାରତର ଏକ ସାଧାରଣ ସାପ ଓ ପ୍ରାୟ ସବୁଆଡ଼େ ଦେଖିବାକୁ ମିଳେ । ଅନ୍ୟ ସବୁ ସାପ ପରି ଏହାର ମୁଣ୍ଡ ଓ ଲାଞ୍ଜ ଥାଏ । ଦେହସାରା କାତିରେ ପୂର୍ଣ୍ଣ । କିନ୍ତୁ ଏହାର ଲାଞ୍ଜ ଦେଖିଲେ ଏହା ଅନ୍ୟ ସାପମାନଙ୍କ ଠାରୁ ଅଲଗା ବୋଲି ଜାଣି ହୋଇଯାଏ । ପ୍ରତ୍ୟେକ ସାପର ମୁଣ୍ଡଭାଗ ଚଉଡ଼ା ହୋଇ ପଛପାଖକୁ ଅର୍ଥାତ୍ ଲାଞ୍ଜଭାଗ ସରୁ ହୋଇଥାଏ । କିନ୍ତୁ ଏହାର ଲାଞ୍ଜଟି ମୁଣ୍ଡା ଅର୍ଥାତ୍ ମୁଣ୍ଡପାଖଟି ଯେମିତି ଦେଖାଯାଏ ,ଲାଞ୍ଜ ପାଖଟି ଠିକ୍ ସେମିତି ଦେଖାଯାଏ । ହଠାତ୍ ଦେଖିଲେ ମୁଣ୍ଡ ଓ ଲାଞ୍ଜ ମଧରେ କିଛି ପାର୍ଥକ୍ୟ ଜଣାପଡ଼େ ନାହିଁ । ଆଉ ଗୋଟିଏ କଥା ହେଲା ମୁଣ୍ଡପାଖରେ ଥିବା ଆଖି ଦୁଇଟି ଏହାର ବହୁତ ଛୋଟ । ଏହା ଗତି କଲାବେଳେ ଆଗକୁ ଯିବା ସହ ସମୟ ସମୟରେ ମଧ ପଛକୁ ଗତି କରିବା ଦେଖାଯାଏ । ତେଣୁ ତା'ର ମୁଣ୍ଡ ବାସ୍ତବରେ କେଉଁଟି ଜାଣିବା କଷ୍ଟ ବୋଲି ଲୋକମାନେ ଭୁଲରେ ଏହାକୁ ''ଦୋମୁଣ୍ଡିଆ ସାପ'' ବୋଲି କହିଥାଆନ୍ତି । ମାତ୍ର ଏହା ଏକ ଅନ୍ଧବିଶ୍ୱାସ ବା ଭ୍ରାନ୍ତଧାରଣା । ଏହାର ଆଦୌ ଦୁଇଟି ମୁଣ୍ଡ ନ ଥାଏ । ଗୋଟିଏ ମୁଣ୍ଡ ଓ ଅନ୍ୟଟି ଲାଞ୍ଜ । ଏହାର ଆଗପଛ ଗତି ଓ ଦଛରା ଲାଞ୍ଜ ହିଁ ମନୁଷ୍ୟକୁ ଭ୍ରମରେ ପକାଇଥାଏ ।

## ବିଷହୀନ

ଏହା ଗୋଟିଏ ବିଷହୀନ ସାପ । ଏ ସାପ କାମୁଡିଲେ କୌଣସି କ୍ଷତି ହୁଏ ନାହିଁ । ବେଙ୍ଗ, ମୂଷା ଓ ଏଣ୍ଡୁଅ ଆଦି ପ୍ରାଣୀମାନେ ଏହାର ଖାଦ୍ୟ । ଏ ସାପ ଟିକିଏ ରାଗୀ ସାପ । ଟିକିଏ ଛୁଇଁଦେଲେ ବା ଶତ୍ରୁର ସନ୍ଧାନ ପାଇଲେ ଚୋଟ ମାରିବା ଆରମ୍ଭ କରେ । ଏରିକ୍ସ ଜନି *(Eryx johnii)* ବୋଲି ଆଉ ଗୋଟିଏ ସାପ ଭାରତରେ ବି ଦେଖାଯାଏ । କୋନିକ୍ସ ଅପେକ୍ଷା ଏ ସାପ ଟିକିଏ ଶାନ୍ତ ଧରଣର ଏବଂ କୋନିକ୍ସ ତୁଳନାରେ ଜନି ଲମ୍ବରେ ବହୁତ ବଡ଼ । ଏ ଦୋମୁଣ୍ଡିଆ ସାପର ପୁରୁଷ ଅପେକ୍ଷା ମାଈ ସାପ ଅଧିକ ଲମ୍ବ । ଅନ୍ୟ ସରୀସୃପ ପ୍ରାଣୀମାନଙ୍କ ପରି ଏମାନେ ଅଣ୍ଡାଦିଅନ୍ତି । ଅଣ୍ଡାଦେବା ସମୟ ହେଉଛି ଗ୍ରୀଷ୍ମକାଳ । ଅଣ୍ଡା ଫୁଟି ଛୁଆ ବାହାରିଲେ ଏହାର ଛୁଆ ଅଜଗର ଛୁଆ ପରି କେତେକଙ୍କୁ ଜଣାପଡ଼େ । ମାତ୍ର ଲାଞ୍ଜର ମୁଣ୍ଡା ଆକୃତି ଓ ମୁଣ୍ଡ ଉପରେ ଥିବା ଟିକିଟିକି କାତିରୁ ଏହା ଦୋମୁଣ୍ଡିଆ ସାପଛୁଆ ବୋଲି ଜଣାପଡ଼ିଯାଏ ।

ତେବେ ଯାହାହେଉ ଏ ଆମର ପରିବେଶର ଏକ ପ୍ରାଣୀ । ଏମାନେ ଆମର କ୍ଷତି କରିବା ପରିବର୍ତ୍ତେ ଉପକାରୀ । ପରିବେଶରୁ ଶସ୍ୟ ନଷ୍ଟ କରୁଥିବା ମୂଷାମାନଙ୍କ ପରି ପ୍ରାଣୀଙ୍କୁ ଖାଇ ଆମର ଶସ୍ୟ ରକ୍ଷା କରନ୍ତି । ତେଣୁ ଦୁଇ ମୁଣ୍ଡରେ କାମୁଡ଼ିବ ବୋଲି ଭାବି ଏମାନଙ୍କୁ ଭୁଲରେ ମାରିବା ଅନୁଚିତ । ଏମାନଙ୍କର ବଂଶରକ୍ଷା ହୋଇପାରିଲେ ଆମର ଶସ୍ୟ ରକ୍ଷା ଠିକ୍ ରୂପେ ହୋଇପାରିବ ।

●

# କି ସୁନ୍ଦର ଆମ ଫ୍ଲେମିଙ୍ଗୋ ସହର

## ଏକ ବିଚିତ୍ର ହଂସ

ଶୁଣିଲେ ହସ ଲାଗିବ, କିନ୍ତୁ କଥାଟି ସତ୍ୟ । ପୃଥିବୀର ବିଳାସମୟୀ ଦେଶ ଫ୍ରାନ୍‌ସ, ଗୋଲାପ ଫୁଲର ଦେଶ ବୁଲ୍‌ଗେରିଆ ଓ ଶ୍ୱେତହସ୍ତୀର ଦେଶ ଶ୍ୟାମ ପରି ଆମ ଭାରତର ଫ୍ଲେମିଙ୍ଗୋ ସହର ହେଉଛି ଗୁଜୁରାଟର କଚ୍ଛ ଉପକୂଳ । ଫ୍ଲେମିଙ୍ଗୋ ହେଉଛି ଏକ ପ୍ରକାର ଜଳଚର ପକ୍ଷୀ ଓ ହିନ୍ଦୀରେ ଏହାକୁ ''ବଗହଂସ'' ବୋଲି କୁହାଯାଏ । କାରଣ ଏହା ଦେଖିବାକୁ ପ୍ରାୟ ବତକ ବା ହଂସ ପରି । ଏହାର ବୈଜ୍ଞାନିକ ନାମ ହେଉଛି (*Phoenicopterus roseus*) ।

## ଫ୍ଲେମିଙ୍ଗୋର ବିସ୍ତୃତି

ଫ୍ଲେମିଙ୍ଗୋ ଭାରତ, ପାକିସ୍ଥାନ, ଶ୍ରୀଲଙ୍କା, ଫ୍ରାନ୍‌ସ, ଆଫ୍ରିକା ଓ ସ୍ପେନ ଇତ୍ୟାଦି ସ୍ଥାନଗୁଡ଼ିକରେ ଦେଖାଯାଏ । ଯଦିଚ ଆମ ଦେଶର ସବୁ ସ୍ଥାନରେ ଏମାନେ ଦେଖାଯାଆନ୍ତି, ସଂଖ୍ୟାଧିକ ମାତ୍ରାରେ ଦୃଷ୍ଟିଗୋଚର ହୁଅନ୍ତି ଭାରତର କଚ୍ଛ ଉପକୂଳରେ । ଦେଖାଯାଇଛି ପ୍ରାୟ ଅଧଲକ୍ଷରୁ ଅଧିକ ସଂଖ୍ୟାରେ ଏମାନଙ୍କର ବିସ୍ତୃତି ଏହି ସ୍ଥାନରେ । ପୃଥିବୀର ଅନ୍ୟ କୌଣସି ସ୍ଥାନରେ ଏତେ ସଂଖ୍ୟାରେ ଏମାନେ ଦେଖାଯିବାର ଜଣାଯାଇ ନାହିଁ । ତେଣୁ କଚ୍ଛ ଉପକୂଳକୁ 'ଫ୍ଲେମିଙ୍ଗୋ ସହର' ବୋଲି ନାମିତ କରାଯାଇଛି ।

## ଫ୍ଲେମିଙ୍ଗୋର ଅଭ୍ୟାସ ଓ ଖାଦ୍ୟ

ଏମାନଙ୍କର ଅଭ୍ୟାସ ହେଉଛି ଦଳଗତ (Flocks) ସମାବେଶ । ଯେଉଁ ସ୍ଥାନରେ ବି ଦେଖାଗଲେ ଆଖିରେ ପଡ଼ିବ ଦଳ ଦଳ, ଏପରିକି ଦଳଗତ ଭାବେ ଉଡ଼ିବା ବି ଏମାନଙ୍କର ଲକ୍ଷଣ । ମୁଖ୍ୟତଃ ଅଗଭୀର ଜଳଭାଗ, ହ୍ରଦ, ପୋଖରୀ, ଗଡ଼ିଆ ତଥା ଅଳ୍ପ ସାମୁଦ୍ରିକ ସ୍ରୋତ ବା କୁଆରିଆ ସ୍ଥାନମାନ ଏମାନଙ୍କର ପ୍ରିୟ । ଜଳଭାଗରୁ ପୋକ, ଲାର୍ଭା, ଛୋଟ ଛୋଟ ଗେଣ୍ଡା, ଶାମୁକା ଓ ଚିଙ୍ଗୁଡ଼ି ଇତ୍ୟାଦି ସଂଗ୍ରହ କରି ଏମାନେ ଖାଇଥାଆନ୍ତି । ଉଡ଼ିବା ବ୍ୟତୀତ ପାଣିରେ ମଧ୍ୟ ଏମାନେ ପହଁରି ପାରନ୍ତି । ଖାଦ୍ୟ ସଂଗ୍ରହ ସମୟରେ ଲକ୍ଷ୍ୟହୀନ ଭାବରେ ଏଣେ ତେଣେ ବୁଲି ଖାଦ୍ୟ ସଂଗ୍ରହ କରନ୍ତି; ମାତ୍ର ଉଡ଼ିବା ବା ବିପଦ ସମୟ ଆସିଲେ ମୁଣ୍ଡକୁ ପ୍ରଥମେ ସମସ୍ତେ ଉପରକୁ

କରି ଚାହାନ୍ତି ଓ ତା'ପରେ ଉଡ଼ି ଚାଲିଯାଆନ୍ତି । ସତେ ଯେପରି ଜଣେ ନିର୍ଦ୍ଦେଶକ ସମସ୍ତଙ୍କୁ ନିର୍ଦ୍ଦେଶ ଦେଇ ଉଡ଼ିବାକୁ କହୁଛି ।

## ଫ୍ଲେମିଙ୍ଗୋର ଆକାର

ଦେଖିବାକୁ ଗୋଲାପୀ ଓ ଧଳା ରଙ୍ଗ ମିଶା । ଦକ୍ଷିଣ ଆମେରିକାର ଫ୍ଲେମିଙ୍ଗୋ ସବୁଠାରୁ ସୁନ୍ଦର, କାରଣ ପରଗୁଡ଼ିକ ଗାଢ଼ ଗୋଲାପୀ ବର୍ଣ୍ଣର । ଶରୀରଟି ସମ୍ପୂର୍ଣ୍ଣ ଧଳା ଓ ପାଦ ଗୋଲାପୀ ରଙ୍ଗର । ଉଚ୍ଚତା ପ୍ରାୟ ୧୨୦ ରୁ ୧୫୦ ସେ.ମି. । ଗୋଡ଼ଦୁଇଟି ବହୁତ ସରୁ ଓ ଲମ୍ବା ଲମ୍ବା । ସେଥିପାଇଁ ଏ ପକ୍ଷୀ ବେଶ୍ ଉଚ୍ଚା ବା ଡେଙ୍ଗା ଦେଖାଯାଏ । ଲାଞ୍ଜଟି ଛୋଟ, ଡେଣାଗୁଡ଼ିକ ଲମ୍ବ ଏବଂ ବେକଟି ଓଟପକ୍ଷୀର ବେକପରି ନ ହେଲେ ହେଁ ଇଂରାଜୀ ଅକ୍ଷର 'S' ପରି ବଙ୍କା । ମୁଣ୍ଡରେ ଥିବା ଥଣ୍ଟଟି ସାମାନ୍ୟ ବକ୍ର ଓ ଏଥିରେ କଳାରଙ୍ଗର ଚିହ୍ନ ସ୍ପଷ୍ଟ ଜଣା ପଡୁଥାଏ । ଥଣ୍ଟ ମଧ୍ୟରେ ଥିବାର ଜିଭଟି ଯଥେଷ୍ଟ ମାଂସଳ ଓ ଏହା ଖାଦ୍ୟ ନିର୍ଦ୍ଦେଶ କରିବାରେ ସହାୟକ ହୋଇଥାଏ । ପାଦଟି ହଂସ ବା ବତକର ପାଦପରି । ଆଙ୍ଗୁଳିଗୁଡ଼ିକ ଚର୍ମଯୁକ୍ତ, ଯାହାକି ଅନାୟାସରେ ପାଣିରେ ପହଁରିବାରେ ସାହାଯ୍ୟ କରିଥାଏ । ଏମାନଙ୍କର ଗୋଟିଏ ମୁଖ୍ୟ ବିଶେଷତ୍ୱ ହେଲା ଏମାନେ ଠିଆହେବା ସମୟରେ କେବଳ ଗୋଟିଏ ଗୋଡ଼ରେ ଠିଆହୋଇ ଥାଆନ୍ତି । ଠିକ୍ ବିଦ୍ୟାଳୟରେ ପିଲାମାନେ ବଦ୍‌ମାସ ହେଲେ ବା ପାଠ ନ କରିଲେ ଯେପରି ଏକ ଗୋଡ଼ିକିଆ ହୋଇ ଦଣ୍ଡ ପାଆନ୍ତି । ଲମ୍ବ ଲମ୍ବ ଗୋଡ଼ରେ ଏମାନେ ଚାଲିବା ସମୟରେ ମନେହୁଏ ରାଜକୀୟ ଠାଣିରେ ଗୋଲାପୀ ପୋଷାକ ପିନ୍ଧି ବଙ୍କୁଲି ବାଡ଼ି ଧରି କିଏ ଜଣେ ସତେ ଯେପରି ଆଗେଇ ଆସୁଛି !

## ବସା, ଅଣ୍ଡା ଓ ଛୁଆ

ଅନେକ ବୃକ୍ଷରେ ଏମାନେ ବସା ବାନ୍ଧିଥାନ୍ତି । ଏହାଛଡ଼ା ଫ୍ଲେମିଙ୍ଗୋ ମାଟି, କର୍ଦ୍ଦମ ଭୂମି ଓ ଅଳ୍ପ ଗଭୀର ଜଳଭାଗ ଇତ୍ୟାଦି ସ୍ଥାନମାନଙ୍କରେ ଅଣ୍ଡା ଦେଇଥାଆନ୍ତି । ଅଣ୍ଡାଦେବା ପୂର୍ବରୁ ଏମାନଙ୍କର ଏକତା ଦେଖିଲେ ବାସ୍ତବରେ ଆଶ୍ଚର୍ଯ୍ୟ ଲାଗେ । ସମସ୍ତେ ଏକତ୍ରିତ ହୋଇ ଛୋଟ ଛୋଟ ପଥର ଓ ମଲା ଶାମୁକା ଇତ୍ୟାଦିକୁ ନେଇ ଛୋଟ ପାହାଡ଼ ପରି କରି ଶେଷରେ ଏହାର ଉପରିଭାଗକୁ ମାଟି ବା କାଦୁଅରେ ସିମେଣ୍ଟ ଲଗାଇବା ପରି ଲଗାଇ ଦିଅନ୍ତି । ସ୍ତ୍ରୀ ଫ୍ଲେମିଙ୍ଗୋ ପ୍ରତ୍ୟେକ ବସାରେ ଗୋଟିଏ ଲେଖାଏଁ ଅଣ୍ଡା ଦେଇଥାଏ । ଅଣ୍ଡା ଦେଖିବାକୁ ଧଳା ଓ ଚିହ୍ନବିହୀନ । ଉଭୟ ସ୍ତ୍ରୀ ଓ ପୁରୁଷ ଅଣ୍ଡା ଉଷୁମାଇଥାନ୍ତି । ସ୍ତ୍ରୀ ଅଣ୍ଡା ଉଷୁମାଇବା ସମୟରେ ପୁରୁଷ ଖାଦ୍ୟ ପାଇଁ ଯାଇଥାଏ

ଓ ପୁରୁଷ ଅଣ୍ଡା ଉଷୁମାଇବା ବେଳେ ସ୍ତ୍ରୀ ତାର ଆହାର ଅନ୍ୱେଷଣରେ ଚାଲିଯାଏ । ଏହିପରି ଜଣକ ପରେ ଜଣେ କ୍ରମାଗତ ଭାବରେ ପାଳି କରି ୨୮ ଦିନ ଉଷୁମାଇବା ପରେ ଛୁଆ ବାହାରିଥାଏ । ପ୍ରଥମେ ଛୁଆଟି ଦେଖିବାକୁ ଧଳା ହୋଇଥାଏ ଓ କ୍ରମାଗତ ଏହାର ରଙ୍ଗରେ ପରିବର୍ତ୍ତନ ଆସିଥାଏ । ୫/୬ ଦିନ ପର୍ଯ୍ୟନ୍ତ ଛୁଆଟି ବସାରେ ରହିବା ପରେ ମାଆ ସହିତ ବୁଲାବୁଲି କରି ଖାଦ୍ୟ ସଂଗ୍ରହ କରେ । ଯେହେତୁ ଦଳଗତ ଭାବରେ ଏମାନେ ବୁଲାବୁଲି କରନ୍ତି, ଅନ୍ୟମାନେ ମଧ ଛୁଆକୁ ଚଞ୍ଚୁ ବା ଥଣ୍ଟ ଦ୍ୱାରା ଖାଦ୍ୟ ଖୁଆଇ ଦିଅନ୍ତି । ଜନ୍ମ ହେବାର ଅଢ଼େଇ ମାସ ପରେ ଛୁଆଗୁଡ଼ିକ ସମ୍ପୂର୍ଣ୍ଣ ରୂପେ ଉଡ଼ିବାକୁ ସକ୍ଷମ ହୋଇଥାଆନ୍ତି । ଏହା ପୂର୍ବରୁ ଡେଇଁବା ପରି ଉଡ଼ିଥାଆନ୍ତି । ଏହାକୁ କହନ୍ତି ଖଣ୍ଡିଉଡ଼ା ।

## ପରିବେଶର ଏକ ସୁନ୍ଦର ପକ୍ଷୀ

ଫ୍ଲେମିଙ୍ଗୋ ଏତେ ବଡ଼ ପକ୍ଷୀ ହେଲେ ହେଁ ମାଛରଙ୍କା ଓ ଛଞ୍ଚାଣ ଇତ୍ୟାଦି ମାଂସାଶୀ ପକ୍ଷୀମାନେ ଛୁଆକୁ ବସା ଭିତରକୁ ଝାମ୍ପି ନେଇଥାନ୍ତି । ତେଣୁ ଏମାନେ ହିଁ ଫ୍ଲେମିଙ୍ଗୋର ଶତ୍ରୁ । ଫ୍ଲେମିଙ୍ଗୋର ବହୁଳ ବିସ୍ତୃତି ଦେଖି ମନେହୁଏ ଯେ ଏମାନେ ଅନେକ ଦିନୁ ପୃଥିବୀରେ ସୃଷ୍ଟି ହୋଇଛନ୍ତି । ଏମାନଙ୍କର ସଂରକ୍ଷଣ ଅଭାବରୁ ବର୍ତ୍ତମାନ ବହୁଳ ଭାବରେ ଦୃଷ୍ଟିଗୋଚର ହେଉ ନାହାନ୍ତି । କଚ୍ଛଉପକୂଳ ଅବଶ୍ୟ ଯଥେଷ୍ଟ ଉତ୍ତମ ବାତାବରଣ ଯୋଗାଇଥିବାରୁ ଏମାନେ ବେଶ୍ ଭଲ ସଂଖ୍ୟାରେ ବଞ୍ଚି ରହିଛନ୍ତି । ତଥାପି ଗୋଲାପୀ ଧଳା ବିଶିଷ୍ଟ ପକ୍ଷୀମାନେ ବିଲୋପ ହେବାକୁ ବସିଲେଣି । ଯଦି ଏପରି ସ୍ଥାନଗୁଡ଼ିକୁ ପ୍ରତ୍ୟକ୍ଷ ଦୃଷ୍ଟି ଦିଆନଯାଏ, ତେବେ ଏମାନଙ୍କର ବଂଶରକ୍ଷା କଣ ସମ୍ଭବ ? ତେଣୁ ପ୍ରତ୍ୟେକ ପ୍ରକୃତିପ୍ରେମୀ, ଶିଳ୍ପୀ, କାରୀଗର ତଥା ନିବାସୀ ବିଲୋପ ପାଉଥିବା ଫ୍ଲେମିଙ୍ଗୋ ଗୁଡ଼ିକୁ ରକ୍ଷା କରିବା ଏକାନ୍ତ ବିଧେୟ । ତାହା ଯଦି ନ ହୁଏ ହୁଏତ ଆଉ କିଛି ଦିନ ପରେ ଆମେ ସମସ୍ତେ ଫ୍ଲେମିଙ୍ଗୋ ସହର ତଥା ଆମର ଏ ସୁନ୍ଦର ଫ୍ଲେମିଙ୍ଗୋ ପକ୍ଷୀକୁ ବି ଭୁଲିଯିବା । ତା ପୂର୍ବରୁ ସଂରକ୍ଷଣର ବ୍ୟବସ୍ଥା ବାଞ୍ଛନୀୟ ନୁହେଁ କି ??



# ସନ୍ତାନ ଯମଜ ଆମ ସମାଜ

## ଜୀବଜଗତ ଓ ପ୍ରଜନନ

କ୍ଷୁଦ୍ରାତିକ୍ଷୁଦ୍ର ଉଦ୍ଭିଦ ଠାରୁ ଆରମ୍ଭ କରି ମନୁଷ୍ୟ ପର୍ଯ୍ୟନ୍ତ ପ୍ରତ୍ୟେକ ଜୀବନ୍ତ ପ୍ରାଣୀ ବା ଉଦ୍ଭିଦର ଏକ ମୁଖ୍ୟ ଲକ୍ଷଣହିଁ ବଂଶବିସ୍ତାର କରିବା । ସୃଷ୍ଟିରେ ଏପରି କୌଣସି ଏକ ପ୍ରାଣୀ ବା ଉଦ୍ଭିଦ ନାହିଁ ଯେ କି ବଂଶ ବିସ୍ତାର ନ କରି ବଞ୍ଚିରହିଛି । ଅର୍ଥାତ୍ ଜୀବନ୍ତ ବସ୍ତୁଗୁଡ଼ିକର ଯେ କୌଣସି ଉପାୟରେ ବଂଶରକ୍ଷା କରିବା ହିଁ ଧର୍ମ ବା ଲକ୍ଷ୍ୟ । ସୃଷ୍ଟିର ଆରମ୍ଭରୁ ସୃଷ୍ଟ ଏକକୋଷୀ ପ୍ରାଣୀ ଏମିବା ଅମରଣଶୀଳ (Amoeba is immortal) ବୋଲି ପ୍ରାଣିବିଜ୍ଞାନବିତ୍‌ଙ୍କର ମତ । ତା'ର କାରଣ ଜୀବଟି ଖାଲି ଆଖିକୁ ଦୃଶ୍ୟ ନ ହେଲେ ବି ନିଜେ ନିଜେ ଦୁଇଭାଗ ହୋଇ ବଂଶବିସ୍ତାର କରିଥାଏ । ତେଣୁ ଏହା ସ୍ୱାଭାବିକ ଯେ ଏମିବାର ବଂଶ କଦାପି ଲୋପ ପାଇପାରିବ ନାହିଁ । ଜୀବଜଗତର ଜୀବଗୁଡ଼ିକ ବିଭିନ୍ନ ଉପାୟରେ ଅର୍ଥାତ୍ କିଏ ସମାନ ଦୁଇଖଣ୍ଡ ହୋଇ (Amoeba),କିଏ ନିଜ ଶରୀରର କ୍ଷୁଦ୍ରଭାଗଗୁଡ଼ିକୁ ନେଇ (ଛିଦ୍ରାଳ ପ୍ରାଣୀ ବା Porifera ବା ସ୍ପଞ୍ଜ) ବା କିଏ ନିଜ ଶରୀରରୁ କୋରକ (Bud) ସୃଷ୍ଟି କରି ଅଥବା ହାଇଡ୍ରା (Hydra) ପରି ଆଉ କିଏ ଲିଙ୍ଗୀୟ ଜନନ (Sexual production) ଦ୍ୱାରା ଥରକେ ଗୋଟିଏ ପ୍ରାଣୀରୁ ଦୁଇ ବା ଅଧିକ ପ୍ରାଣୀ ସୃଷ୍ଟି କରିଥାଆନ୍ତି । ବିସ୍ମୟକର ବସ୍ତୁ ହେଉଛି ଉନ୍ନତ ମେରୁଦଣ୍ଡୀ ପ୍ରାଣୀମାନଙ୍କ ମଧ୍ୟରେ ଥରକରେ କିଏ ଗୋଟିଏ ଛୁଆ (ମନୁଷ୍ୟ,ଗାଈ,ମହିଷ ଇତ୍ୟାଦି) , କିଏ ଦୁଇ ବା ତିନିଟି ଛୁଆ (ଛେଳି,କୁକୁର) କିଏ ୫ ଟି ବା୬ ଟି (ମୂଷା) ଅଥବା ଆଉ କିଏ ୪ଟି ଛୁଆ (ସୁଇଜରଲ୍ୟାଣ୍ଡ ଧଳା ମୂଷା ବା (Swiss albino mice) ଦେଇଥିବାର ଦେଖାଯାଏ । ତେବେ ବର୍ତ୍ତମାନ ଦେଖାଯାଉ ମନୁଷ୍ୟ ଅନେକ ସମୟରେ ଗୋଟିଏ ଛୁଆ ଦେଲେ ମଧ୍ୟ ବେଳେବେଳେ ଦୁଇଟି ଛୁଆ (Twin) ଜନ୍ମ ଦେଇଥାଆନ୍ତି । ଏହା କଣ ଏକ ସାଧାରଣ ଘଟଣା ? ଏହା କଣ ଅଶୁଭର ସଙ୍କେତ ? ଏ କଣ ପାପର ପ୍ରାୟଶ୍ଚିତ୍ତ ? ଏମାନେ କଣ ଜନ୍ମହେଲେ ମରିଯାଆନ୍ତି ? -ଇତ୍ୟାଦି ଅନେକ ପ୍ରଶ୍ନ ମନରେ ସୃଷ୍ଟି ହେବା ସ୍ୱାଭାବିକ । ତେବେ ବର୍ତ୍ତମାନ ଆଲୋଚନା କରାଯାଉ ଏହି ଯମଜ ସନ୍ତାନ କଣ ଓ କାହିଁକି ଜନ୍ମ ହୋଇଥାଆନ୍ତି ।

ଥରକରେ ମାତାର ଗର୍ଭରୁ ଦୁଇଟି ସନ୍ତାନ ଜନ୍ମହେଲେ ତାହାକୁ ଯମଜ ବା ଜାଆଁଳା ସନ୍ତାନ ବୋଲି କୁହାଯାଏ । ଏହା ସବୁବେଳେ ଘଟି ନ ଥାଏ । କ୍ୱଚିତ୍ ସଂଖ୍ୟାରେ ଦୃଷ୍ଟିଗୋଚର ହୋଇଥାଏ । ଆଉ ମାତାର ଗର୍ଭରେ ପ୍ରାଥମିକ ଗର୍ଭସଂଚାର ସମୟରେ ଦୁଇଟି ଛୁଆ ଜନ୍ମ ହେବେ କି ନାହିଁ କହିହେବ ନାହିଁ । ସାଧାରଣ ଅର୍ଥରେ କହିବାକୁ ଗଲେ ଏହା ଏକ ଅଘଟଣ ମାତ୍ର ।

## ଯମଜ ସନ୍ତାନର ପ୍ରକାର ଭେଦ

ଲୋକମାନଙ୍କର ଏକ ଧାରଣା ଯେ ଯମଜ ସନ୍ତାନମାନେ ଦେଖିବାକୁ ଏକାପରି । ମାତ୍ର ଏହା ସମ୍ପୂର୍ଣ୍ଣ ଭ୍ରମାତ୍ମକ । ମାତା ଥରକରେ ଦୁଇଟି ପୁଅ ବା ଦୁଇଟି ଝିଅ କିମ୍ବା ଥରକରେ ଗୋଟିଏ ପୁଅ ଓ ଗୋଟିଏ ଝିଅ ଜନ୍ମ ଦେଇପାରିବାର ସମ୍ଭାବନା ଥାଏ । ଯଦି ଦୁଇଟି ପୁଅ ବା ଦୁଇଟି ଝିଅ ଜନ୍ମ ନିଅନ୍ତି ସେମାନେ ମୁଖ୍ୟତଃ ଦେଖିବାକୁ ଏକାପରି ହୋଇଥାନ୍ତି; ମାତ୍ର ଗୋଟିଏ ପୁଅ ଗୋଟିଏ ଝିଅ ଥରକରେ ଜନ୍ମନେଲେ ଦେଖିବାକୁ ଭିନ୍ନ ହୋଇଥାଆନ୍ତି । ପ୍ରଥମ ସ୍ଥଳରେ ଏହାକୁ ଅଭିନ୍ନ ବା ଏକାତ୍ମ ଯମଜ (Identical ବା Maternal twin) ଓ ଦ୍ୱିତୀୟ ସ୍ଥଳରେ ଭିନ୍ନାତ୍ମକ ଯମଜ (Non-identical ବା Fraternal twin)ବୋଲି କୁହାଯାଏ ।

ଶୁକ୍ରାଣୁ (Sperm) ଓ ଡିମ୍ବାଣୁ (Ovum) ର ମିଳନରେ ନିଷିକ୍ତ ଡିମ୍ବାଣୁ (Zygote) ଘଟିବା ପରେ ତାର ବିଭାଜନ ଆରମ୍ଭ ହୋଇଥାଏ । ଏହି ସମୟରେ ଗୋଟିଏ ନିଷିକ୍ତ ଡିମ୍ବାଣୁ ଯଦି ସମାନ ଦୁଇଭାଗରେ ବିଭକ୍ତ ହୋଇଥାଏ,ତେବେ ଏକାତ୍ମ ଯମଜ ସୃଷ୍ଟି ହୋଇଥାଏ । ତେଣୁ ଏହାକୁ ମଧ୍ୟ ଏକ ନିଷିକ୍ତ ଡିମ୍ବାଣୁ ଯମଜ (Monozygotic twin) ବୋଲି କୁହାଯାଏ । ମାତ୍ର ସମୟ ସମୟରେ ଦୁଇଟି ଡିମ୍ବାଣୁର ଅଲଗା ଅଲଗା ଶୁକ୍ରାଣୁ ଦ୍ୱାରା ସମାୟନ (Fertilisation) ଘଟି ଜରାୟୁରେ ଅଭିବୃଦ୍ଧି ଘଟିଥାଏ । ତେଣୁ ଏହାକୁ ଦ୍ୱିନିଷିକ୍ତ ଡିମ୍ବାଣୁ ଯମଜ (Dizygotic twin) ବୋଲି କୁହାଯାଇଥାଏ । ଏହି ଧରଣର ଯମଜ ଏକଲିଙ୍ଗୀୟ ବା ଭିନ୍ନଲିଙ୍ଗୀୟ ହୋଇପାରନ୍ତି । ଏମାନେ ଦେଖିବାକୁ କଦାପି ଏକ ପ୍ରକାର ନିଶ୍ଚିତ୍ତି ହୋଇନଥାନ୍ତି । ମାତ୍ର ଏକ ଡିମ୍ବାଣୁ ଯମଜ ବା ଅଭିନ୍ନ ଯମଜ ସର୍ବଦା ଦେଖିବାକୁ ଏକାପରି ଓ ଗୋଟିଏ ଲିଙ୍ଗର ହୋଇଥାନ୍ତି । ଯମଜ ସନ୍ତାନ ଛଡ଼ା ବେଳେ ବେଳେ ଦୁଇରୁ ଅଧିକ ଏପରିକି ଆଠଟି ବା ନଅଟି ସନ୍ତାନ ମଧ୍ୟ ଜନ୍ମ ନେଇଥାଆନ୍ତି । ଏହାକୁ ବହୁ ପ୍ରସବ (Multiple birth) ବୋଲି କୁହାଯାଏ ।

## ଯମଜ ସନ୍ତାନର ଶରୀର ତତ୍ତ୍ୱ

ଯମଜ ସନ୍ତାନଗୁଡ଼ିକର ନିଜ ନିଜର ରକ୍ତସଂଚାଳନ (Circulation) ଥିଲେ ମଧ୍ୟ ଭ୍ରୂଣପୁଷ୍ଟିକା (Placenta) ରେ ତୃତୀୟ ସଂଚାଳନ ଦେଖାଯାଇଥାଏ । ଏ ପ୍ରକାର ସଂଚାଳନର ପରିମାଣ ପ୍ରଥମ ଭ୍ରୂଣ (Embryo) ଠାରୁ ଦ୍ୱିତୀୟ ଭ୍ରୂଣରେ ସମାନ ନ ଥିଲେ ଭ୍ରୂଣ ବଞ୍ଚିବା ଅସମ୍ଭବ ହୋଇଥାଏ । ତେଣୁ ଅନେକ ସମୟରେ ଯମଜ ସନ୍ତାନ ଜନ୍ମହେବା ପରେ ବା ପୂର୍ବରୁ ଗୋଟିକର ମୃତ୍ୟୁର ଏହାହିଁ କାରଣ । ବୋଧହୁଏ ଏଥିପାଇଁ ଗାଁ ଗହଳି ଲୋକ ବା ସାଧାରଣ ଲୋକଙ୍କର ବିଶ୍ୱାସ ଯେ ଯମଜ ସନ୍ତାନ ଜନ୍ମହେଲେ ମୃତ୍ୟୁ ଘଟିଥାଏ । ଯମଜ ସନ୍ତାନମାନେ ସାଧାରଣତଃ ସାଧାରଣ ଜନ୍ମସମୟ (୨୮୦ ଦିନ ବା ୯ ମାସ ୧୦ ଦିନ ) ଠାରୁ କମ୍ ସମୟରେ ଅର୍ଥାତ୍ ୩ ମାସରୁ ସାଢ଼େ ଆଠ ମାସ ମଧ୍ୟରେ ଜନ୍ମ ନେଇଥାନ୍ତି ।

## ଅଦ୍ଭୁତ ପ୍ରକାର ଯମଜ ସନ୍ତାନ

ଅନେକ ସ୍ଥଳରେ ଯମଜ ସନ୍ତାନଗୁଡ଼ିକ ଅଦ୍ଭୁତ ପ୍ରକାରରେ ଜନ୍ମ ନେଇ ଥାଆନ୍ତି । ନିଷିକ୍ତ ଡିମ୍ବାଣୁର ଅସମ୍ପୂର୍ଣ୍ଣ ବିଭାଜନ ଯୋଗୁଁ ଯମଜ ସନ୍ତାନମାନେ ଏକାଠି ଯୋଡ଼ିହୋଇ ଜନ୍ମ ନେଇଥାନ୍ତି । ଏହାକୁ ସିଆମେଜ ଯମଜ (Siamese twin) ବୋଲି କୁହାଯାଏ । ଏ ସ୍ଥଳରେ ଶରୀରର ପୃଷ୍ଠଭାଗ ସଂପୂର୍ଣ୍ଣ ଭାବରେ ବା ଆଂଶିକ ଭାବରେ ଯୋଡ଼ି ହୋଇଥାଏ । ଏ ପ୍ରକାର ଜନ୍ମ ପ୍ରଥମେ ଥାଇଲାଣ୍ଡର ମାକ୍‌ଲଙ୍ଗନାମକ ସ୍ଥାନରେ ୧୮୧୧ ମସିହା ମେ ମାସ ୧୧ ତାରିଖରେ ଜଣାଯାଇଥିଲା ଓ ଛୁଆଦୁଇଟିର ନାମ ଥିଲା ଚାଙ୍ଗ୍ ଓ ଏଙ୍ଗ୍ ବର୍କନର । ଏହାବ୍ୟତୀତ କେତେକ ଛୁଆ ମଧ୍ୟ ଦୁଇମୁଣ୍ଡ,ଚାରିହାତ ଓ ଦୁଇଗୋଡ଼ (Dicephales Tetrabrachius Dipus) ବା ଦୁଇମୁଣ୍ଡ ,ଚାରିହାତ ଓ ଚାରିଗୋଡ଼ ଥାଇ ଜନ୍ମହେବାର ବି ଅନେକ ଦୃଷ୍ଟାନ୍ତ ରହିଅଛି ।

## ଯମଜ ସନ୍ତାନର ପରିସଂଖ୍ୟାନ

ପୃଥିବୀରେ ଏ ପର୍ଯ୍ୟନ୍ତ ଜନ୍ମନେଇଥିବା ସବୁଠାରୁ ଡେଙ୍ଗା ଯମଜ ହେଲେ ଉତ୍ତର ଆୟାର୍ଲାଣ୍ଡର ୧୭୬୧ ମସିହାରେ ଜନ୍ମନେଇଥିବା ନାଇପ୍ ଭ୍ରାତୃଦ୍ୱୟ । ସେମାନଙ୍କର ଲମ୍ବ ଥିଲା ୨୧୮ ସେ.ମି. । ବଞ୍ଚିଥିବା ଡେଙ୍ଗା ଯମଜ ହେଲେ ୧୯୬୧ ମସିହା ଅଗଷ୍ଟ ୧୨ ରେ ଫ୍ଲାଗ୍‌ଷ୍ଟାଫ୍ ଠାରେ ଜନ୍ମନେଇଥିବା ଡାନ ଓ ଡାଉନ୍ ଏବଂ ତାଙ୍କର ଉଚ୍ଚତା ଥିଲା ୨୧୦ ସେ.ମି. । ବିଶ୍ୱରେ ବଞ୍ଚିଥିବା ସବୁଠାରୁ ଗେଡ଼ା ଯମଜ ହେଉଛନ୍ତି ପାମ୍‌ବିଚ୍‌ର ୧୯୫୨ ମସିହାରେ ଜନ୍ମ ନେଇଥିବା ଜନ୍ ଓ ଗେଗ୍‌ରାଇସ । ତାଙ୍କର ଉଚ୍ଚତା ଥିଲା ମାତ୍ର ୮୬ ସେ.ମି. ।

## ଯମଜ ଜନ୍ମର ମାତ୍ରା

ପରିସଂଖ୍ୟାନରୁ ଜଣାଯାଇଛି ଯେ ଆଫ୍ରିକାର ନିଗ୍ରୋବଂଶରେ ଯମଜ ସନ୍ତାନ ଅଧିକ ଜନ୍ମ ନେଇଥାଆନ୍ତି । ଆଉ ମଧ ଦେଖାଯାଇଛି ୟୁରୋପୀୟ ଦେଶଗୁଡ଼ିକରେ ଏମାନଙ୍କର ସଂଖ୍ୟା ଅଧିକ ଥିବା ସ୍ଥଳେ ଏସିଆର ଦେଶଗୁଡ଼ିକରେ ଏମାନଙ୍କର ଜନ୍ମହାର ଯଥେଷ୍ଟ କମ୍ । ଯାହା ହେଉନା କାହିଁକି ଜନ୍ମହାର ଅନେକ କାରଣ ଉପରେ ନିର୍ଭରଶୀଳ । ପ୍ରଥମତଃ ପର୍ଯ୍ୟବେକ୍ଷଣରୁ ଜଣାଯାଇଛି ଯେ ଅଧିକସଂଖ୍ୟକ ସନ୍ତାନ ଜନ୍ମପାଇଁ ବ୍ୟବହାର କରାଯାଉଥିବା ଔଷଧ (Fertility drugs),ଦ୍ୱିତୀୟତଃ ମାତାର ବଂଶ (Heredity) ଓ ତୃତୀୟତଃ ମାତାର ବୟସ ଇତ୍ୟାଦି ଯମଜ ଜନ୍ମ ଉପରେ ପ୍ରଭାବ ପକାଇଥାଏ ।




ତେବେ ଯାହାହେଉନା କାହିଁକି ଯମଜ ସନ୍ତାନ ଜନ୍ମ ପଛରେ ଯେତେ ପ୍ରହେଳିକା ଶୁଣାଯାଏ, ସେଗୁଡ଼ିକ ବୈଜ୍ଞାନିକ ଦୃଷ୍ଟିକୋଣରୁ ଯୁକ୍ତିଯୁକ୍ତ ନୁହେଁ । ଯାଆଁଳା ଫଳ ଓ ଯାଆଁଳା ପରିବା ଇତ୍ୟାଦି ଖାଇଲେ ଯମଜ ଜନ୍ମ ନିଅନ୍ତି ବୋଲି ଗାଁ ଗହଳିର ବିଶ୍ୱାସ । ମାତ୍ର ଏହା ସଂପୂର୍ଣ୍ଣ ମିଥ୍ୟା । ତେଣୁ ସ୍ତ୍ରୀ ଲୋକମାନଙ୍କୁ ଏ କ୍ଷେତ୍ରରେ ହୀନଚକ୍ଷୁରେ ଦେଖି ଲୋକ ଲୋଚନରେ ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିବା ଅନୁଚିତ । ଯମଜ ସନ୍ତାନ ଜନ୍ମରେ ପିତାମାତାଙ୍କର କୌଣସି ଅସୁବିଧା ପ୍ରାୟ ଦେଖାଯାଇ ନ ଥାଏ । ଦୁଇଟିଯାକ ସନ୍ତାନ ଉପଯୁକ୍ତ ଭାବରେ ସୁସ୍ଥ ପରିବେଶ (Environment) ମଧରେ ରହିଲେ ସନ୍ତାନମାନଙ୍କର ଅଭିବୃଦ୍ଧିରେ ବ୍ୟାଘାତ ଘଟି ନ ଥାଏ । ଏଥିରେ କୌଣସି ତର୍କର ପ୍ରଶ୍ନ ନାହିଁ । ତେଣୁ ଜନ୍ମ ପରେ ପିତାମାତାମାନେ ଗୋଟିଏ ସନ୍ତାନ ହେଲେ ଯେପରି ଯତ୍ନଶୀଳ ହୋଇଥାଆନ୍ତି, ଯମଜ ସନ୍ତାନ ନିମିତ୍ତ ଠିକ୍ ସେପରି ସଚେତନଶୀଳ ହେଲେ ବା ଦୃଷ୍ଟି ରଖିଲେ ଯମଜ ସନ୍ତାନମାନେ ଠିକ୍ ନାଗରିକ ହୋଇପାରିବେ । ଆଉ ସେମାନଙ୍କ ପ୍ରତି ଅବହେଳା ପ୍ରଦର୍ଶନ କରିବା ଅପରାଧ ମାତ୍ର ।



# ସାରୁଗଛ ତଳେ ରାବ, କିଏ ସେ ଜୀବ ?

## ବୀଭତ୍ସ ପରିବେଶ

ଖାଲି ପରିବେଶ, ପରିବେଶ – ଯେଉଁଆଡ଼େ ଗଲେ ଶୁଣିବାକୁ ମିଳୁଛି, ଦେଖିବାକୁ ମିଳୁଛି ପରିବେଶ ସୁରକ୍ଷା, ଜୀବଜନ୍ତୁ ସଂରକ୍ଷଣ, ବନ୍ୟ ସପ୍ତାହ ପାଳନ ଇତ୍ୟାଦି । କିନ୍ତୁ ପରିବେଶ ବାସ୍ତବରେ କ'ଣ ? ସାଧାରଣ ଲୋକମାନେ ଏହି ଶବ୍ଦଟିକୁ ଭଲଭାବରେ ବୁଝିବାରେ ଏ ପର୍ଯ୍ୟନ୍ତ ସମର୍ଥ ହୋଇ ନାହାନ୍ତି । କିନ୍ତୁ ପରିବେଶ ନାମରେ ବିରାଟ ବିରାଟ କାର୍ଯ୍ୟକ୍ରମ, ବିସ୍ତୃତ ଯୋଜନା, ଅନେକ ସାଧାରଣ ସଭା, ଅଭୟାରଣ୍ୟ ଓ ଜାତୀୟ ଉଦ୍ୟାନ ଘୋଷଣା ଇତ୍ୟାଦି ଅନେକ କାର୍ଯ୍ୟକାରୀ ହେଉଛି । କିନ୍ତୁ ମନୁଷ୍ୟ ଚତୁଃପାର୍ଶ୍ୱସ୍ଥ ବୃକ୍ଷଲତା କୀଟପତଙ୍ଗଠାରୁ ଆରମ୍ଭ କରି ବାଘ, ସିଂହ ଓ ହାତୀ ପର୍ଯ୍ୟନ୍ତ ଜୀବଜନ୍ତୁ ଅନ୍ତର୍ଭୁକ୍ତ ବୋଲି ସମସ୍ତଙ୍କର ଧାରଣା ବାହାରରେ । କହିବା ବାହୁଲ୍ୟ ଯେ ଜନସାଧାରଣ କହିବାରେ ବ୍ୟସ୍ତ – " ମୂଷା ସଂଖ୍ୟା ମନୁଷ୍ୟ ସଂଖ୍ୟାର ୬ ଗୁଣ – ତେଣୁ ଫସଲ କ୍ଷତି ଅଟକଳ ନାହିଁ – ଜମିରେ ପୋକ ଏମିତି ଲାଗୁଛନ୍ତି ଯେ ଔଷଧ ପକାଇ ମଧ ମରୁ ନାହାନ୍ତି"–ଏମିତି ଅନେକ ନାସ୍ତିବାଚକ ଉକ୍ତି । କିନ୍ତୁ ଏ ଉକ୍ତିଗୁଡ଼ିକର ମର୍ମ ବୁଝିବାକୁ କାହାର ଧୈର୍ଯ୍ୟ ନାହିଁ ବା ତା'ପାଇଁ କୌଣସି କାର୍ଯ୍ୟକ୍ରମର ଯୋଜନା ବି ନାହିଁ । ତେଣୁ କ୍ଷତି ହେବ ନାହିଁ ତ ହେବ କଅଣ ?

## ନିରୀହ ପ୍ରାଣୀ ବେଙ୍ଗୁଲୀ

ବିଦେଶୀ ମୁଦ୍ରା ଉପାର୍ଜନ ଲକ୍ଷ୍ୟରେ ଅନେକ ଜିନିଷ ରପ୍ତାନୀ ହେବାପରି କଇଁଚ ଓ ବେଙ୍ଗ ଇତ୍ୟାଦି ପ୍ରାଣୀ ମଧ ବିଦେଶକୁ ଓ ଭାରତର ବିଭିନ୍ନ ସ୍ଥାନକୁ ରପ୍ତାନୀ କରାଯାଇଥାଏ । ଏହା ଏବେ କିଛି ବର୍ଷ ହେବ ଚାଲିଛି ତାହା ନୁହେଁ, ତାହା ସ୍ୱାଧୀନତା ପରେ ପରେ ଦେଖା ଦେଇଛି । ମଣ୍ଡୁକ ବା ବେଙ୍ଗ (Frogs) ରପ୍ତାନୀ ବହୁଳ ଭାବରେ ହୋଇଥିଲା ପ୍ରାୟ ୧୯୫୭ ମସିହାଠାରୁ । ଭାରତରେ ଦେଖାଯାଉଥିବା ୨୭ ପ୍ରକାର (Species) ବେଙ୍ଗମାନଙ୍କ ମଧ୍ୟରୁ ବ୍ରାହ୍ମଣୀ ବେଙ୍ଗ ପରି ବଡ଼ ବଡ଼ ବେଙ୍ଗର ମାଂସଳ ଗୋଡ଼ଗୁଡ଼ିକୁ ରପ୍ତାନୀ କରିବା ଥିଲା ଗୋଟିଏ ଅତ୍ୟନ୍ତ ଲାଭଜନକ ବ୍ୟବସାୟ । ମୁଖ୍ୟତଃ ସେ ବେଙ୍ଗଗୁଡ଼ିକ ହେଲେ ବ୍ରାହ୍ମଣୀ ବେଙ୍ଗ ପରିବାରର, ଯେଉଁଗୁଡ଼ିକର ସଂଖ୍ୟା ବର୍ତ୍ତମାନ

ଯଥେଷ୍ଟ କମିଯାଇଛି । ବର୍ଷକୁ ହାରାହାରି ୨,୫୦୦ ଟନ୍ ବେଙ୍ଗଗୋଡ଼ ଆମେରିକା ଓ ପଶ୍ଚିମ ୟୁରୋପୀୟ ଦେଶଗୁଡ଼ିକୁ ବିକ୍ରୟ କରାଯାଇ ପ୍ରାୟ ସାତକୋଟି ଟଙ୍କା ଅର୍ଜନ କରାଯାଉଥିବାର ହିସାବରୁ ଜଣାଯାଇଛି । ଏପରି ମାତ୍ରାରେ ବୈଦେଶିକ ମୁଦ୍ରା ଅର୍ଜନ ହେବା ଫଳରେ ବେଙ୍ଗ ରପ୍ତାନୀ ମଧ୍ୟ କ୍ରମେ ବୃଦ୍ଧି ପାଇଥିଲା । ତେଣୁ ବ୍ୟବସାୟୀ ଗୋଷ୍ଠୀ ନିର୍ଦ୍ୱନ୍ଦ୍ୱରେ ବେଙ୍ଗଗୁଡ଼ିକୁ ବିକ୍ରୟ କରିବାକୁ ଲାଗିଥିଲେ । ଅବଶ୍ୟ ବର୍ତ୍ତମାନ ସାମୁଦ୍ରିକ କଇଁଚଗୁଡ଼ିକୁ ସେପରି କରାଯାଉଛି ଓ ନିୟନ୍ତ୍ରଣ ମଧ୍ୟ ହୋଇଯାଇଛି ଧରିବା ପାଇଁ ।

## ପ୍ରକୃତିର ପୋଲିସ୍ : ବେଙ୍ଗ

ଏହାଯୋଗୁଁ ସତରେ କ'ଣ ବେଶି ବୈଦେଶିକ ମୁଦ୍ରା ଅର୍ଜନ ହେଉଛି ? ଯଦିଚ ଭଲଭାବରେ ବୈଦେଶିକ ମୁଦ୍ରା ଅର୍ଜନ କରାଯାଉଛି, ତା ତୁଳନାରେ ଆମର କୃଷିର ପରିମାଣ ଯଥେଷ୍ଟ ମାତ୍ରାରେ ହ୍ରାସ ପାଇଛି ବୋଲି ପରିସଂଖ୍ୟାନରୁ ଜଣାଯାଇଛି । ତାହାର କାରଣ ବେଙ୍ଗମାନଙ୍କର ପ୍ରଧାନ ଖାଦ୍ୟ ହେଲା କୀଟପତଙ୍ଗ – ଯାହାର ସଂଖ୍ୟା କୃଷିକ୍ଷେତ୍ରରେ ସର୍ବାଧିକ ଓ ସର୍ବବିଧ । ତେଣୁ କୃଷିକ୍ଷେତ୍ରରେ ରହି କୀଟଗୁଡ଼ିକ ତଥା ସେମାନଙ୍କ ଡିମ୍ବ ଓ ଲାର୍ଭାଗୁଡ଼ିକୁ ଖାଇ ସେମାନଙ୍କର ବଂଶ ଲୋପ କରିଥାଆନ୍ତି ଏହି ବେଙ୍ଗଗୁଡ଼ିକ । ଏପରିକି ଅନେକ ଜଳାଶୟରୁ ମଶା ଓ ପୋକଗୁଡ଼ିକର ଡିମ୍ବ ତଥା ଲାର୍ଭାକୁ ଖାଇ ତାଙ୍କ ବଂଶବୃଦ୍ଧିକୁ କମାଇଥାଆନ୍ତି । ଯେଉଁ ପୋକଗୁଡ଼ିକ ବିଶେଷ ଭାବରେ କୃଷିକ୍ଷେତ୍ରର କ୍ଷତି ଘଟାଇଥାଆନ୍ତି ସେମାନେ ମଧ୍ୟ ଅନେକ ପ୍ରକାରର । ମହାରାଷ୍ଟ୍ରର ରତ୍ନଗିରି ଜିଲ୍ଲାର କଙ୍କନ କୃଷିବିଦ୍ୟାପୀଠର ଗବେଷଣାରୁ ଜଣାପଡ଼ିଛି ଯେ ବେଙ୍ଗଗୁଡ଼ିକର କୃଷିକ୍ଷେତ୍ରରେ ଅବସ୍ଥାନ ଯୋଗୁଁ ପୋକମାନଙ୍କଦ୍ୱାରା ଫସଲହାନି ଯଥେଷ୍ଟ କମ୍ ପରିମାଣର ହୋଇ ପ୍ରତି ହେକ୍ଟର ପିଛା ଉତ୍ପାଦନ ଅଧିକ ହେଉଛି । ଏହା ବ୍ୟତୀତ ଭାରତର କୃଷି ଗବେଷଣା ସଂସ୍ଥା ମଧ୍ୟ ଏକମତ ପ୍ରଦାନ କରି କହିଛନ୍ତି ଯେ ବେଙ୍ଗମାନଙ୍କ ପାଇଁ କୃଷିକ୍ଷେତ୍ରର ଶତକଡ଼ା ୯୦ ଭାଗ ଖାଦ୍ୟ ହେଉଛନ୍ତି ପୋକ ଜୋକ । ଖାଦ୍ୟ ଓ କୃଷି ଗବେଷଣା ସଂସ୍ଥାର ଜଣେ ମୁଖପାତ୍ର ଡଃ ଚାର୍ଲସ ଫୁରାଲର ୧୯୮୫ ଜୁନ୍ ମାସରେ ଆସିଥିବା ସମୟରେ ମତବ୍ୟକ୍ତ କରିଛନ୍ତି ଯେ କୃଷି କ୍ଷେତ୍ରରେ କେବଳ ଯେ ଫସଲ ହାନି କରୁଥିବା ପୋକ ଦେଖା ଯାଉଛନ୍ତି ତାହା ନୁହେଁ, ପୋକମାନଙ୍କୁ ମାରିବା ନିମିତ୍ତ ବ୍ୟବହୃତ କୀଟନାଶକ ଔଷଧ ବେଙ୍ଗମାନଙ୍କର ଡିମ୍ବ ଓ ଲାର୍ଭାଗୁଡ଼ିକୁ ନଷ୍ଟ କରିବା ଫଳରେ ସେମାନଙ୍କର ସଂଖ୍ୟାରେ ନ୍ୟୂନତା ଦେଖାଦେଉଛି । ଅର୍ଥାତ୍ ଶିକାରୀପକ୍ଷୀଗୁଡ଼ିକ ହ୍ରାସ ପାଇବା ଫଳରେ ଯେପରି ମୂଷାମାନଙ୍କର ପ୍ରାଦୁର୍ଭାବ ଓ ସଂଖ୍ୟା ବୃଦ୍ଧି ଘଟିବା ସହ

ମୂଷାମାରୀ ଔଷଧଗୁଡ଼ିକର ଖର୍ଚ୍ଚ ବୃଦ୍ଧି ପାଉଛି, ଠିକ୍ ସେହିପରି ବେଙ୍ଗମାନଙ୍କ ସଂଖ୍ୟା କମିଯିବା ଫଳରେ କୀଟମାନଙ୍କ ସଂଖ୍ୟା ବୃଦ୍ଧି ପାଉଛି ।

## ବେଙ୍ଗ ପାଇଁ ନିୟମ

ଏସବୁ ଦୃଷ୍ଟିରୁ ବେଙ୍ଗଗୁଡ଼ିକର ଚାହିଦା ଉପଲବ୍ଧି କରାଯିବା ସଙ୍ଗେ ସଙ୍ଗେ ଏଗୁଡ଼ିକର କିପରି ଭାବରେ ସୁରକ୍ଷା କରାଯାଇପାରିବ, ସେଥିପାଇଁ ଉପଯୁକ୍ତ ପଦକ୍ଷେପ ନିଆଯାଇଛି । ଅବଶ୍ୟ ୧୯୭୮ ମସିହାରେ ଲୋକସଭା ସଦସ୍ୟମାନଙ୍କ ଦ୍ୱାରା ବେଙ୍ଗଶିକାର ଓ ରପ୍ତାନୀ ସମ୍ବନ୍ଧରେ ଏକ ପ୍ରସ୍ତାବ ଆଗତ କରାଯାଇଥିଲା । ମାତ୍ର ପାର୍ଲାମେଣ୍ଟ ଭାଙ୍ଗିଯିବା ଫଳରେ ପ୍ରସ୍ତାବଟି ମୃତ ଅବସ୍ଥାରେ ରହିଯାଇଥିଲା । ବାଣିଜ୍ୟ ମନ୍ତ୍ରଣାଳୟ ପକ୍ଷରୁ କଡ଼ାକଡ଼ି ନିୟମ ପ୍ରଣୟନ ଫଳରେ ୧୯୮୪-୮୫ ରେ ହୋଇଥିବା ୪ ହଜାର ଟନ୍ ରପ୍ତାନୀ ହିଁ ପରବର୍ଷକୁ (୧୯୮୬) ୨,୫୦୦ ଟନ୍‌କୁ କମିଯାଇଛି । ଏପରିକି ବେଙ୍ଗଶିକାର ଓ ରପ୍ତାନୀପାଇଁ ବ୍ୟବସାୟୀମାନଙ୍କ କ୍ଷେତ୍ରରେ ଆଇନ୍‌କୁ କଠୋର ଭାବରେ ଲାଗୁ କରଯାଇଛି । ପୁନଶ୍ଚ ରାଜ୍ୟର ମୁଖ୍ୟ ବନ୍ୟଜନ୍ତୁ ତତ୍ତ୍ୱାବଧାରକ ୧୯୭୨ ମସିହାରେ ବନ୍ୟଜନ୍ତୁ ସଂରକ୍ଷଣ ଆଇନ୍‌ର ୨ୟ ଧାରାର ୨ୟ ନିୟମକୁ ବେଙ୍ଗମାନଙ୍କ କ୍ଷେତ୍ରରେ ଲାଗୁ କରିବା ପାଇଁ ମତବ୍ୟକ୍ତ କରିଛନ୍ତି– ଯାହା ବେଙ୍ଗମାନଙ୍କୁ ବାଣିଜ୍ୟ କାରବାରରେ ଲାଗୁ ନ କରିବା ପାଇଁ ନିର୍ଦ୍ଦେଶ କରୁଛି । କୃଷି ମନ୍ତ୍ରଣାଳୟ ପକ୍ଷରୁ ଆଉଗୋଟିଏ ଉତ୍ତମ ପଦକ୍ଷେପ ନିଆଯାଇଛି– ଯେଉଁଥିରେ ସେମାନେ ପରିବେଶ ସଂତୁଳନ (Ecological balance) ପାଇଁ ବେଙ୍ଗଗୁଡ଼ିକୁ ପରିବେଶ ମଧ୍ୟରେ ଛାଡ଼ି ସେମାନଙ୍କ ଅଭିବୃଦ୍ଧି ଘଟାଇବା ପାଇଁ ପ୍ରସ୍ତାବ ଦେଇଛନ୍ତି ।

## ଉପକାରୀ ପ୍ରାଣୀ ଆମ ବେଙ୍ଗ

ତେବେ ଯାହା ହେଉନା କାହିଁକି ଯେହେତୁ ବେଙ୍ଗ ଆମ ପରିବେଶର ଗୋଟିଏ ଅଙ୍ଗ ଓ ମୁଖ୍ୟତଃ କୃଷି ଉତ୍ପାଦନରେ ସହାୟକ,ସେଥିନିମିତ୍ତ ସେମାନଙ୍କ ବଂଶର ଅଭିବୃଦ୍ଧି ନିଶ୍ଚିତ ଆବଶ୍ୟକ । ବୈଦେଶିକ ମୁଦ୍ରାର ଅର୍ଜନ କୃଷି ଉତ୍ପାଦନ ତୁଳନାରେ ଯଥେଷ୍ଟ କମ୍ ହେତୁ କୃଷିକୁ ଅଗ୍ରାଧିକାର ଦିଆଯିବା ବାଞ୍ଛନୀୟ । ସୁତରାଂ ବେଙ୍ଗ ସୁରକ୍ଷା ପ୍ରାକୃତିକ ପରିବେଶ ପାଇଁ ଯେ ଅପରିହାର୍ଯ୍ୟ ଏଥିରେ ଦ୍ୱିମତ ଥାଇ ନ ପାରେ । ଆଶା କରାଯାଉଛି ଯେ ରାଜ୍ୟ ସରକାର ତଥା କେନ୍ଦ୍ର ସରକାର ଏହି କ୍ଷୁଦ୍ର ନିଃସହାୟ ଜୀବମାନଙ୍କ ପାଇଁ ଯେଉଁସବୁ ନିୟମ ପ୍ରଣୟନ କରୁଛନ୍ତି, ତାହା ସେମାନଙ୍କୁ ଦୀର୍ଘଜୀବୀ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ବଂଶ ସୁରକ୍ଷାରେ ସହାୟକ ହେବ । ବଡ଼ ଖୁସିର କଥା ବାସ୍ତବରେ ଏମାନଙ୍କୁ ପ୍ରାକୃତିକ ପରିବେଶରେ ଛାଡ଼ି ସଂଖ୍ୟାଧିକ ଘଟିଲେ

ମଶାମାନଙ୍କର ପ୍ରାଦୁର୍ଭାବ ନିଶ୍ଚୟ କମିଯିବ, ଯଦ୍ୱାରା ମ୍ୟାଲେରିଆ ଓ ବାତଜ୍ୱର ଇତ୍ୟାଦି ରୋଗ କ୍ରମଶଃ ଲୋପ ପାଇଯିବ । ବର୍ତ୍ତମାନ କିଛି ମାସ ପୂର୍ବେ କୋରାପୁଟ ଓ ଫୁଲବାଣୀରେ ମ୍ୟାଲେରିଆ ଅଭୂତପୂର୍ବ ଭାବେ ଯେପରି ଦେଖାଯାଇଥିଲା,ସେପରି ଘଟଣାର ଅବକାଶ ଅନ୍ତତଃ ପୁନର୍ବାର ଦେଖାଯିବ ନାହିଁ ବୋଲି ଜନସାଧାରଣ ନିଶ୍ଚିତ ଆଶାବାଦୀ ହୋଇପାରିବେ ।

## ଲୋକକଥା ଓ ତା'ର ମହତ୍ତ୍ୱ

ସତରେ ଆମର ପୂର୍ବପୁରୁଷ କହିଯାଇଥିଲେ––''ବେଙ୍ଗମାନଙ୍କୁ ମାରିଲେ କାଳ ହୋଇଯିବ''–– ଉକ୍ତିଟି ସତ୍ୟ ଓ ମହତ୍ତ୍ୱପୂର୍ଣ୍ଣ । ଯଦିଓ ସେମାନେ ସେ ସମୟରେ ଏହାର ବୈଜ୍ଞାନିକ ଅନ୍ତର୍ନିହିତ ରହସ୍ୟ ବୁଝିପାରି ନ ଥଲେ ଓ କେବଳ ଜୀବ ସୁରକ୍ଷା ଉଦ୍ଦେଶ୍ୟରେ କହିଥିଲେ ; ତେବେ ସେମାନଙ୍କର ପ୍ରାକୃତିକ ପରିବେଶ ଓ ପରିବେଶ ସଂତୁଳନ ରକ୍ଷା ଏବଂ ନିୟନ୍ତ୍ରଣର ଭୂମିକା ଏତେ ଯେ ଗୁରୁତ୍ୱପୂର୍ଣ୍ଣ ,ଏହି ଉକ୍ତିଟିରୁ ଜଣାପଡ଼େ ।





# ମୁଣ୍ଡ ତିନିକୋଣିଆ,ସାପ ବଢ଼ିଆ

## ବିଚିତ୍ର ସାପ ଲାଉଡଙ୍କିଆ

ପୃଥିବୀରେ ଦୁଇ ହଜାରରୁ ଅଧିକ ଜାତିର ସାପ ଦେଖାଯାଆନ୍ତି । ପ୍ରାୟ ଦୁଇଶହ ଜାତି ସାପ ଭାରତରେ ମିଳନ୍ତି । ସବୁଠାରୁ ଛୋଟ ୧୦୦ମିଲିମିଟର ଲମ୍ବର ତେଲିଆ ସାପ । ସବୁଠାରୁ ଦୀର୍ଘ ସାପଟି ହେଉଛି ସାଢେ ଛଅ ମିଟରର ଅଜଗର ସାପ । ଉଷ୍ଣ ହିଁ ସାଗର,ଜଳଭୂମି,ହ୍ରଦ,ନଦୀ,କ୍ଷେତଖମାର,ଗଛଲତା,ମରୁଭୂମି,ଲଗାଏତ୍ ହିମାଳୟ ପର୍ବତମାଳାର ପାଞ୍ଚହଜାର ମିଟର ଉଚ୍ଚତାରେ ହିମବାହ (ଗ୍ଲେସିଆର) ର ପାଦ ପର୍ଯ୍ୟନ୍ତ ପରିପାର୍ଶ୍ୱ ସାପମାନଙ୍କର ବାସସ୍ଥାନ ।

## ଦୃଷ୍ଟି ଏକ ଅଦ୍ଭୁତ ସୃଷ୍ଟି

ସାପ ହେଉଛି ସ୍ତନ୍ୟପାୟୀ,ପକ୍ଷୀ,କୃକଳାସ ଓ ଭୂଜଳଚର ଭେକ କରି ଏକ ମେରୁଦଣ୍ଡୀ ପ୍ରାଣୀ । ଏ ସମସ୍ତଙ୍କର ଆଖିର ଗଠନ ମୋଟାମୋଟି ଗୋଟିଏ ଢାଞ୍ଚାରେ ଗଠିତ । ଚକ୍ଷୁର ତୀକ୍ଷ୍ଣତା କହିଲେ ତା'ର ଏକାଧିକ କର୍ମକୁଶଳତାକୁ ବୁଝାଏ । ଯଥା : ଚକ୍ଷୁ ଦେଖୁଥିବା ବସ୍ତୁର ଦୂରତ୍ୱକୁ ନିର୍ଭୁଲ ଭାବରେ ଆକଳନ କରି ମସ୍ତିଷ୍କକୁ ଜଣାଏ; ବର୍ଣ୍ଣ ଚିହ୍ନିପାରେ;ଚଳମାନ ଖାଦ୍ୟ ପ୍ରାଣୀ ବା ବସ୍ତୁ ଉପରେ ନିଘା ରଖି ନିମ୍ନକୁ ବା ଉପରକୁ ଗତି କଲାବେଳେ ବା ବାୟୁ ମାଧ୍ୟମରୁ ଜଳ ଭିତରକୁ ବୁଡ ମାରି ବା ପାଣି ତଳେ ରହି ଖାଦ୍ୟ ସଂଗ୍ରହ କଲାବେଳେ,ଚକ୍ଷୁର ଉପଯୁକ୍ତ ସମାୟୋଜନ କରିପାରେ । ପୃଥିବୀରେ ଯେତେ ସାପ ଅଛନ୍ତି, ସବୁ ସାପଙ୍କ ଚକ୍ଷୁର ତୀକ୍ଷ୍ଣତା ବିଷୟରେ ପୁଂଖାନୁପୁଂଖ ପରୀକ୍ଷା ହୋଇ ନାହିଁ । ମାତ୍ର ଯେତେ ସାପଙ୍କ ଚକ୍ଷୁର ତୀକ୍ଷ୍ଣତା ଆକଳନ କରାଯାଇଛି, ସେମାନଙ୍କ ମଧ୍ୟରେ ଯେଉଁ ସାପର ଚକ୍ଷୁର ତୀକ୍ଷ୍ଣତା ସର୍ବାଧିକ, ତା'ରି କଥା ଏଠାରେ କୁହାଯାଉଛି । ଭାରତ ତଥା ଓଡ଼ିଶାରେ ତାହା ଦେଖିବାକୁ ମିଳେ । ତା' ଚକ୍ଷୁର ତୀବ୍ରତା ଓ ବସ୍ତୁର ଦୂରତ୍ୱ ଆକଳନ କରିବାରେ ଅନ୍ୟ କୌଣସି ସାପ ସରି ନୁହେଁ ।

## ଲାଉଡଙ୍କର ନାମକରଣ

ସାପଟିର ବୈଜ୍ଞାନିକ ନାମ *Ahaetulla nasutus* (=*Dryophis nasutus* = *Ahaetulla mycterizans*)। ସାଧାରଣ ଇଂରାଜୀ ନାମ

ହେଉଛି - Common green whip snake ( ସାଧାରଣ ଚାବୁକ ସର୍ପ), Long nose whip snake (ଲମ୍ୱାନାକ ଚାବୁକ ସର୍ପ) Vine snake (ଦ୍ରାକ୍ଷାଲତା ବା ଲଟାସାପ) ଓ Green snake (ସବୁଜ ସର୍ପ) । ବିଭିନ୍ନ ଭାରତୀୟ ଭାଷାରେ ନାମ - **ଓଡିଆ** : ଲାଉଡଙ୍କ, ଲାଉଡଙ୍କିଆ; **ହିନ୍ଦୀ** : ହର ସାଁପ; ସାଁପ; **ତାମିଲ** : ପାଚାଇ ପାମ୍ବୁ; **ବଙ୍ଗଳା** : ଲାଉଡ଼ୋଗା; **ତାମିଲ** : କାନ୍‌କୁଟ୍‌ଟି ପାମ୍ବୁ (ଆଖି ଚୋଟ ମରା ସାପ), ପାଚୋଲାଇ ପାମ୍ବୁ; **ମାରାଠି** : ନାନେଟି; **ସିଂହଳୀ** ଏହେଟୁଲ୍ଲା (ଆଖି ଖୋଳାଳି) ।

## ଲାଉଡଙ୍କର ରୂପ ଓ ଗଠନ

ସମଗ୍ର ପ୍ରାଚ୍ୟ ଅଞ୍ଚଳ ଏବଂ ସେଲିବିସ୍ ଓ ଫିଲିପିନ୍ ଦ୍ୱୀପପୁଞ୍ଜ ଆଠଜାତି ଲାଉଡଙ୍କ ସାପଙ୍କ ବିଚରଣ ଭୂମି । ଏମାନଙ୍କ ଶରୀରର ବିଶେଷ ଲକ୍ଷଣଗୁଡ଼ିକ ହେଲା - ମୁଣ୍ଡ ଲମ୍ବା ଓ ବେକଠାରୁ ସ୍ୱତନ୍ତ୍ର; ଆଖି ଅପେକ୍ଷାକୃତ ବଡ଼, ଅଣ୍ଡାକାର ଓ ଶାୟିତଭାବେ ମୁଣ୍ଡର ଦୁଇ କଡ଼ରେ ଅବସ୍ଥିତ, କନୀନିକା ଶାୟିତ ଏବଂ ଲାଞ୍ଜ ଦୀର୍ଘ । ଏମାନେ ବୃକ୍ଷବାସୀ, ବେଶି ସମୟ ଅଳ୍ପ ଉଚ୍ଚ ଗଛ ଓ ବୁଦାବାଡ଼ରେ ଅତିବାହିତ କରନ୍ତି । ଖାଦ୍ୟପ୍ରାଣୀଙ୍କୁ ଧରିବାପାଇଁ ତଳକୁ ମଧ୍ୟ ଓହ୍ଲାଇଥାନ୍ତି । ଲାଉଡଙ୍କ ଅଣ୍ଡା ଦିଅନ୍ତି ନାହିଁ, ସନ୍ତାନ ପ୍ରସବୀ । ଭାରତରେ ଛଅ ଜାତିର ଲାଉଡଙ୍କ ସାପ ବାସ କରନ୍ତି । ଓଡ଼ିଶାରେ କେବଳ ଗୋଟିଏ ଜାତି ଲାଉଡଙ୍କ ଦେଖାଯାଏ । ପୃଥିବୀର ସାପମାନଙ୍କ ମଧ୍ୟରେ ଏହି ସାପଟିର ଚକ୍ଷୁ ସବୁଠାରୁ ତୀକ୍ଷ୍ଣ ।



ଲାଉଡଙ୍କ ସାପ

## ଲାଉଡଙ୍କର ବିସ୍ତୃତି

ବିହାର ପ୍ରଦେଶର ପାଟନା ନଗରର ପଶ୍ଚିମକୁ ଅବସ୍ଥିତ ଗାଙ୍ଗେୟ ଉପତ୍ୟକାକୁ ଛାଡ଼ି ଭାରତୀୟ ଉପଦ୍ୱୀପର ସମଗ୍ର ଅଞ୍ଚଳ, ପୂର୍ବରେ ପଶ୍ଚିମବଙ୍ଗ, ମାୟାନ୍‌ମାର (ବର୍ମା), ଥାଇଲାଣ୍ଡ (ଶ୍ୟାମ), କାମ୍ବୋଡ଼ିଆ ଓ ଦକ୍ଷିଣ ଭିଏତ୍‌ନାମ (କୋଚିନ୍ - ଚୀନ) ଏ ସାପମାନଙ୍କର ବିଚରଣ ଭୂମି ।

ଲାଉଡଙ୍କ ସାପକୁ ଚିହ୍ନିବା ସହଜ । ଏହାର ଶାରୀରିକ ଗଠନ ଅନ୍ୟ ସାପଙ୍କଠାରୁ କେତେକ ପରିମାଣରେ ଭିନ୍ନ । ଯଥା - (୧) ଲମ୍ୱାଳିଆ ସାପ; ମୁଣ୍ଡ ବେକଠାରୁ ସ୍ୱତନ୍ତ୍ର ଓ ବଡ଼ । ଲମ୍ୱା ଦେହ ଚେପାଳିଆ; ସାଧାରଣତଃ ମଣିଷର କାଣି ଆଙ୍ଗୁଠିଠାରୁ ବେଶି ମୋଟ ହୁଏ ନାହିଁ । ଦେହର ବର୍ଣ୍ଣ ସାଧାରଣତଃ ସବୁଜ, ପିଠିର ଦୁଇ କଡ଼ରେ ଧଳା ବା ହଳଦିଆ ରଙ୍ଗର ବିସ୍ତୃତ ରେଖା ପଡ଼ିଥାଏ । ଲାଞ୍ଜ ତଳର କାତି ଦୁଇଧାଡ଼ିରେ ସଜ୍ଜିତ । ନାସିକାଗ୍ର ଲମ୍ୱା ଓ ଅଗ୍ରଭାଗରେ ଏକ ସ୍ପଷ୍ଟ ବର୍ଦ୍ଧିତ ମାଂସଳ ଖଣ୍ଡ ବିଦ୍ୟମାନ । (୨) ଲାଞ୍ଜ ବେଶ୍ ଲମ୍ୱା । ଅଣ୍ଡିରା ସାପର ସର୍ବାଧିକ ଲମ୍ୱ ୧୩୭୫ ମିଲିମିଟର (୪ ଫୁଟ ୪ ଇଞ୍ଚ)ଏବଂ ସେଥିରୁ ଲାଞ୍ଜ ୫୩୦ ମି.ମି. (୧ ଫୁଟ ୩୫/୪ ଇଞ୍ଚ) । ମାଈର ଲମ୍ୱ ୧୯୪୦ ମି.ମି. (୬ ଫୁଟ ୨ ଇଞ୍ଚ) ଓ ସେଥିରୁ ଲାଞ୍ଜ ୭୨୦ ମି.ମି. (୨ ଫୁଟ ୪ ଇଞ୍ଚ) । ଜନ୍ମ ସମୟରେ ସାପଛୁଆର ଲାଞ୍ଜ ସହିତ ମୋଟ ଲମ୍ୱ ୨୦୦ ମି.ମି. । (୩) ଆଖି ବଡ଼, ଅଣ୍ଡାକାର, ଶାୟିତଭାବେ ଅବସ୍ଥିତ ଏବଂ କନୀନିକା ଚକ୍ର - ବାଳାକାର ।



ଗଛ ସହିତ ମିଶି ରହିଥିବା ସାପ

ପିଠି ପାଖର ବର୍ଣ୍ଣ ତାଜା ସବୁଜ ଓ ପେଟ ପାଖର ବର୍ଣ୍ଣ ଫିକା ସବୁଜ । ପେଟର କାତି ଦୁଇ କଡ଼ରେ ଗୋଟିଏ କରି ଧଳା ବା ହଳଦୀ ବର୍ଣ୍ଣର

ରେଖା ଥାଏ । ଓଠ ବେଳେବେଳେ ହଳଦିଆ; ବେକ ଧଳା ଓ ସମୟ ସମୟରେ ଜୀବିତାବସ୍ଥାରେ ନୀଳ ଦେଖାଯାଏ ।

ସ୍ଥାନଭେଦରେ ଲାଉଡଙ୍କର ବର୍ଣ୍ଣରେ ପ୍ରଭେଦ ଦେଖିବାକୁ ମିଳେ । କୌଣସି କୌଣସିଠାରେ ଏ ସାପର ପିଠିର ବର୍ଣ୍ଣ ହଳଦିଆ, ବାଦାମୀ ବା ମଇଁଷି ଚମଡ଼ା ରଙ୍ଗ । ପେଟ ପାଖର ବର୍ଣ୍ଣ ଧୂସର ବା ଗୋଲାପି । କୌଣସି କୌଣସି ସ୍ଥାନରେ ବାଇଗଣୀ ବର୍ଣ୍ଣର ଲାଉଡଙ୍କ ମଧ୍ୟ ଦେଖାଯାଏ ।

## ଲାଉଡଙ୍କର ବ୍ୟବହାର

ଲାଉଡଙ୍କ ଏକ ନିର୍ଭୀକ ସାପ । ମଣିଷକୁ ଦେଖିଲେ, ଅନ୍ୟ ସାପଙ୍କ ପରି ଖସି ପଳାଇଯିବାକୁ ଉଦ୍ୟମ କରେ ନାହିଁ । ଦିନବେଳେ ସେ ବୁଲାଚଲା କରେ । କୌଣସି ଆଗନ୍ତୁକ ତା' ପାଖକୁ ଆସିଲେ, ସେ ମୁଣ୍ଡକୁ ଏପଟ ସେପଟ କରି ତାକୁ ଲକ୍ଷ୍ୟ କରେ । ଆଶଙ୍କା କଲେ, ଆକ୍ରମଣ କରେ ଏବଂ ତା'ର ଲକ୍ଷ୍ୟ ଆଖିକୁ ଆଘାତ କରିବା ।

## ଏକ ଶିକାରୀ ସାପ ଓ ଖାଦ୍ୟ

ଏହି ସାପର ମୁଖ୍ୟ ଆହାର ଏଣ୍ଡୁଅ,କୃକଲାସ୍, ତୃଣଭୋଜୀ କ୍ଷୁଦ୍ର ସ୍ତନ୍ୟପାୟୀ ଓ ସାନ ସାନ ପକ୍ଷୀ ଆଦି । ବାଗରେ ପାଇଲେ ବେଙ୍ଗ ଓ ଅନ୍ୟ ଜାତି କ୍ଷୁଦ୍ର ସାପଙ୍କୁ ମଧ୍ୟ ଖାଏ । ସାପଟିର ପାଟିର ପଶ୍ଚାତ୍‌ଭାଗରେ ଅଳ୍ପ ବର୍ଦ୍ଧିତ ବିଷଦାନ୍ତ ରହିଥାଏ । ସେ ଖାଦ୍ୟ ଜୀବକୁ ପ୍ରଥମେ କାମୁଡ଼ି ଧରି ରଖେ । ବିଷ ପ୍ରଭାବରେ ଛଟପଟ ହୋଇ ମରି ନିଶ୍ଚଳ ହେଲା ପରେ ଧୀରେ ଧୀରେ ଗିଳେ । ଖାଦ୍ୟ ଆଶାରେ ଏମାନେ ନଡ଼ିଆ ଗଛରେ ରହିବାର ଦେଖାଯାଇଛି । ନଡ଼ିଆ ତୋଳାଳି ଗଛରେ ଚଢ଼ି ନଡ଼ିଆ ସଂଗ୍ରହ କଲାବେଳେ ସାପର ସମ୍ମୁଖୀନ ହୁଏ ।

ମାର୍ଚ୍ଚଠାରୁ ଡିସେମ୍ବର ମାସ ମଧ୍ୟରେ ଲାଉଡଙ୍କ ଥରକେ ୩ ରୁ ୨୨ଟି ଯାଏ ଶାବକ ପ୍ରସବ କରେ ।

## ଲାଉଡଙ୍କିଆର କରାମତି

ଅଳ୍ପ 'ବିଷାକ୍ତ' ହୋଇଥିବାରୁ, ଲାଉଡଙ୍କ କାମୁଡ଼ିଲେ, ଗୋଖର ସର୍ପ ଦଂଶନର ଲକ୍ଷଣ ପ୍ରକାଶ ପାଏ । ଦଂଶିତ ସ୍ଥାନ ଫୁଲିଯାଏ ଓ ଚେତନାଶୂନ୍ୟ ହୁଏ । ଦିନେ ଦୁଇଦିନ ପରେ ଏସବୁ ଭଲ ହୋଇଯାଏ ଓ ଦଂଶିତ ବ୍ୟକ୍ତି ଆରୋଗ୍ୟ ଲାଭ କରେ । ଏହାକୁ 'ବିଷହୀନ', 'ଅଳ୍ପ ବିଷାକ୍ତ' ବା 'ସନ୍ଦେହଜନକଭାବେ ବିଷାକ୍ତ' ଶ୍ରେଣୀରେ ଅନ୍ତର୍ଭୁକ୍ତ

କରାଗଲେ ହେଁ, କାହାରିକୁ ଏ ସାପ ଚୋଟ ମାରିଲେ, ବିଳମ୍ବ ନ କରି ଡାକ୍ତରଙ୍କ ପରାମର୍ଶ ନେବା ଦରକାର ।



ତିନିକୋଣିଆ ମୁଣ୍ଡ ଓ ଦୁଇଫାଳିଆ ଜିଭ ଥିବା ଲାଉଡଙ୍କିଆ ସାପ

ମେରୁଦଣ୍ଡୀ ପ୍ରାଣୀଙ୍କ ଆଖିରେ ମୁକୁରିକାରେ (ରେଟିନା) ଆଲୋକ-ସଂବେଦୀ ଦୁଇ ପ୍ରକାର ଜୀବକୋଷ ଥାଏ । ଆକାର ଅନୁସାରେ ସେମାନଙ୍କୁ ଶଳାକା କୋଷ (Rods) ଓ ଶଙ୍କୁକୋଷ (Cones) ବୋଲାଯାଏ । କ୍ଷୀଣାଲୋକରେ ଦେଖିବାପାଇଁ ଯେଉଁ ଆଖି ଉଦ୍ଦିଷ୍ଟ (ଯଥା - ଚନ୍ଦ୍ରବୋଡ଼ା), ସେମାନଙ୍କ ଚକ୍ଷୁରେ ଶଳାକା ଅଧିକ ଓ ଦିବାଚର ସର୍ପ (ଯଥା - ଲାଉଡଙ୍କ ) ଆଖିରେ କେବଳ ଶଙ୍କୁ ଦେଖିବାକୁ ମିଳେ । ଅଜଗର ଆଖିରେ ଉଭୟ ଶଙ୍କୁ ଓ ଶଳାକା ଥାଏ । ଶଙ୍କୁ ସହିତ ବର୍ଣ୍ଣ କଣାଯୁକ୍ତ ଅଧିଚ୍ଛଦ (Pigment epithelium) ରହିଥିବାରୁ ଲାଉଡଙ୍କ ସାପ ବିଭିନ୍ନ ବର୍ଣ୍ଣ ମଧ୍ୟରେ ପାର୍ଥକ୍ୟ ବୁଝିପାରେ ବୋଲି ବିଶ୍ୱାସ କରାଯାଏ ।



# ସୁନ୍ଦର ପକ୍ଷୀ, ଭୁଲନ୍ତିନି ଆମ ରାଜ୍ୟବାସୀ

## ଧନ୍ୟ ସେ ପକ୍ଷୀ !

ଆମ ଭାରତର ରାଜ୍ୟମାନଙ୍କର ପ୍ରତ୍ୟେକଟିର ଗୋଟିଏ କରି 'ରାଜ୍ୟ ପକ୍ଷୀ' ଅଛି । ଓଡ଼ିଶାର ରାଜ୍ୟ ପକ୍ଷୀ ଭଦଭଦଳିଆ । ଏହାର ଅନ୍ୟ ନାମ ''ଚଷା ପକ୍ଷୀ ଓ ଟିହା'' । ହୁସିଆର, ଓଡ଼ିଶାରେ 'ଚଷାପୁଅ' ବୋଲାଉଥିବା ଓ ପ୍ରସିଦ୍ଧ କବି ଗୋଦାବରୀଶ ମିଶ୍ରଙ୍କ 'ମୁଁ ଚଷାପୁଅ' ପକ୍ଷୀ ଅନ୍ୟ ଏକ ପକ୍ଷୀକୁ ବୁଝାଏ । ଭଦଭଦଳିଆ ପକ୍ଷୀର ଅନ୍ୟ ଏକ ନାମ 'ଭରଦ୍ୱାଜ' । ହିନ୍ଦୀରେ ଏହାର ନାମ 'ନୀଳକଣ୍ଠ' ଓ 'ସବ୍‌ଜକ୍' । ଇଂରାଜୀ ନାମର ଓଡ଼ିଆ ଭାଷାନ୍ତର 'ଭାରତୀୟ ଘୂରଣିଆ ' (Indian Roller) ଓ 'ନୀଳ ଜେ' (Blue Jay) । ବୈଜ୍ଞାନିକ ନାମ *Coracias benghalensis*

## ଚଢ଼େଇର ଆକାର

ପକ୍ଷୀଟିର ମୋଟାମୋଟି ଆକାର ପାରା ପରି, ମୁଣ୍ଡ ବଡ଼, ଥଣ୍ଟ ଓଜନିଆ ଓ କଳା, ଛାତି ଲାଲ୍‌ଆସିଆ ବାଦାମୀ ଏବଂ ଉଦର ଲାଞ୍ଜତଳ ଫିକା ନୀଳ ବର୍ଣ୍ଣ । ଭଦଭଦଳିଆ ଉଡୁଥିବାବେଳେ ପ୍ରସାରିତ ପକ୍ଷରେ ପ୍ରତିଭାତ ଘନ ଓ ଫିକା ନୀଳ ବର୍ଣ୍ଣର ଆଭା ବଡ଼ ମନୋମୁଗ୍‌ଧକର ।

## ଆମର ବିଶ୍ୱାସ ଓ ଭଦଭଦଳିଆ

ସକାଳୁ ସକାଳୁ ବୁଲି ବାହାରିଲେ ନଜର ପଡ଼େ, ଟେଲିଗ୍ରାଫ୍ ତାର ବା ଖୁଣ୍ଟି ଉପରେ ବା ଥୁଣ୍ଟା ଗଛରେ ଭଦଭଦଳିଆ ପକ୍ଷୀଟିଏ ବସି ଚାରି ଆଡ଼କୁ ନଜର ପକାଉଛି । ଲୋକବିଶ୍ୱାସ, ସକାଳେ ଏ ପକ୍ଷୀ ଦେଖିଲେ ସେଦିନ କୌଣସି ଶୁଭ ଖବର ଆସେ ।

## ଭଦଲଦଳିଆର ଖାଦ୍ୟ

ଏହି ପକ୍ଷୀ କୀଟାହାରୀ । ମୁଖ୍ୟ ଖାଦ୍ୟ ଝିଣ୍ଟିକା, ଝିଙ୍କାରୀ ଓ କୋଟଳି । ଏଣ୍ଡୁଅ, ମୂଷା ଓ ବେଙ୍ଗ ଆଦି ଜୁଟିଲେ ଖାଆନ୍ତି । ଚାଷ ଗଛରେ ଲାଗୁଥିବା କୀଟପତଙ୍ଗକୁ ଧରି ଖାଉଥିବାରୁ ଭଦଭଦଳିଆ କୃଷକର ବନ୍ଧୁ ଏବଂ 'ଚଷା ପକ୍ଷୀ' ନାମ ପାଇଛି ।

ଚଷା ପକ୍ଷୀର ସ୍ୱର ଉଚ୍ଚ, କର୍କଶ ଓ ବିଭିନ୍ନ ପ୍ରକାରର । ମାର୍ଚ୍ଚରୁ ଜୁଲାଇ ମାସହିଁ

ଏମାନଙ୍କର ପ୍ରଜନନ ସମୟ । ଅଣ୍ଡିରା ପକ୍ଷୀ ସେତେବେଳେ ମାଈ ପକ୍ଷୀର ମନ ହରଣ ପାଇଁ ଆକାଶରେ ଉଡ଼ି, ଓଲଟି ଓ ଘୂରି ନାନା ପ୍ରକାର ଖେଳ ଦେଖାଏ; ଯଥା - ରକେଟ୍ ପରି ଆକାଶକୁ ଉଠିଯିବା, ଉଡୁଥିବା ବେଳେ ଓଲଟି ପଡ଼ିବା, ମୁହଁକୁ ତଳକୁ କରି ଛୁଟିଆସିବା ଇତ୍ୟାଦି । ସେଥିପାଇଁ ଇଂରାଜୀ ନାମ 'ଭାରତୀୟ ଘୂରଣିଆ' । ଏପରି ସର୍କସ ଖେଳ ଦେଖାଇବା ବେଳେ ସେ ନାନା ପ୍ରକାର ରାବ କରିଥାଏ ।

ଉଦଭଦଳିଆ ନାମରେ ଆମର ଏକ ସୁନ୍ଦର ଗୀତ ଶୁଣାଯାଏ । ସେଇଟି ହେଉଛି -

'ଉଦଭଦଳିଆ ମାଳେ ମାଳେ ନଭେ
ପ୍ରକାଶି ବିଚିତ୍ର ତନୁ ।'

-ରାଧାନାଥ ରାୟ (ଯଯାତି କେଶରୀ)

## ଘର, ଅଣ୍ଡା ଓ ଛୁଆ



କୁଟା, କାଠି, ପର ଓ ଅନ୍ୟ ଆବର୍ଜନା ସଂଗ୍ରହ କରି ମଧ୍ୟମ ଉଚ୍ଚତାରେ ଅବସ୍ଥିତ ଗଛର ପ୍ରାକୃତିକ ଖୋଲରେ ଉଦଭଦଳିଆ ନୀଡ଼ ରଚନା କରେ । ସମୟ ସମୟରେ ଏମାନେ ମନୁଷ୍ୟ ବାସଗୃହର ନିରାପଦ ଖୋଲରେ ମଧ୍ୟ ବସା ବାନ୍ଧିବାର ଦେଖାଯାଇଛି । ମାଈ ଥରକେ ୪-୫ ଟି ଚିକ୍କଣ, ଧଳା ଓ ମାତ୍ର ଗୋଲ ଅଣ୍ଡା ଦିଏ ।

## ଏକ ପରିବ୍ରାଜ ପକ୍ଷୀ

ଶରତ କାଳରେ କାଶ୍ମୀର ଉପତ୍ୟକାରେ ଦେଖାଯାଉଥିବା 'କାଶ୍ମୀର ଭରଦ୍ୱାଜ' ଏକ ପରିବ୍ରାଜୀ ପକ୍ଷୀ ଏବଂ ଆଫ୍ରିକାକୁ ପ୍ରବାସ ଯାତ୍ରା କରୁଥିବା ସମୟରେ ସେପ୍ଟେମ୍ବର-ଅକ୍ଟୋବର ମାସରେ କାଶ୍ମୀର, କଚ୍ଛ, ସୌରାଷ୍ଟ୍ର ଓ ଉତ୍ତର ଗୁଜରାଟରେ ଦେଖିବାକୁ ମିଳେ ଏ ଉଦଭଦଳିଆ ।



# ବାଲି ଯାହାର ଘର – ସେଇ ହିଁ କୃଷ୍ଣସାର

## ଏକ ଅସାଧାରଣ ମିରିଗ

ଆମ ପୃଥିବୀଟି ବଡ଼ ବିଚିତ୍ର । ଏହାର ଜଳ, ସ୍ଥଳ ଓ ବାୟୁମଣ୍ଡଳରେ ରହୁଥିବା ଅସଂଖ୍ୟ ଜୀବ ଏହି ବୈଚିତ୍ର୍ୟକୁ ଆହୁରି ହଜାର ହଜାର ଗୁଣ ବଢ଼ାଇ ଦିଅନ୍ତି । କୃଷ୍ଣସାର ମୃଗ ଏହି ବୈଚିତ୍ର୍ୟର ଏକ ଅଂଶବିଶେଷ । ପୁରୁଷ କୃଷ୍ଣସାର ମୃଗମାନଙ୍କ ଚମଡ଼ାର ରଙ୍ଗ କଳା ବା କୃଷ୍ଣବର୍ଣ୍ଣ ହୋଇଥିବାରୁ ଏମାନଙ୍କୁ 'କୃଷ୍ଣସାର' ବୋଲି କୁହାଯାଏ । ବାଲିହରିଣ, କଳାବାହୁଟିଆ ଓ କୃଷ୍ଣାଜିନ ପରି ଅନ୍ୟ ନାମରେ ମଧ୍ୟ ଏହି ମୃଗ ଆମର ପରିଚିତ । ଇଂରାଜୀରେ ଏହାକୁ ବ୍ଲାକ୍ ବକ୍ (Black buck) ଓ ବୈଜ୍ଞାନିକ ଭାଷାରେ କୁହାଯାଏ ଏଣ୍ଟିଲୋପ ସେର୍ଭିକାପ୍ରା *(Antilope cervicapra)* । ଏହି କୃଷ୍ଣସାର, ଚିଙ୍କାରା, ଚୌଶିଙ୍ଗା ଓ ନୀଳଗାଈ ଆଦି ଜୀବଗୁଡ଼ିକ ଏଣ୍ଟିଲୋପିନି ନାମକ ଗୋଟିଏ ଉପବଂଶର ସ୍ତନ୍ୟପାୟୀ ପ୍ରାଣୀ ।



ମାଈ କୃଷ୍ଣସାର

## କେଉଁଠି ଏ ମୃଗର ଘର ?

କୃଷ୍ଣସାର ମୃଗ କେବଳ ଭାରତରେ ହିଁ ଦେଖିବାକୁ ମିଳନ୍ତି । ସୁରାଟ ଠାରୁ ଦକ୍ଷିଣକୁ ଥିବା ସମୁଦ୍ର ଉପକୂଳ, ଆସାମ, ପଶ୍ଚିମବଙ୍ଗ ଓ କେରଳ ବ୍ୟତୀତ ଆମ ଦେଶର ଅନ୍ୟ ସମତଳ ଅଞ୍ଚଳ ବିଶେଷକରି ଉତ୍ତରପ୍ରଦେଶ, ପଞ୍ଜାବ,ରାଜସ୍ଥାନ, ଗୁଜୁରାଟ, ମହାରାଷ୍ଟ୍ର, ତାମିଲନାଡୁ ଓ ଓଡ଼ିଶା ଏମାନଙ୍କର ବାସସ୍ଥଳୀ । ଏକ ସମୟରେ ଓଡ଼ିଶାର ପ୍ରାୟ ସବୁ ଖୋଲା ଜଙ୍ଗଲମାନଙ୍କରେ ଦେଖାଯାଉଥିବା କୃଷ୍ଣସାର, ଆଜିକାଲି କେବଳ ଗଞ୍ଜାମ ଜିଲ୍ଲାର ଆସିକା ନିକଟସ୍ଥ ଭେଟନଈ ଗ୍ରାମର ଆଖପାଖ ଅଞ୍ଚଳ,

ରାମଣ୍ଡା ଅଞ୍ଚଳ, ସମୁଦ୍ର କୂଳବର୍ତ୍ତୀ ଝାଉଁ ଜଙ୍ଗଲ ବିଶେଷତଃ ପୁରୀଠାରୁ କୋଣାର୍କ ପର୍ଯ୍ୟନ୍ତ ବିସ୍ତୃତ ବେଳାଭୂମିର ଅଭୟାରଣ୍ୟ ଏବଂ ନନ୍ଦନକାନନ ପରି ଜୀବ ଉଦ୍ୟାନମାନଙ୍କରେ ହିଁ ଦେଖିବାକୁ ମିଳନ୍ତି ।

## କୃଷ୍ଣସାରର ପ୍ରିୟ ସ୍ଥାନ

କୃଷ୍ଣସାର ନିଘଞ୍ଚ ଜଙ୍ଗଲ ଭିତରେ ରହିବା ପାଇଁ ସାଧାରଣତଃ ଭଲପାଏ ନାହିଁ । ଖୋଲାପଡ଼ିଆ,ବଡ଼ ବଡ଼ ଘାସ କିମ୍ବା ବୁଦୁବୁଦିକିଆ ଜଙ୍ଗଲ ବା ତା ନିକଟସ୍ଥ ଚାଷଜମିରେ ଏମାନଙ୍କୁ ଦେଖିବାକୁ ମିଳେ । ବିଶେଷକରି ଘାସ ଓ ପାଣିର ସୁବିଧା ଥିବା ଖୋଲା ଜଙ୍ଗଲ ଏମାନଙ୍କର ପ୍ରିୟ ବାସସ୍ଥଳୀ ।

## ଶରୀର ଗଠନ ଓ ରୂପ

କୃଷ୍ଣସାର ଏକ ମଧ୍ୟମ ଆକାରର ସରୁ ଓ ଲମ୍ବାଳିଆ ମୃଗ । ପୂର୍ଣ୍ଣ ବୟଃପ୍ରାପ୍ତ କୃଷ୍ଣସାରର କାନ୍ଧଠାରେ ଉଚ୍ଚତା ୦.୮ ମିଟର, ଓଜନ ହାରାହାରି ୪୦ କିଲୋଗ୍ରାମ ଏବଂ ଲମ୍ବ ପ୍ରାୟ ୧.୨ ମିଟରରୁ ୧.୪୫ ମିଟର ହୋଇଥାଏ । ଭାରତର ଏହି ସୁନ୍ଦର ମୃଗର ମନୋମୁଗ୍ଧକର ଚମଡ଼ା ଓ ତରଙ୍ଗାୟିତ ଶିଙ୍ଗ ପୃଥିବୀର ଅନ୍ୟ କୌଣସି ପ୍ରାଣୀଠାରେ ବିରଳ । ପ୍ରଥମ ଅବସ୍ଥାରେ ଅର୍ଥାତ୍ ଛୁଆ (ଶାବକ) ସମୟରେ ଉଭୟ ଅଣ୍ଡିରା ଓ ମାଈ ମୃଗ ଶାବକର ଦେହର ରଙ୍ଗ ଈଷତ୍ ହଳଦିଆ ହୋଇଥାଏ । ଛୁଆଟି ପ୍ରାୟ ୩ ବର୍ଷ ହେଲା ପରେ ପୁରୁଷ (ଅଣ୍ଡିରା) ମୃଗର ବର୍ଣ୍ଣ କାଳିଆ ହେବାକୁ ଆରମ୍ଭ କରେ । ଅନେକ ସମୟରେ ଏହା କୃଷ୍ଣବର୍ଣ୍ଣ ହୋଇ ଗାଢ଼ ପିଙ୍ଗଳ ବର୍ଣ୍ଣ ଧାରଣ କରିଥାଏ । ମାତ୍ର ସ୍ତ୍ରୀ (ମାଈ) ମୃଗଗୁଡ଼ିକ ସାଧାରଣତଃ ହଳଦିଆ ବାଦାମୀ ରଙ୍ଗର ହୋଇ ରହନ୍ତି । ପ୍ରତ୍ୟେକ ଅଣ୍ଡିରା କୃଷ୍ଣସାରର ଦୁଇଗୋଟି କୁଣ୍ଡଳାକାରରେ ମୋଡ଼ି ହୋଇଥିବା ଶିଙ୍ଗ ଥାଏ । ପ୍ରତ୍ୟେକ ଶିଙ୍ଗର ମୂଳରେ ଗୋଟିଏ ବୃତ୍ତାକାର ଏବଂ ଉପରପଟକୁ ୫ଟି ମୋଡ଼ା (Spiral) ଥାଏ । ବର୍ଷିକିଆ ମୃଗର ଶିଙ୍ଗ ମୋଡ଼ିମୋଡ଼ିକା ନୁହେଁ । ମାତ୍ର ଦୁଇବର୍ଷ ବେଳକୁ ଶିଙ୍ଗ ମୋଡ଼ି ହେବାକୁ ଆରମ୍ଭ କରି ତୃତୀୟ ବର୍ଷରେ ପୂରା ମୋଡ଼ି ହୋଇଯାଇ ତରଙ୍ଗାୟିତ ଦେଖାଯାଏ । ସାଧାରଣତଃ ମାଈ କୃଷ୍ଣସାରର ଶିଙ୍ଗ ନ ଥାଏ । କେବେ କେବେ ମାଈ ମୃଗର ମଧ୍ୟ ଶିଙ୍ଗ ଉଠେ । ମାତ୍ର ଶିଙ୍ଗାଳ ମାଈ କୃଷ୍ଣସାର କ୍ୱଚିତ୍ ଦେଖିବାକୁ ମିଳନ୍ତି ।

## କୃଷ୍ଣସାରର ଆଚାର ଓ ବ୍ୟବହାର

କୃଷ୍ଣସାରମାନଙ୍କର ବ୍ୟବହାର ଏବଂ ଗତିବିଧି ଅତି ବିଚିତ୍ର ଧରଣର । ଏମାନେ ସାଧାରଣତଃ ଏକାଠି ଦଳ ବାନ୍ଧି ରହିବାକୁ ଭଲପାଆନ୍ତି । ଗୋଟିଏ ଦଳରେ ପ୍ରାୟ ୨୦ଟିରୁ ୩୩ ଟି ପର୍ଯ୍ୟନ୍ତ ମୃଗ ରହିଥାନ୍ତି । ମାତ୍ର ବେଳେବେଳେ ଖାଦ୍ୟ,ପାନୀୟ ଓ ବିଶ୍ରାମ ସ୍ଥାନର ସୁବିଧା ପାଇଲେ ଗୁଡ଼ାଏ ଦଳ ପାଖାପାଖି ରହି ଚରାବୁଲା କରନ୍ତି । ଏଣୁ ଏମାନେ ଏକା ସାଙ୍ଗରେ ଶହ ଶହ ସଂଖ୍ୟାରେ ବୁଲାବୁଲି କରୁଥିବାର ମଧ୍ୟ ଦେଖାଯାଏ । ସାଧାରଣତଃ ବର୍ଷାଦିନେ ପ୍ରତି ମୃଗଦଳରେ ଗ୍ରୀଷ୍ମ ସମୟ ଅପେକ୍ଷା ବେଶି ମୃଗ ଥାନ୍ତି । ଅଣ-ପ୍ରଜନନ ଋତୁରେ (Non-mating season) (ଏପ୍ରିଲ- ଜୁନ ଏବଂ ଡିସେମ୍ବର- ଜାନୁୟାରୀ ) ଗୋଟିଏ ଦଳରେ ପ୍ରାୟ ୩ ରୁ ୫ ପର୍ଯ୍ୟନ୍ତ ଅଣ୍ଡିରା ମୃଗ (Buck) ଏବଂ ୧୮ ରୁ ୨୮ ଟି ମାଈ ମୃଗ (Does), ୩ :୧୮,୫:୨୨ ବା ୫ :୨୮ ଅନୁପାତରେ ରହିଥାନ୍ତି ।

କିନ୍ତୁ ପ୍ରଜନନ ଋତୁରେ ଦଳଗୁଡ଼ିକର ଆକାର ଛୋଟ ଏବଂ ଗୋଟିଏ ଦଳରେ କେବଳ ଗୋଟିଏ ହିଁ ପୂର୍ଣ୍ଣ ବୟଃପ୍ରାପ୍ତ ଅଣ୍ଡିରା ମୃଗ ସହିତ ଅଣ୍ଡିରା ଓ ମାଈମୃଗଙ୍କ ଅନୁପାତ ୧:୮, ୧:୧୧ କିମ୍ବା ୧:୧୪ ରହିଥାଏ । ଅନ୍ୟ ପୁରୁଷ ମୃଗଗୁଡ଼ିକ ଦଳର ବଳୁଆ ପୁରୁଷ ମୃଗ ଦ୍ୱାରା ବିତାଡ଼ିତ ହୋଇଥାନ୍ତି କିମ୍ବା ବଡ଼ ଦଳଟି ଛୋଟ ଛୋଟ ଦଳରେ ବିଭକ୍ତ ହୋଇଥାଏ । ଦଳରେ ଥିବା ସବୁଠାରୁ ବୟସ୍କ ଓ ତୀକ୍ଷ୍ଣ ଦୃଷ୍ଟିଶକ୍ତିସଂପନ୍ନା ମାଈମୃଗ ଦଳର ଦଳପତି ହୋଇଥାଏ । ତାହାର ପ୍ରତିକ୍ରିୟା ଅନୁସାରେ ଦଳର ଅନ୍ୟମାନେ ସତର୍କ ହୁଅନ୍ତି । ବିପଦର ସଂକେତ ମିଳିଲେ ଦଳର ସମସ୍ତ ମୃଗ ଏକାବେଳକେ ପ୍ରଥମେ ଧୀରେ ଧୀରେ ଡେଇଁ ପରେ ଖୁବ୍ ଉଚ୍ଚକୁ ଲମ୍ଫ ଦିଅନ୍ତି । ପରେ ପରେ ଦଳପତି ପଛରେ ଅତି ବେଗରେ ଦୌଡ଼ି ଚାଲିଯାଆନ୍ତି । କୃଷ୍ଣସାର ମୃଗର ଶ୍ରବଣ ଓ ଆଘ୍ରାଣ ଶକ୍ତି ମଧ୍ୟମ ଧରଣର, ଦୃଷ୍ଟିଶକ୍ତି ଖୁବ୍ ତୀକ୍ଷ୍ଣ ଏବଂ ଗତିଶକ୍ତି ମଧ୍ୟ ବେଶ୍ ପ୍ରଖର । ଦୌଡ଼ିବାବେଳେ ଏମାନେ ପ୍ରଥମେ ଲମ୍ଫଡିଆଁ ଓ ତାପରେ ଲମ୍ଫଦେଇ ତ୍ୱରାନ୍ୱିତ ଗତିରେ ଘଣ୍ଟାକୁ ପ୍ରାୟ ୮୦ କିଲୋମିଟର ବେଗରେ ପଥ ଅତିକ୍ରମ କରି ବହୁ ସମୟ ଦୌଡ଼ିପାରନ୍ତି । ଏହିପରି କ୍ଷିପ୍ର ଗତିରେ ଗତି କରିପାରୁଥିବାରୁ ଏମାନେ ବାଘ,ଚିତା ଓ ବଣୁଆ କୁକୁର ଇତ୍ୟାଦି ଆକ୍ରମଣକାରୀଙ୍କ କବଳରୁ ନିଜକୁ ରକ୍ଷା କରିପାରନ୍ତି ।

## ଏକ ଯାଯାବର ପ୍ରାଣୀ



ଅଣ୍ଡିରା କୃଷ୍ଣସାର

କୃଷ୍ଣସାର ଏକ ଦିବାଚର ତୃଣଭୋଜୀ ପ୍ରାଣୀ । ଘାସ ଓ ଧାନଗଛ ଆଦି ଶସ୍ୟ ଏମାନଙ୍କର ପ୍ରଧାନ ଖାଦ୍ୟ । ମାତ୍ର ବେଳେବେଳେ ଏମାନେ ଶସ୍ୟ କ୍ଷେତ୍ରରେ ପଶି ଧାନ, ଗହମ, ମୁଗ, ଚଣା ଓ ସୋରିଷ ଇତ୍ୟାଦି ଫସଲ ଖାଇ ଚାଷୀର କ୍ଷତି ଘଟାଇଥାଆନ୍ତି । ଏମାନେ ସାଧାରଣତଃ ସକାଳୁ ମଧ୍ୟାହ୍ନ ଯାଏଁ ଚରି (ଖାଦ୍ୟ ଖାଇ ) ତା'ପରେ ଉଚ୍ଚ ଛାଇ ଜାଗା ଦେଖି ବିଶ୍ରାମ ନେଇ, ପୁଣି ବେଳବୁଡ଼ ଆଡ଼କୁ ଚରାବୁଲା କରନ୍ତି । ପାଣିର ମୁଖ୍ୟ ଉତ୍ସଠାରୁ ୨/୩ କିଲୋମିଟରରୁ ଅଧିକ ଦୂରରେ କୃଷ୍ଣସାର ରୁହେ ନାହିଁ । କାରଣ ଏହାକୁ ଦିନକୁ ଦୁଇଥରରୁ ଅଧିକ ପାଣି ପିଇବା ଦରକାର ପଡେ । ଏଣୁ ବେଳେବେଳେ ଏମାନେ ପାଣି ଓ ସବୁଜ ଘାସ ପାଇଁ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଆନ୍ତି । ବିଶେଷତଃ ରାଜସ୍ଥାନର ଯୋଧପୁର ନିକଟରେ ଥିବା କୃଷ୍ଣସାର ଗୁଡ଼ିକ ଏପରି ସ୍ଥାନ ବଦଳାନ୍ତି । ଏ ସବୁ ସତ୍ତ୍ୱେ ଗ୍ରୀଷ୍ମକାଳରେ କିଛିଦିନ ବିନା ପାଣିରେ ମଧ୍ୟ ଏମାନେ ବଞ୍ଚି ରହିପାରନ୍ତି । ଏମାନଙ୍କର ହାରାହାରି ବୟସ ସୀମା ପ୍ରାୟ ୧୨ ବର୍ଷ ।

## ପ୍ରଜନନ ଓ ବ୍ୟବହାର

କୃଷ୍ଣସାର ମୃଗମାନଙ୍କର ମଳତ୍ୟାଗ କରିବା ଅଭ୍ୟାସ ବଡ଼ ଅଦ୍ଭୁତ । ନିଜର ଅଞ୍ଚଳ ଭିତରେ ଥିବାଯାଏଁ ଏମାନେ ସାଧାରଣତଃ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ମଳତ୍ୟାଗ କରନ୍ତି । ମୃଗଟିଏ ମଳତ୍ୟାଗ ବେଳେ ପ୍ରଥମେ ପୂର୍ବର ମଳଗଦାକୁ ଶୁଙ୍ଘି ପରେ ନିଜର ଆଗଗୋଡ଼ ସାହାଯ୍ୟରେ ଥରେ ବା ଦୁଇଥର ସେହି ମଳକୁ ଆଘାତ କରେ । ପୁଣି ମୁଣ୍ଡ ଉପରକୁ ଉଠାଇ ଶିଙ୍ଗକୁ ବେକସହ ସମାନ୍ତରାଳ କରି ଶରୀରର ଆଗ ଅଂଶକୁ କଠିନ ଭାବେ ସିଧା କରି ଠିଆ ହୁଏ । ଠିକ୍ ଏହି ସମୟରେ ପଛ ଗୋଡ଼ ଦୁଇଟି ଟାଣି ହୋଇ

ପଛକୁ ରହିଥାଏ । ଏହିପରି ଭବରେ ସେ ପରିସ୍ରା କରେ ଏବଂ ପରେ ପରେ ଗୋଇଠିରେ ଅଳ୍ପ ତଳକୁ ବସି ମଳତ୍ୟାଗ କରିଥାଏ । ନିଜର ଅଞ୍ଚଳ ବ୍ୟତୀତ ଅନ୍ୟ ସ୍ଥାନରେ ମଳତ୍ୟାଗ କଲେ ଏପରି ଆଚରଣ ଦେଖାଯାଏ ନାହିଁ ।

କୃଷ୍ଣସାରମାନଙ୍କର ବର୍ଷରେ ଦୁଇଗୋଟି ସମୟରେ ଯଥା ମାର୍ଚ୍ଚ- ଏପ୍ରିଲ ଓ ଅଗଷ୍ଟ -ଅକ୍ଟୋବର ମାସରେ ଯୌନମିଳନ ଘଟିଥାଏ । ଏହି ପ୍ରଜନନ ଋତୁରେ ପୁରୁଷ ମୃଗ ଏକ ନିର୍ଦ୍ଦିଷ୍ଟ ସ୍ଥାନ ନିରୂପଣ କରି ନିକଟରେ ଥିବା ଗଛର ଗଣ୍ଡିରେ ମୁହଁକୁ ବାରମ୍ବାର ଘଷେ । ଫଳରେ ତାର ଆଖିତଳେ ଥିବା ଗ୍ରନ୍ଥିରୁ ଏକପ୍ରକାର ତରଳ ତେଲିଆ ପଦାର୍ଥ ବାହାରି ନିକଟରେ ଥିବା ଘାସ ବା ବୁଦାଗୁଡ଼ିକରେ ଲାଗିଥାଏ । ସେହି ତରଳ ପଦାର୍ଥର ସୁଗନ୍ଧ ଜାଣିପାରି ଅନ୍ୟ ପୁରୁଷ ମୃଗ ସେ ସ୍ଥାନକୁ ଆସେ ନାହିଁ । ଯଦିବା କେବେ ଆସେ ତେବେ ଉଭୟଙ୍କ ମଧ୍ୟରେ ଲଢ଼େଇ ହୁଏ । ସେତିକିବେଳେ ମୃଗ ମୁଣ୍ଡକୁ ଟେକି ପାଟିକୁ ପାକୁଳି କଲାପରି ଏକପ୍ରକାର ଡାକଦେଇ ପରସ୍ପରକୁ ଲଢ଼େଇ କରିବା ପାଇଁ ଆହ୍ୱାନ ଦିଏ । ଯେଉଁ ପୁରୁଷ ମୃଗ ଲଢ଼େଇରେ ଜୟଲାଭ କରେ ସେ ସେହି ସ୍ଥାନ ଅଧିକାର କରି ରହେ । ବେଳେବେଳେ ଏପରି ଲଢ଼େଇରେ କୌଣସି ମୃଗର ଗୋଟିଏ ଶିଙ୍ଗ ଭାଙ୍ଗିଯାଇ ମୃଗଟି ଏକଶିଙ୍ଗା ହୋଇ ରହିଯାଏ । ଏହି ପ୍ରଜନନ ଋତୁରେ ବେଳେବେଳେ ଗୋଟିଏ ଶିଙ୍ଗାଳ ତାର ସବୁଠାରୁ ପସନ୍ଦ ମାଈ ମୃଗଟିକୁ ଧରି ଦଳ ଛାଡ଼ି ଅନ୍ୟତ୍ର ଚାଲିଯାଏ ।

ପ୍ରଜନନ ଋତୁ ପରେ ଦଳର ସମସ୍ତ ମୃଗ ପୁଣି ଏକାଠି ମିଳିମିଶି ରହନ୍ତି । ମାଈ କୃଷ୍ଣସାର ତିନିବର୍ଷରୁ ପାଞ୍ଚବର୍ଷ ଭିତରେ ଛୁଆ ଦେବାକୁ ସକ୍ଷମ ହୁଏ ଏବଂ ୫/୬ ମାସ ଗର୍ଭଧାରଣ ପରେ ଥରକେ ଗୋଟିଏ କିମ୍ବା ଦୁଇଟି ଛୁଆ ଜନ୍ମ ଦେଇଥାଏ । ଅନ୍ୟ ପ୍ରାଣୀମାନଙ୍କର ଦୃଷ୍ଟିକୁ ଏଡ଼ାଇବା ପାଇଁ ମା ମୃଗ ଦଳରୁ ଅଲଗା ହୋଇ ବଡ଼ ବଡ଼ ଘାସ ଓ ଖାଲୁଆ ଥିବା ଏକ ନିର୍ଜନ ସ୍ଥାନରେ ଛୁଆ ଜନ୍ମ କରିଥାଏ । ପ୍ରଥମ ଅବସ୍ଥାରେ ଛୁଆଟି ଠେକୁଆ ପରି ନିଜ କାନକୁ ଦେହସହ ମିଶାଇ ଏପରି ନିର୍ଜୀବ ପରି ପଡ଼ିରହିଥାଏ ଯେ, ମାଆର ଅନୁପସ୍ଥିତିରେ ଛୁଆଟିକୁ କେହି ଦେଖିପାରେ ନାହିଁ । ପ୍ରାୟ ଏକ ସପ୍ତାହ ପରେ ଉଭୟ ମା ଓ ଛୁଆ ପୁଣି ନିଜ ଦଳକୁ ଫେରିଆସି ଏକାଠି ଚରାବୁଲା କରନ୍ତି ।

## କୃଷ୍ଣସାରର ସୁରକ୍ଷା ଓ ସଂରକ୍ଷଣ

ଏକଦା ଭାରତରେ ବହୁଳ ସଂଖ୍ୟାରେ ଦେଖାଯାଉଥିବା ଏହି ବିଚିତ୍ର ମୃଗଙ୍କ ସଂଖ୍ୟା କମିବାରେ ଲାଗିଛି । ଏହି ନିରୀହ ତଥା ସୁନ୍ଦର ଜୀବଟିକୁ ବଞ୍ଚାଇ ରଖିବାକୁ

ହେଲେ ଜନସାଧାରଣଙ୍କର ତତ୍ପରତା, ଲୋକଙ୍କ ଆଧ୍ୟାତ୍ମିକ ମନୋଭାବ ତଥା ମୃଗ ବସତିଗୁଡ଼ିକ ନିକଟରେ ସ୍ଥାୟୀ ପୁଷ୍କରିଣୀ ବା ଛୋଟ ଛୋଟ ଜଳଭଣ୍ଡାରର ଖନନ, ଜଙ୍ଗଲ ଓ ତାହାର ଆଖପାଖ ଅଞ୍ଚଳର ଉପଯୁକ୍ତ ସୁରକ୍ଷା ଏବଂ ବନ୍ୟପ୍ରାଣୀ ଶିକାର ସମ୍ପୂର୍ଣ୍ଣ ନିଷେଧ ତଥା ଦଣ୍ଡନୀୟ କରିବା ଏକାନ୍ତ ପ୍ରୟୋଜନ । ଆମ ରାଜ୍ୟ ତଥା ଦେଶର ଅନ୍ୟ ରାଜ୍ୟମାନଙ୍କରେ ଏମାନଙ୍କ ପାଇଁ ଅଭୟାରଣ୍ୟ ସ୍ଥାପନ ଓ ଜାତୀୟ ଜୀବ ଉଦ୍ୟାନଗୁଡ଼ିକରେ ସୁରକ୍ଷା ପ୍ରଦାନ କରି ଉପରୋକ୍ତ କେତେକ ବିଷୟ ପ୍ରତି ଦୃଷ୍ଟି ଦିଆଯାଇଛି । ତଥାପି ସମସ୍ତ ବନ୍ୟଜନ୍ତୁଙ୍କ ସୁରକ୍ଷା କାର୍ଯ୍ୟକ୍ରମ ଉଭୟ ସରକାରୀ ତଥା ବେସରକାରୀ ସ୍ତରରେ ଆହୁରି ବ୍ୟାପକ ଏବଂ ସୁଦୃଢ଼ ହେଲେ କୃଷ୍ଣସାର ବସତିଗୁଡ଼ିକ ବେଶ୍ ଦର୍ଶନୀୟ ହୋଇ ଦେଶବିଦେଶର ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରିପାରିବ ଏଥିରେ ସନ୍ଦେହ ନାହିଁ ।



# ବରଫ ଦେଶର କାହାଣୀ

## ପୃଥିବୀ ମାନଚିତ୍ରରେ ଦକ୍ଷିଣ ମେରୁ

ପୃଥିବୀ ମାନଚିତ୍ରର ତଳଆଡ଼କୁ ଲକ୍ଷ୍ୟ କଲେ ଯେଉଁ ମହାଦେଶଟି ଦେଖିପାରିବ, ତାରି ନାଁ ଆଣ୍ଟାର୍କଟିକା । ସେହି ସ୍ଥାନଟି ବରଫରେ ଭରା । ବରଫ ଓ ଥଣ୍ଡା ଯୋଗୁଁ ସେହି ମହାଦେଶକୁ ଯିବା ସହଜ ନୁହେଁ । ଆମ ଭାରତୀୟ ବୈଜ୍ଞାନିକମାନେ ସେହି ଜାଗା ଭ୍ରମଣରେ ଯାଇଛନ୍ତି । ଆଣ୍ଟାର୍କଟିକାର ଚାରିଆଡ଼େ ବରଫ – ଯୁଆଡ଼େ ଚାହିଁବ ଖାଲି ବରଫର ଗଦା । କେଉଁଠି ବରଫ ଏକ ମିଟର ବହଳର ଗଦା ହୋଇଛି ତ ଆଉ କେଉଁଠି ଶହ ଶହ ମିଟର ଉଞ୍ଚା ପାହାଡ଼ ଭଳି ।

## ବରଫ ଦେଶକୁ ଯାତ୍ରା

ପ୍ରଥମେ ଆମ ଭାରତୀୟ ବୈଜ୍ଞାନିକଦଳ ଗୋଟିଏ ପାଣିଜାହାଜରେ ଯାତ୍ରା କରିଥିଲେ । ଜାହାଜଟି ଫିନ୍‌ଲାଣ୍ଡରୁ ଅଣାଯାଇଥିଲା । ଫିନ୍‌ପୋଲାରିସ୍ ତା'ର ନାମ । ଏ ଜାହାଜ ସାଧାରଣ ଜାହାଜ ପରି ନୁହେଁ । ଏହାର ତଳଭାଗ ଏପରି ଗଢ଼ା ଯେ ବିରାଟ ଉଚ୍ଚରେ ଗଦା ହୋଇଥିବା ବରଫଗୁଡ଼ିକୁ କାଟି କାଟି ଆଗେଇ ଯାଇଥାଏ । ବାସ୍ତବିକ ଏହାର କାର୍ଯ୍ୟ ବଡ଼ ଅଦ୍ଭୁତ ଧରଣର । ଏ ଜାହାଜ ସାହାଯ୍ୟରେ ବୈଜ୍ଞାନିକମାନେ କଷ୍ଟର ସହ ଯାତ୍ରା କରିଥିଲେ । ଭାରତର ଗୋଆ ନାମକ ବନ୍ଦରରୁ ସେମାନେ ଯାତ୍ରା ଆରମ୍ଭ କରିଥିଲେ ।

## ବରଫ ଦେଶର ପ୍ରାଣୀ

ଏକ ଅଞ୍ଚଳରେ ବରଫଯୋଗୁଁ ଅଳ୍ପ କେତେକ ଜୀବଜନ୍ତୁ ଦେଖାଯାଆନ୍ତି । କିନ୍ତୁ ସେମାନେ ଏଠାରେ ବା ସାଧାରଣଭାବରେ ଅନ୍ୟ ସ୍ଥାନରେ ଦେଖିବାକୁ ମିଳନ୍ତି ନାହିଁ । ସେଗୁଡ଼ିକ ହେଉଛନ୍ତି ତିମି, ସିନ୍ଧୁଘୋଟକ ଓ ପେଙ୍ଗୁଇନ୍ ନାମକ ପକ୍ଷୀ । ଏହା ବ୍ୟତୀତ ଚିଙ୍ଗୁଡ଼ି ପରି ପାଣିରେ ଏକପ୍ରକାର ଛୋଟ ଛୋଟ ପ୍ରାଣୀ ଦେଖାଯାନ୍ତି । ତାଙ୍କୁ କ୍ରିଲ (Krill) ବୋଲି କୁହାଯାଏ । ଏଗୁଡ଼ିକ ଏତେ ପରିମାଣର ଅଛନ୍ତି ଯେ ଏମାନେ କିଛି ପରିମାଣରେ ମଣିଷର ଖାଦ୍ୟ ସମସ୍ୟା ସମାଧାନ କରିପାରିବେ ବୋଲି ଆଶା କରାଯାଏ ।

ପେଙ୍ଗୁଇନ୍ ଏକ ଅଦ୍ଭୁତ ପକ୍ଷୀ । ଏ ପକ୍ଷୀଟିର ଆକାର ବିରାଟ । ଏହାକୁ କୁହାଯାଏ 'ଆଣ୍ଟାର୍କଟିକାର ସମ୍ରାଟ ' । କିନ୍ତୁ ଦେହ ତୁଳନାରେ ଏହାର ଡେଣାଟି ବହୁତ ସାନ । ତେଣୁ ସେ ଉଡ଼ିପାରେ ନାହିଁ । ଏହାର ଚେହେରା ଭାରି ମନମତାଣିଆ । ଦୂରରୁ ଦେଖିଲେ ଜଣେ ଭଦ୍ରଲୋକ କୋଟ୍ ଓ ଟାଇ ପିନ୍ଧି ଛିଡ଼ାହେବା ଭଳି ଦିଶେ । ଏଥିପାଇଁ ପେଙ୍ଗୁଇନ୍‌କୁ 'ଆଣ୍ଟାର୍କଟିକାର ଜୋକର' ବୋଲି କୁହାଯାଏ । ଦେହର ଚମଡ଼ା ଓ ପରଗୁଡ଼ିକ ଯୋଗୁଁ ସେ ଥଣ୍ଡା ଓ ବରଫ ବର୍ଷା ସହିପାରେ ।



ପେଙ୍ଗୁଇନ ଓ ଛୁଆ

## ଆଣ୍ଟାର୍କଟିକାରେ ବରଫର ପରିସ୍ଥିତି

ଏହି ମହାଦେଶଟି ପୃଥିବୀର ଦକ୍ଷିଣ ଭାଗରେ ରହିଛି । କିନ୍ତୁ ମଜାର କଥା ହେଲା ପ୍ରଶାନ୍ତ ମହାସାଗର ଓ ଭାରତ ମହାସାଗର ମହାଦେଶଟିକୁ ଘେରି ରହିଛି । ଯେଉଁଠି ଏ ତିନୋଟି ମହାସାଗର ମିଶିଛନ୍ତି ସେଠାରେ ଏତେ ସ୍ରୋତ ଯେ ତାହା ତୁମେ କଳ୍ପନା କରିପାରିବ ନାହିଁ । ଏହି ସ୍ରୋତଯୋଗୁଁ ଆମ ବୈଜ୍ଞାନିକଙ୍କ ଜାହାଜ ଯିବା ବହୁତ କଷ୍ଟକର ହୋଇଥିଲା । ଏହି ମହାଦେଶର ସବୁ ବରଫ ସମ୍ପୂର୍ଣ୍ଣରୂପେ ତରଳିବା ଅସମ୍ଭବ । କାରଣ ସୂର୍ଯ୍ୟ ଏଠାରେ ବହୁତ କମ୍ ସମୟପାଇଁ ଦେଖାଯାଆନ୍ତି । ବରଫସବୁ ତରଳିବା ପାଇଁ ବର୍ଷ ବର୍ଷ ଲାଗିପାରେ । ତେଣୁ ଏପରି ଅବସ୍ଥାରେ ଏ ମହାଦେଶରେ କିପରି ରହିହେବ, ସେଥିପାଇଁ ବୈଜ୍ଞାନିକମାନେ ଯୋଜନା ଚଳାଇଛନ୍ତି । ସେଠାରୁ ଦୁଇ ଥର ଯାତ୍ରା କରିବା ପରେ ବୈଜ୍ଞାନିକମାନେ ଗବେଷଣାର ସୁବିଧାପାଇଁ ସେଠାରେ ଏକ ସ୍ଥାୟୀ ଘର ନିର୍ମାଣ କରିଛନ୍ତି ।

## ଆଣ୍ଟାର୍କଟିକା ଯାତ୍ରାର ଉଦ୍ଦେଶ୍ୟ ଓ ଲକ୍ଷ୍ୟ

କିନ୍ତୁ ଏତେ ପଇସା ଖର୍ଚ୍ଚ କରି ଏ ମହାଦେଶକୁ ଯିବା ପଛରେ କି ଉଦ୍ଦେଶ୍ୟ ଥାଇପାରେ ?

ପ୍ରଥମ କଥା ହେଲା, ଏ ମହାଦେଶକୁ ଅନେକ ବୈଜ୍ଞାନିକ ଯାଇ ବିଫଳ ହୋଇ ଫେରିଆସିଛନ୍ତି । ଦ୍ୱିତୀୟତଃ, ବୈଜ୍ଞାନିକମାନେ ଏ ସ୍ଥାନରେ କ'ଣ କ'ଣ ଅଛି, ତାହା ଜାଣିବାକୁ ଖୁବ୍ ଆଗ୍ରହୀ । ତୃତୀୟତଃ, ମହାଦେଶଟିକୁ କେହି ଏ ପର୍ଯ୍ୟନ୍ତ ଅଧିକାର କରିପାରି ନାହାନ୍ତି । ତେଣୁ ଯେଉଁ ଦେଶ ଯିବାଆସିବା କରି ସେଠାରେ ବସତି ସ୍ଥାପନ କରିପାରିବ, ସେ ଦେଶପକ୍ଷେ ଅଧିକାର କରିବା ସମ୍ଭବ ହେବ । ଚତୁର୍ଥତଃ, ଆମ ଦେଶରେ ଯେପରି ଖାଦ୍ୟ ସମସ୍ୟା, ତୈଳ ସମସ୍ୟା ଓ ଜାଳେଣି ସମସ୍ୟା ଲାଗିରହିଛି ସେଗୁଡ଼ିକୁ ସମାଧାନ କରିବାରେ ଏ ମହାଦେଶ ସହାୟକ ହୋଇପାରିବ ବୋଲି ଆଶା କରାଯାଏ । ମୁଖ୍ୟତଃ ଏହିସବୁ କାରଣ ଯୋଗୁଁ ଆଣ୍ଟାର୍କଟିକା ଆବିଷ୍କାର ପାଇଁ ଭାରତୀୟ ବୈଜ୍ଞାନିକମାନେ ତତ୍ପର ହୋଇ ପଡ଼ିଛନ୍ତି । ସମୟ ଆସିବ ଆଣ୍ଟାର୍କଟିକାକୁ ସହଜରେ ଯାଇଆସି ହେବ । ଆଣ୍ଟାର୍କଟିକା ନିକଟସ୍ଥ ସାଗରରେ ୫୫ ଡିଗ୍ରୀରୁ ୬୬ ଡିଗ୍ରୀ ଅକ୍ଷାଂଶ ପର୍ଯ୍ୟନ୍ତ ଅଞ୍ଚଳରେ ପ୍ରଚୁର କ୍ରିଲ୍ ମିଳେ । କ୍ରିଲ୍‌ରୁ ପ୍ରଚୁର ପ୍ରୋଟିନ୍ ମିଳେ । କ୍ରିଲ୍ ଦେଖିବାକୁ ଛୋଟ ଚିଙ୍ଗୁଡ଼ି ଭଳି- ଏକ ଇଞ୍ଚରୁ ବି ସାନ । ଏହି ଅଞ୍ଚଳ କ୍ରିଲ୍ ପାଇଁ ପ୍ରସିଦ୍ଧ । ଏହାର ଉତ୍ପାଦନ ମଧ୍ୟ ବହୁତ ଶୀଘ୍ର ହୁଏ । ଏ ଅଞ୍ଚଳର ପ୍ରାଣୀ ଅର୍ଥାତ୍ ପେଙ୍ଗୁଇନ୍ ଏବଂ ତିମି କ୍ରିଲ୍ ଖା'ନ୍ତି । କ୍ରିଲ୍‌କୁ କିନ୍ତୁ ସିଧାସଳଖ ଖାଇ ହେବନି, କାରଣ ଏଥିରେ ପ୍ରଚୁର ଫ୍ଲୋରିନ୍ ଅଛି । ତେଣୁ ଏହାର ଫ୍ଲୋରିନ୍ ଅଂଶ ବାହାର କରି ଦେବାକୁ ହୁଏ । କିନ୍ତୁ ଏହା ଛୋଟ ଯେ ଫ୍ଲୋରିନ୍ ଅଂଶ ବାହାର କରି ଦେଲାପରେ ମଧ୍ୟ ଏହାକୁ ସେମିତି ଖାଇ ହେବନି । ତେଣୁ ଏହାକୁ ଚିପୁଡ଼ି ଏହାର ରସ ବାହାର କରି ଆମ୍ବସଢ଼ା ଭଳି ଖାଇବାକୁ ପଡ଼େ । ଏହାର ପ୍ରସେସିଂ ଭାରି କଷ୍ଟସାଧ୍ୟ । ତେବେ



ମାନଚିତ୍ରରେ ଆଣ୍ଟାର୍କଟିକା

ଜାପାନ ଏବଂ ପୋଲାଣ୍ଡ ଆଦି କେତେକ ଦେଶ ବ୍ୟାବସାୟିକ ଭିତ୍ତିରେ କ୍ରିଲ୍ ଉତ୍ପାଦନ ଆରମ୍ଭ କରିଛନ୍ତି ।

ଆଣ୍ଟାର୍କଟିକା ପାଖରେ କ୍ରିଲ୍ ଧରି ତାକୁ ପ୍ରସେସ୍ କରି ବିଦେଶରେ ବିକ୍ରୟବ୍ୟବସ୍ଥା କରିବା କଷ୍ଟସାଧ୍ୟ ଏବଂ ପ୍ରଚୁର ବ୍ୟୟସାଧ୍ୟ । ତେଣୁ ଏ ଦିଗରେ ଆହୁରି ଚିନ୍ତା କରି ଏଥିରେ ହାତ ଦେବା ଉଚିତ ।

୧୯୬୧ ରୁ ୧୯୯୧ ପର୍ଯ୍ୟନ୍ତ ଏହି ୩୦ ବର୍ଷର ଚୁକ୍ତିକାଳ ମଧ୍ୟରେ ବି କେତେକ ସମୟରେ ବିଭିନ୍ନ ଦେଶର ବୈଜ୍ଞାନିକମାନଙ୍କ ମଧ୍ୟରେ ମତଭେଦ ହୋଇଛି । ସେଠାରେ ଆନ୍ତର୍ଜାତିକ ସହଯୋଗିତା ରହି ଆସିଛି । ତଥ୍ୟର ଆଦାନ ପ୍ରଦାନ ହେଉଛି । କିନ୍ତୁ ସେଠି ଅର୍ଥନୈତିକ ଉପଯୋଗ ବିଶେଷକରି ଖଣିଜ ପଦାର୍ଥ ଏବଂ ଗ୍ୟାସ୍ ଆରମ୍ଭ ଉତ୍ପାଦନ ହେବା ମାତ୍ରେ ସମସ୍ୟା ଆରମ୍ଭ ହେବ । ମୁଖ୍ୟତଃ ଦୁଇଟି ପ୍ରଶ୍ନକୁ ନେଇ ଏଠି ସମସ୍ୟା ଦେଖାଦେବାର ସମ୍ଭାବନା ଯଥେଷ୍ଟ । ପ୍ରଥମତଃ କେଉଁ ଦେଶ କେଉଁଠି ତେଲ ଏବଂ ଖଣିଜ ପଦାର୍ଥ ଉତ୍ପାଦନ କରିବ ? ଦ୍ୱିତୀୟତଃ ଉତ୍ପାଦିତ ପଦାର୍ଥର ବିନିଯୋଗ କିଏ କରିବେ ?

## ଆଣ୍ଟାର୍କଟିକା ଓ ଭବିଷ୍ୟତ

ଆଉ ଗୋଟିଏ କଥା ଅଛି । ଆଣ୍ଟାର୍କଟିକା ଚୁକ୍ତି ହେବା ପୂର୍ବରୁ ୮ ଟି ଦେଶ ଆଣ୍ଟାର୍କଟିକା ଉପରେ ସାର୍ବଭୌମତ୍ୱ ଦାବି କରିଥିଲେ । ସେମାନେ ଆଣ୍ଟାର୍କଟିକା ମାନଚିତ୍ର ନେଇ କେକ୍ କାଟିଲା ପରି ନିଜ ନିଜ ଭିତରେ ଭାଗ କରିନେଲେ । ସେ ଦେଶଗୁଡ଼ିକ ହେଲା - ନରଓ୍ୱେ, ବେଲଜିୟମ୍, ଇଂଲଣ୍ଡ,ଫ୍ରାନ୍ସ, ପଶ୍ଚିମ, ଜର୍ମାନୀ, ଆଫ୍ରିକା,ଚିଲି ଓ ଆର୍ଜେଣ୍ଟିନା । କେତେକ କ୍ଷେତ୍ରରେ ଗୋଟିଏ ସ୍ଥାନକୁ ଦୁଇ ବା ତତୋଽଧିକ ବିଦେଶି ଦାବି କରୁଛନ୍ତି । ଆଣ୍ଟର୍କଟିକା ଚୁକ୍ତି ଅନୁସାରେ ଏ ଅଞ୍ଚଳ ଉପରେ କାହାରି ଆଇନଗତ ଦାବି ନାହିଁ । ବର୍ତ୍ତମାନ ଭାରତ ଯେଉଁ ଅଞ୍ଚଳରେ କାର୍ଯ୍ୟ କରୁଛି ସେ ଅଞ୍ଚଳ ତଥାକଥିତ ନରଓ୍ୱେ ଅଞ୍ଚଳ ଅନ୍ତର୍ଭୁକ୍ତ । ନରଓ୍ୱେ ଏହାର ପ୍ରତିବାଦ କରୁ ନାହିଁ । କିନ୍ତୁ ସେମାନେ ନିଜର ଦାବି ପ୍ରତ୍ୟାହାର ମଧ କରି ନାହାନ୍ତି । ସେମାନେ କେବଳ ଚୁପଚାପ ରହିଛନ୍ତି । ଯେଉଁ ମୁହୂର୍ତ୍ତରେ ଆଣ୍ଟାର୍କଟିକାର ଅର୍ଥନୈତିକ ଉପଯୋଗ ଆରମ୍ଭ ହେବ ଏସବୁ ସମସ୍ୟା ମୁଣ୍ଡ ଟେକିବ । ଭବିଷ୍ୟତରେ ଏଠୁ ତେଲ ଏବଂ ଗ୍ୟାସ୍ ମିଳିପାରେ । ଏଥିପାଇଁ ଆଣ୍ଟାର୍କଟିକା ଭିତରକୁ ଯିବା ଦରକାର ନାହିଁ । ବମ୍ବେହାଇ ଭଳି ଉପକୂଳରେ ମଧ ମିଳିପାରେ । ତେଣୁ ସେଠି ଯଦି ବିରାଟ ଆକାରର ଗଠନ କରାଯାଏ ତେବେ ଏହା ଲାଭଦାୟକ ମଧ ହୋଇପାରେ । କିନ୍ତୁ ଏପର୍ଯ୍ୟନ୍ତ ସେ ବିଷୟରେ କାମ ହୋଇନି,ତେଣୁ

ନିଶ୍ଚିତ ଭାବରେ କିଛି କହିହେବନି । ଗ୍ୟାସ୍ ଏବଂ ତେଲ ବ୍ୟତୀତ କୋଇଲା,ତମ୍ବା ଓ ଇଉରେନିୟମ ମଧ୍ୟ ମିଳିପାରେ । ଆଣ୍ଟାର୍କଟିକା ଚୁକ୍ତିରେ ସ୍ପଷ୍ଟ ଭାବରେ ମନା କରାଯାଇଛି ଯେ ଏଠାରେ କୌଣସି ପ୍ରକାର ସାମରିକ ପରୀକ୍ଷା ନିରୀକ୍ଷା ବା ଆଣବିକ ପରିତ୍ୟକ୍ତ ପଦାର୍ଥକୁ ରଖାଯାଇପାରିବ ନାହିଁ । ଏହାର ପରିବେଶକୁ ନଷ୍ଟ କରାଉଛି କିଛି କାମ କରିବା ମଧ୍ୟ ନିଷିଦ୍ଧ; ଏପରିକି ପେଙ୍ଗୁଇନ୍ ମାନେ ରହୁଥିବା ଅଞ୍ଚଳ ନିକଟରେ ରହଣିସ୍ଥାନ ତିଆରି କରି ସେମାନଙ୍କୁ ବିରକ୍ତ କରିବା ମଧ୍ୟ ମନା । କିନ୍ତୁ ଯେଉଁ ମୁହୂର୍ତ୍ତରୁ ଏଠାରେ ଅର୍ଥନୈତିକ ଉପଯୋଗ (Exploitation) ଆରମ୍ଭ ହେବ,ପରିବେଶ ଠିକ୍ ରଖିବା କଷ୍ଟସାଧ୍ୟ ହୋଇପଡ଼ିବ ।

## ଆଣ୍ଟାର୍କଟିକା ଅଭିଯାନର ପ୍ରସ୍ତୁତି କେମିତି ହୁଏ ?

ଜାମ୍ମୁ କାଶ୍ମୀରର ଦୋଯିଲାପାସ୍‌ରେ ଗୋଟେ ବରଫ ପାହାଡ଼(Glacier) ଅଛି । ସେଠି ଆଣ୍ଟାର୍କଟିକା ପରିବେଶ ସହିତ ଖାପ ଖୁଆଇବା ପାଇଁ ୭/୮ ଦିନ ପ୍ରଶିକ୍ଷଣ ଦିଆଯାଏ ।

୪ର୍ଥ ଅଭିଯାନ କାଳରେ ୩ ଟି ବିପଜ୍ଜନକ ଘଟଣା ଘଟିଥିଲା । ଜାହାଜରେ ଗଲାବେଳେ ତାହା ସିଧାସଳଖ ଆଣ୍ଟାର୍କଟିକାରେ ପହଞ୍ଚେନି । ତା' ପୂର୍ବରୁ ବରଫର ବାଧା ଥାଏ । ଏ ବରଫ ହେଲା ବରଫାବୃତ ସମୁଦ୍ରକୂଳ । ଫେବୃଆରୀ ଶେଷ ପର୍ଯ୍ୟନ୍ତ ଏହି ବରଫ ଧୀରେ ଧୀରେ ତରଳେ । କିନ୍ତୁ ସେ ପର୍ଯ୍ୟନ୍ତ ଆଗେ ଅପେକ୍ଷା କରିବା ସମ୍ଭବ ନୁହେଁ । କାରଣ ପୁଣି ମାର୍ଚ୍ଚ ମାସଠାରୁ ସମୁଦ୍ରକୂଳ ବରଫ ହେବା ଆରମ୍ଭ ହୋଇଯାଏ । ସେଠି ଡିସେମ୍ବର ମାସରେ ସବୁଠାରୁ କମ ବରଫ ଥାଏ । କିନ୍ତୁ ତଥାପି ପ୍ରାୟ ୬୦ - ୭୦ କି.ମି. ବରଫ ଥାଏ ।


ଦଳଗତ ଭାବେ ଆଣ୍ଟାର୍କଟିକାରେ ପେଙ୍ଗୁଇନ୍

କାର୍ଯ୍ୟସ୍ଥଳରେ ନିରାପଦରେ ଏବଂ ଠିକ୍ ସମୟରେ ମାଲପତ୍ର ପହଞ୍ଚାଇବା ହେଲା ଗୋଟିଏ ଅଭିଜାନର ସାଫଲ୍ୟ ପାଇଁ ଗୁରୁତ୍ୱପୂର୍ଣ୍ଣ ଜିନିଷ । କାରଣ ମାଲପତ୍ର

ବୋହି ନେବାପାଇଁ ପ୍ରଚୁର ଲୋକଶକ୍ତି ନ ଥାଏ । ତା'ପରେ ଏକାସଙ୍ଗରେ ବିଭିନ୍ନ ସ୍ଥାନରେ କାମ ହୁଏ । ପୁଣି ଗୋଟେ ଜାଗାରେ ଜିନିଷପତ୍ର ଗଦାକରି ୨୪ ଘଣ୍ଟାରୁ ବେଶି ରଖିହେବନି । ସବୁତକ ବରଫ ଆବୃତ ହୋଇଯିବ । ତେଣୁ କାମର ମାତ୍ର ୨୪ ଘଣ୍ଟା ପୂର୍ବରୁ ଜିନିଷପତ୍ର ପହଞ୍ଚିବା ଦରକାର । ତା'ପରେ ମଧ ହୋଇପାରିବନି । ସୁତରାଂ ସ୍ଲେଜରେ ଜିନିଷପତ୍ର ନେବା ଠିକ୍ ହୋଇଥାଏ । ପୂର୍ବରୁ କୌଣସି ଭାରତୀୟ ଅଭିଯାତ୍ରୀଦଳ ଏହା କରି ନ ଥିଲେ । ରୁଷିଆ ଓ ନିଉଜିଲାଣ୍ଡ ଆଦି କେତେକ ଦେଶ କରିଥିଲେ । କିନ୍ତୁ ଏହା ଭୀଷଣ ବିପଦଜନକ । ପୂର୍ବରୁ ଅନେକ ଦୁର୍ଘଟଣା ଏବଂ ପ୍ରାଣହାନି ମଧ ହୋଇଛି, ତଥାପି ଏକ ସୁଯୋଗ ନିଆଯାଇଥିଲା । ଦି'ଦିନ ସବୁ ଠିକ୍ ଚାଲିଲା । କିନ୍ତୁ ଦି'ଦିନ ପରେ ଯେତେବେଳେ ସ୍ଲେଜରେ ଜିନିଷପତ୍ର ଲଦା ହୋଇସାରିଲାଣି । ହଠାତ୍ ଦେଖାଗଲା ଯେ ବରଫରେ ଫାଟ ଦେଖାଗଲାଣି । ବରଫ ତରଳିବାକୁ ଆରମ୍ଭ କଲାଣି । ଜାହାଜର କ୍ୟାପ୍ଟେନ କହିଲେ ଯେ ଖୁବ ଶୀଘ୍ର ଆମେ ସେଠୁ ସମୁଦ୍ରର ଆହୁରି ଭିତରକୁ ନ ଚାଲିଗଲେ ଜାହାଜ ଭାଙ୍ଗିଯିବ । ସେତେବେଳେ ବହୁ ଅଭିଯାତ୍ରୀ ତଳକୁ ଓହ୍ଲେଇ ଫଟୋ ଉଠାଉଥାନ୍ତି, ବୁଲୁଥାନ୍ତି । ସାଙ୍ଗେ ସାଙ୍ଗେ ବିପଦ ସଙ୍କେତ ଶୁଣି ତଳେ ଓହ୍ଲେଇଥିବା ଲୋକେ ଜାହାଜ ଆଡ଼କୁ ଧାଇଁବା ଭିତରେ ବରଫର ଫାଟଗୁଡ଼ିକ କ୍ରମଶଃ ଚଉଡ଼ା ହେବାକୁ ଲାଗିଲା । ଆଖି ସାମ୍ନାରେ ସରୁ ସୂତା ଭଳି ଫାଟଗୁଡ଼ିକ ପ୍ରାୟ ଏକ ମିଟର ଚଉଡ଼ା ହୋଇଯାଉଥାଏ । ଅନେକ ଅଭିଯାତ୍ରୀଙ୍କୁ ଲମ୍ଫ ଜମ୍ପ କରି ସେ ଫାଟ ପାରି ହେବାକୁ ପଡ଼ିଲା । ଏଣେ ୪ଟି ସ୍ଲେଜରେ ଜିନିଷପତ୍ର ଲଦା ହେଲା । ତାକୁ ଜାହାଜ ଉପରକୁ ନେବା ସମ୍ଭବ ନଥିଲା । ତେଣୁ ସେମାନଙ୍କୁ ମୂଳ ଭୂଖଣ୍ଡ ଚାଲିବାକୁ ନିର୍ଦ୍ଦେଶ ହେଲା । ସ୍ଲେଜଗୁଡ଼ିକ ଯାଉଥାଏ ଏବଂ ତା ପଛରେ ବରଫ ଫାଟ ଯେମିତି ସେମାନଙ୍କୁ ଗୋଡ଼ାଉଥାଏ । ଜାହାଜ ଉପରେ ବସି ବାଇନୋକୁଲାରରେ ଦେଖୁଥାନ୍ତି । କୌଣସି ଦୁର୍ଘଟଣା ନ ଘଟି ସ୍ଲେଜଗୁଡ଼ିକ ନିରାପଦ ସ୍ଥାନରେ ପହଞ୍ଚିଗଲା । ସ୍ଲେଜଗୁଡ଼ିକ ଯାଉଥିବା ବେଳେ ସେମାନଙ୍କ ସାମ୍ନାରେ ଯଦି ବରଫ ଫାଟି ଯାଇଥାନ୍ତା—କ'ଣ ଯେ ହୋଇଥାନ୍ତା ! ସେମାନେ ପଛକୁ ଫେରିପାରି ନ ଥାନ୍ତେ କି ଆଗକୁ ଯାଇପାରି ନ ଥାନ୍ତେ । ଇତି ମଧରେ ହେଲିକପ୍ଟରମାନଙ୍କୁ ପ୍ରସ୍ତୁତ କରାଯାଇସାରିଥିଲା । ଯଦି ଏମିତି କିଛି ଘଟଣା ଘଟେ,ତେବେ ଅନ୍ତତଃ ଲୋକମାନଙ୍କୁ ଉଦ୍ଧାର କରିହେବ । ଏ ଥିଲା ଆଣ୍ଟାର୍କଟିକାରେ ଲୋମହର୍ଷଣକାରୀ ଘଟଣା ଏକ ଅଭିଯାନର ।



ଆଣ୍ଟାର୍କଟିକାର ପୁରୁଣା ବାସିନ୍ଦା ପେଙ୍ଗୁଇନ୍

ଏ ଘଟଣାର ଠିକ୍ ୭ ଦିନ ପରେ ଜାନୁୟାରୀ ୧ ତାରିଖରେ ଗୋଟିଏ ହେଲିକପ୍ଟର ଦୁର୍ଘଟଣା ଘଟିଲା । ଆଣ୍ଟାର୍କଟିକାରେ ହେଲିକପ୍ଟର ଚଳେଇବା ଭାରି କଷ୍ଟ । କାରଣ ଥରେ ଥରେ କ'ଣ ହୁଏ ବରଫ ଝଡ଼ ଫଳରେ ବରଫ ସବୁ ଆକାଶକୁ ଉତ୍କ୍ଷିପ୍ତ ହୋଇଥାଏ । ଝଡ଼ ଶେଷ ହେଲା ପରେ ତଳ ବରଫ ବସିଯାଏ । କିନ୍ତୁ ଉପର ବରଫ ତଳକୁ ଆସିବାକୁ ସମୟ ଲାଗେ । ସୁତରାଂ ମାଟିର ବେଶ୍ ଉପରେ ଗୋଟେ ବରଫ ସ୍ତର ରହିଯାଏ । ମରୁଭୂମିରେ ମଧ୍ୟ ଏହି ଘଟଣା ଘଟିଥାଏ । ହେଲିକପ୍ଟର ଚାଳକ ଅନେକ ସମୟରେ ଉପର ସ୍ତରକୁ ଭୂଇଁ ବୋଲି ଭାବି ଓହ୍ଲେଇବାକୁ ଗଲେ ଦୁର୍ଘଟଣାର ସମ୍ମୁଖୀନ ହୋଇଥାଏ । ଏ ଅଭିଯାନରେ ପାଇଲଟ୍ ମାଟିର ମାତ୍ର ୧୦୦ ମିଟର ଉପରେ ଥିଲେ କିନ୍ତୁ ସେ ଭାବିଲେ ସେ ବେଶ୍ ଉଚ୍ଚରେ ଅଛନ୍ତି । ଫଳରେ ତାଙ୍କ ହେଲିକପ୍ଟର ମାଟିରେ ଧକ୍କା ଖାଇ ସାମ୍ନା ଚକ ଭାଙ୍ଗିଗଲା । ଏ ଅବସ୍ଥାରେ ଆଉଥରେ ଲାଣ୍ଡିଂ କରିବା ଭାରି ବିପଦଜନକ । ହେଲିକପ୍ଟରକୁ ଜାହାଜ ଉପରେ ଓହ୍ଲେଇବା ସମ୍ଭବ ନ ଥିଲା । କାରଣ ଜାହାଜରେ ଜାଳେଣି ତେଲ ଅଛି—ଦୁର୍ଘଟଣା ଘଟିପାରେ । ତେଣୁ ପାଇଲଟ୍‌କୁ ମୂଳ ଭୂଖଣ୍ଡରେ ଓହ୍ଲେଇବାର ନିର୍ଦ୍ଦେଶ ଦିଆଗଲା । ପ୍ରାୟ ଏକ ମିଟର ଉଚ୍ଚ ସପୋର୍ଟ ବି ଦିଆଗଲା । କଷ୍ଟଜନକ ଏବଂ ବିପଦଜନକ ହେଲେ ମଧ୍ୟ ପାଇଲଟ୍ ଖୁବ୍ ଦକ୍ଷତାର ସହିତ ହେଲିକପ୍ଟର ଲାଣ୍ଡିଂ କରେଇଲେ ।

ଆଉଥରେ ଗୋଟିଏ ହେଲିକପ୍ଟର ଯାନ୍ତ୍ରିକ ତ୍ରୁଟି ଦେଖାଗଲା । ସେ ହେଲିକପ୍ଟର କେଉଁଠି ଓହ୍ଲେଇଲା ଜାଣନ୍ତି ? ଜାହାଜରେ ନୁହେଁ କି ମୂଳ ଭୂଖଣ୍ଡରେ ନୁହେଁ । ଓହ୍ଲେଇଲା ଯାଇ ଗୋଟିଏ ଆଇସ୍‌ବର୍ଗ ଉପରେ । ସତରେ ପୃଥିବୀର ଆଣ୍ଟାର୍କଟିକା ଏପରି ଏକ ସ୍ଥାନ ହଠାତ୍ କହିହେବ ନାହିଁ ଯେ ସେ ସ୍ଥାନର ପରିସ୍ଥିତି ବା ପାଗ କଣ ହେବ କି ନ ହେବ । ସତରେ କି ଅଦ୍ଭୁତ ସ୍ଥାନ ! ପ୍ରକୃତି କି ବିଚିତ୍ର !!



# ଆମର ସାଥୀ ଜଙ୍ଗଲ ହାତୀ

## ହାତୀ ଓ ବିସ୍ତୃତି

ବନ୍ୟଜନ୍ତୁମାନଙ୍କ ମଧ୍ୟରେ ହାତୀ ପ୍ରକୃତିର ଏକ ଅନନ୍ୟ ସୃଷ୍ଟି । ଏହା ଓଡ଼ିଶାର ପ୍ରାୟତଃ ମୟୂରଭଞ୍ଜ (ଶିମିଳିପାଳ ଜାତୀୟ ପାର୍କ), ଖୋର୍ଦ୍ଧା (ଚନ୍ଦକା ହସ୍ତୀ ଅଭୟାରଣ୍ୟ), କେଉଁଝର, ଫୁଲବାଣୀ ଓ ଅବିଭକ୍ତ କୋରାପୁଟ ଇତ୍ୟାଦି ଜିଲ୍ଲାମାନଙ୍କରେ ଅଧିକ ସଂଖ୍ୟାରେ ଦେଖାଯାଏ । ସାଧାରଣ ଭାବେ ହାତୀ ଦୁଇ ପ୍ରକାରର : (୧) ଏସୀୟ ହାତୀ ଏବଂ (୨) ଆଫ୍ରିକୀୟ ହାତୀ ।

## ହାତୀର ଆକାର ଓ ଗଠନ

ଭାରତୀୟ ହାତୀର ଶୁଣ୍ଢ ଅଗ୍ରଭାଗ ଗୋଟିଏ କିନ୍ତୁ ଆଫ୍ରିକୀୟ ହାତୀ ଶୁଣ୍ଢର ଅଗ୍ରଭାଗ ଦୁଇ ଭାଗରେ ବିଭକ୍ତ । ଏସୀୟ ହାତୀ ଅପେକ୍ଷା ଆଫ୍ରିକୀୟ ହାତୀ ଆକାରରେ ବଡ଼ । ଏସୀୟ ହାତୀର ଅଣ୍ଡିରାର କେବଳ ଦାନ୍ତ ଥାଏ, କାନ ଛୋଟ ଏବଂ ଶରୀରର ଓଜନ ପ୍ରାୟ ୫୦୦୦ କିଲୋଗ୍ରାମ କିନ୍ତୁ ଆଫ୍ରିକୀୟ ହାତୀ ଉଭୟ ଅଣ୍ଡିରା ଏବଂ ମାଈର ଦାନ୍ତ ଥାଏ, କାନ ବଡ଼ ଏବଂ ଓଜନ ପ୍ରାୟ ୫୦୦୦ ରୁ ୭୦୦୦ କିଲୋଗ୍ରାମ । ଏସୀୟ ହାତୀର ପଛ ଗୋଡ଼ରେ ୪ଟି ନଖ ଥାଏ କିନ୍ତୁ ଆଫ୍ରିକୀୟ ହାତୀର ପଛ ଗୋଡ଼ରେ ୩ଟି ନଖ ଥାଏ । ଏକ ପରିଣତ ବୟସ୍କ ହାତୀର ଉଚ୍ଚତା ୨.୭୫ ମିଟର ଏବଂ ମାଈହାତୀ ତୁଳନାତ୍ମକ ଭାବେ ଛୋଟ । ହାତୀର ବୈଶିଷ୍ଟ୍ୟ ହେଲା ଏହା ନିର୍ଦ୍ଧାରିତ ପରିସୀମା ଭିତରେ ବସବାସ କରେ । ହାତୀ ବର୍ଷ ତମାମ ପାଣି ଥିବା ସ୍ଥାନରେ (ନଦୀ, ଝରଣା, ହ୍ରଦ ଇତ୍ୟାଦି) ଉଚ୍ଚ ଗଛ ବା ଦ୍ରୁମ ଥିବା ଘଞ୍ଚ ଜଙ୍ଗଲରେ ବସବାସ କରେ । ହାତୀମାନେ ସାଧାରଣତଃ ଦଳଗତ ବା ସଂଘବଦ୍ଧ ଜୀବନ ଯାପନ କରିବାକୁ ଭଲ ପାଆନ୍ତି ।

## ହାତୀ ଓ ପରିବେଶ

ଆଜିକାଲି ଜଙ୍ଗଲ ହ୍ରାସ ପାଇବା ହେତୁ ଏବଂ ଅବୈଧ ଶିକାର ଯୋଗୁଁ ହାତୀଙ୍କର ସଂଖ୍ୟା ଦିନକୁ ଦିନ କମିବାରେ ଲାଗିଛି । ଜଙ୍ଗଲ ହ୍ରାସ ହେବା ଜନିତ କାରଣରୁ ଏକ ବିବାଦୀୟ ପରିସ୍ଥିତି ଉପୁଜି ହାତୀମାନେ ମନୁଷ୍ୟ ବସତିର ପାର୍ଶ୍ୱବର୍ତ୍ତୀ ହୋଇଥାନ୍ତି । ଏଣୁ ମନୁଷ୍ୟର ଦୈନନ୍ଦିନ ଚଳଣି ଏବଂ ଜୀବିକାରେ ହାତୀମାନେ ହସ୍ତକ୍ଷେପ କରିଥାନ୍ତି ।

ଫଳରେ ହାତୀମାନେ ଦଳବଦ୍ଧ ହୋଇ ଶସ୍ୟ କ୍ଷେତ ନଷ୍ଟ, ଭଙ୍ଗାରୁଜା ଏବଂ ଗ୍ରାମ ଆକ୍ରମଣ କରିବାକୁ ପଛାନ୍ତି ନାହିଁ । ଏଣୁ ଅନେକ ସମୟରେ ହାତୀ ଆକ୍ରମଣରେ ନିରୀହ ଲୋକେ ମୃତ୍ୟୁ ମୁଖରେ ପଡ଼ିଥା'ନ୍ତି । ଓଡ଼ିଶାର ଆଦିବାସୀ ଅଧିକୃତ ଉପରିସ୍ଥ ଜିଲ୍ଲାମାନଙ୍କରେ ଶସ୍ୟ କ୍ଷେତକୁ ହାତୀ ଦାଉରୁ ରକ୍ଷା କରିବା ପାଇଁ ଲୋକେ ମଞ୍ଚା ବାନ୍ଧି ଉପରେ ଜଗନ୍ତି । ରାତ୍ରିରେ ହାତୀମାନଙ୍କୁ ଦୂରେଇ ଦେବା ପାଇଁ ନିଆଁ ଜାଳିବା ଉପାୟ ଅବଲମ୍ବନ କରାଯାଇଥାଏ । ଦିନରେ ଆଦିବାସୀ ଲୋକେ ସଂଘବଦ୍ଧ ଭାବେ ତୀର, ବର୍ଛା ଓ ଭାଲା ଇତ୍ୟାଦି ବ୍ୟବହାର କରି ହାତୀମାନଙ୍କୁ ଘୋଡାଇ ଗୋଡ଼ାଇ ଦୂରେଇ ଦିଅନ୍ତି । କେତେକ କ୍ଷେତରେ ହାତୀକୁ ସ୍ଥାନାନ୍ତର କରିବା ପାଇଁ ଢୋଲ ବାଡ଼େଇବା ପ୍ରଣାଳୀ ଅବଲମ୍ବନ କରାଯାଏ ।

## ହାତୀ ଓ ଖାଦ୍ୟ

ହାତୀ ଜଙ୍ଗଲରେ ଗଛ, ପତ୍ର, ବାଉଁଶ, ବକଳ, କଅଁଳ କାଠ ଶସ୍ୟ ଏବଂ ଫଳ ଆଦି ଆହାର କରି ବଞ୍ଚେ । ଏକ ପୂର୍ଣ୍ଣ ପରିଣତ ହାତୀ ଦୈନିକ ୨୭୦-୩୨୦ କିଲୋଗ୍ରାମ ପର୍ଯ୍ୟନ୍ତ ସବୁଜ ଗଛ, ପତ୍ର ଓ ଘାସ ଆଦି ଆହାର କରିଥାଏ । ହାତୀର ଗାଧୋଇବା ଶୈଳୀ ହେଉଛି ପାଣିରେ ବୁଡ଼ି ଉଠେ ଏବଂ ଶୁଣ୍ଢ ସାହାଯ୍ୟରେ ପାଣି ନେଇ ଦେହସାକ ସିଞ୍ଚି ସ୍ନାନ କରେ । ହାତୀମାନେ ଖରାଦିନେ ଘଞ୍ଚ ଜଙ୍ଗଲ ଆଦରନ୍ତି ଏବଂ ବର୍ଷାଦିନେ ପତଳା ଜଙ୍ଗଲ ଏବଂ ବାହାରକୁ ବାହାରିଥାନ୍ତି । ଗୋଟିଏ ଦଳରେ ଛୋଟ ବଡ଼ ମିଶି ପ୍ରାୟ ୫ ରୁ ୬୦ (ଷାଠିଏ) ହାତୀ ଯାତାୟାତ କରନ୍ତି । ଦୁଇଟି ଅଲଗା ଅଲଗା ଦଳ ସାଧାରଣ ହିସାବରେ ମିଶନ୍ତି ନାହିଁ । ଖାଦ୍ୟାଭାବ କିମ୍ବା ସ୍ଥାନାଭାବ ପରିସ୍ଥିତିକୁ ମୁକାବିଲା କରିବା ପାଇଁ ହାତୀମାନେ ମୁଖ୍ୟ ବଡ଼ଦଳରୁ ଭାଗ ଭାଗ ହୋଇ ଛୋଟ ଛୋଟ ଦଳ ଗଠନ କରିଥାନ୍ତି ।

## ହାତୀର ପ୍ରଜନନ

ମାଈ ହାତୀର ଗରମ ଆସିବା ସମୟ ହେଉଛି ଗ୍ରୀଷ୍ମଋତୁ ଶେଷ ଏବଂ ବର୍ଷା ଋତୁର ଆଗମନ । ମାଈ ହାତୀ ଗରମକୁ ଆସିଲେ, ଏହି ସମୟରେ ଅଣ୍ଡିରା ହାତୀର ସାମୟିକ ଉତ୍ତେଜନା ଭାବକୁ 'ମସ୍ତ' କୁହାଯାଏ । ଏସୀୟ ହାତୀର ଏକ ଯୋଡ଼ା ଗ୍ରନ୍ଥି କାନ ଓ ଆଖିର ମଧ୍ୟ ଭାଗରେ ଥାଏ ଯାହାକୁ କି ଟେମ୍ପୋରାଲ ଗ୍ରନ୍ଥି(Temporal Gland) କୁହାଯାଏ । ଏହି ଗ୍ରନ୍ଥିର ନିର୍ଗତ କଡ଼ା ବାସ୍ନା ଥିବା ତରଳ ପଦାର୍ଥ ମାଈ ହାତୀକୁ ସହବାସ ପାଇଁ ଆକର୍ଷଣ କରିଥାଏ । ବଣୁଆ ମାଈ ହାତୀର ଗରମ ଆସିବା ସମୟକୁ ରଟ୍ ସିଜିନ୍ (Rot Season) କୁହାଯାଏ । ହାତୀଟିଏ ୨୫ ବର୍ଷ ବୟସ

ହେଲେ ସାଧାରଣ କ୍ଷମତାପ୍ରାପ୍ତ ହୁଏ । ହାତୀର ଗର୍ଭଧାରଣ ସମୟ ପ୍ରାୟ ୨୦ ରୁ ୨୪ ମାସ ।

ହାତୀର ଗୋଟିଏ ଛୁଆରୁ ଆଉ ଗୋଟିଏ ଛୁଆ ଦେବାର ସମୟ ସୀମା ହେଉଛି ଅଢ଼େଇରୁ ତିନି ବର୍ଷ । ଥରକେ ହାତୀ ଗୋଟିଏ ଛୁଆ ଜନ୍ମ କରିଥାଏ । ବେଳେ ବେଳେ ମଧ୍ୟ ଦୁଇଟି କିମ୍ବା ଜାଆଁଳା ଛୁଆ ଜନ୍ମ କରିଥାଏ । ହାତୀଟି ଜୀବନତମାମ ପ୍ରାୟ ୭ରୁ ୮ଟି ଛୁଆ ଦେଇଥାଏ । ଗୋଟିଏ ହାତୀ ପ୍ରାୟ ପାଖାପାଖି ୭୫ ବର୍ଷ ବଞ୍ଚିଥାଏ ।

ହାତୀର ଦେଖିବା ଶକ୍ତି ପ୍ରାୟ କମ୍ କିନ୍ତୁ ଆଘ୍ରାଣ ଏବଂ ଶ୍ରବଣ ଶକ୍ତି ଅତି ପ୍ରଖର । ଏହାର ଚମଡ଼ା ବହୁତ ମୋଟା ଏବଂ ଚର୍ମ ଉପରେ ସବୁ ପତଳା ଲୋମ ଥାଏ । ହାତୀର ଫୁସ୍‌ଫୁସ୍ ଛାତିର ଭିତର ଭାଗ କାନ୍ଥରେ ମିଶି ଯାଇଥାଏ । ଏହାର ଅଣ୍ଡକୋଷ ପେଟ ଭିତରେ ଥାଏ । ହାତୀର ନାକ ଏବଂ ଉପରିସ୍ଥ ଓଠ ମିଶି ଶୁଣ୍ଢରେ ରୂପାନ୍ତର ହୋଇଥାଏ । ଉପରିସ୍ଥ ସାମନା (Incisor) ଦାନ୍ତ ଯୋଡ଼ା ପରିବର୍ଦ୍ଧନ ହୋଇ ବଡ଼ ବଡ଼ ଦାନ୍ତରେ ପରିଣତ ହୋଇଥାଏ । ଏହାକୁ ଟସ୍କ (Tusk) କୁହାଯାଏ ।

## ରୋଗରେ ହାତୀର ଚିକିତ୍ସା

ହାତୀର ଚିକିତ୍ସା ପଦ୍ଧତି ସାଧାରଣ ଭାବେ ଭିନ୍ନ । ଏହାର କୃମି ଚିକିତ୍ସା ଓ ଅନ୍ୟାନ୍ୟ ରୋଗ ପାଇଁ ଔଷଧକୁ ଖାଦ୍ୟ ସହ ମିଶାଇ ଖାଇବାକୁ ଦିଆଯାଏ । ବଣୁଆ ହାତୀର ଚିକିତ୍ସା ପାଇଁ ଯେଉଁ ଇଂଜେକ୍‌ସନ ବ୍ୟବହାର କରାଯାଏ ତାହାକୁ ଟ୍ରାନ୍‌କୁଇଲିଂଜି ପିସ୍ତଲ (Tranquilising Pistol) କୁହାଯାଏ । ଏହି ପିସ୍ତଲ ସାହାଯ୍ୟରେ ଦୂରତ୍ୱର ହିସାବ ପରିମାପ କରାଯାଇ ଫାୟାର କରା ହୋଇଥାଏ । ଭଲ ଶିକାରୀ ଅଭ୍ୟସ୍ତ ବ୍ୟକ୍ତିର ଏହି କାର୍ଯ୍ୟରେ ପାରଦର୍ଶିତା ଆସିଥାଏ । ଅନ୍ୟ ଏକ ଉପାୟରେ ବ୍ଲୋ ପାଇପ୍ ସିରିଂଜ୍ ସହାୟତାରେ ନିଆଁ ଜାଳି ପାଇପରେ ଭ୍ୟାକୁମ୍ ସୃଷ୍ଟି କରି ପଶୁର ଟାଇଗେଟେଡ଼ ପସ୍‌ଷଟ୍‌କୁ ଫାୟାର କରାଯାଇଥାଏ । ଏହା ଦ୍ୱାରା ଔଷଧ ସହ ସଂପୂର୍ଣ୍ଣ ସିରିଞ୍ଜ ବିଦ୍ୟୁତ୍ ବେଗରେ ଯାଇ ହାତୀର ଲକ୍ଷ୍ୟଗାମୀ ମାଂସପେଶୀରେ ବିଦ୍ଧ ହୁଏ ଏବଂ ଔଷଧ ମାଂସପେଶୀରେ ସଞ୍ଚାରଣ ହୋଇଯାଏ । ତେବେ ହାତୀଟିର ରୋଗରେ ଚିକିତ୍ସା କରିବା ବଡ଼ ଜଟିଳ । ଟିକେ ଅସାବଧାନତା ହେତୁ ମାହୁନ୍ତ କିମ୍ବା ଚିକିତ୍ସକ ଆଘାତପ୍ରାପ୍ତ ହୋଇଥାନ୍ତି ଏବଂ ବେଳେ ବେଳେ ମୃତ୍ୟୁମୁଖରେ ପଡ଼ିଥାନ୍ତି । ହାତୀର ସରଳ ପାକସ୍ଥଳୀ ଥାଏ । ଛୁଆ ହାତୀଟିଏ ପାଟିବାଟେ କ୍ଷୀର ପାନ କରେ, ଶୁଣ୍ଢ ବ୍ୟବହାର କରି ନ ଥାଏ । ହାତୀର ପୀତକୋଷ ନ ଥାଏ ।



# ପୁରୁଷ ସର୍ବଦା ସ୍ତ୍ରୀ ପେଟରେ

## କଳ୍ପନା ବାହାରେ ଏମିତି ପ୍ରାଣୀ

ବିଶ୍ୱାସ କରାଯାଏ ଯେ ସୃଷ୍ଟି ଆରମ୍ଭ ହୋଇଛି ଆଦାମ ଓ ଇଭ୍‌ଙ୍କ ଠାରୁ ଯେଉଁମାନେ କି ଯଥାକ୍ରମେ ସ୍ତ୍ରୀ ଓ ପୁରୁଷ - ଅର୍ଥାତ୍ ଭିନ୍ନ ଲିଙ୍ଗୀୟ ଜୀବନ । ସୃଷ୍ଟିର ବିକାଶ ସମ୍ଭବ ହୋଇଛି ପୁରୁଷ ଓ ସ୍ତ୍ରୀର ମିଳନରୁ, ଯାହା ବିଜ୍ଞାନ ଭାଷାରେ ପ୍ରଜନନ (Reproduction) ନାମରେ ଅଭିହିତ । ପ୍ରାଣୀମାନଙ୍କ କ୍ଷେତ୍ରରେ ପ୍ରଜନନ ଦୁଇ ପ୍ରକାର - ଲିଙ୍ଗୀୟ (Sexual) ଓ ଅଲିଙ୍ଗୀୟ (Asexual) ଜୀବଜଗତର ପ୍ରଥମସ୍ତରର ଏକ କୋଷୀ (Unicellular) ପ୍ରାଣୀ ଏମିବା (Amoeba) ଠାରୁ ଆରମ୍ଭ କରି ମନୁଷ୍ୟ ପରି ଉନ୍ନତ ଧରଣର ସ୍ତନ୍ୟପାୟୀ (Mammal) ପ୍ରାଣୀମାନଙ୍କର ପ୍ରଜନନ ପ୍ରକ୍ରିୟାକୁ ପର୍ଯ୍ୟବେକ୍ଷଣ କଲେ ସ୍ପଷ୍ଟ ଅନୁମିତ ହୁଏ ଯେ ଲିଙ୍ଗୀୟ ପ୍ରଜନନ (Sexual Reproduction) ନିଶ୍ଚୟ ଉନ୍ନତ ଧରଣର । ପ୍ରାଣୀଜଗତ୍‌ରେ ଲିଙ୍ଗୀୟ ଆକୃତି ସୃଷ୍ଟି ହେଉଛି ଏକନଳୀଦେହୀ ପ୍ରାଣୀ । (Annelid) ମାନଙ୍କ ଠାରେ । ପ୍ରାଣୀଜଗତ୍‌ର ଉଚ୍ଚତର ପ୍ରାଣୀମାନଙ୍କ ସ୍ଥଳରେ ମୁଖ୍ୟତଃ ଲିଙ୍ଗୀୟ ଭିନ୍ନତା ପରିଲକ୍ଷିତ ହୋଇଥାଏ; ଅର୍ଥାତ୍ ପୁରୁଷ ପ୍ରାଣୀ ଓ ସ୍ତ୍ରୀ ପ୍ରାଣୀମାନେ ଭିନ୍ନ ଭିନ୍ନ । ମାତ୍ର କେତେକ ପ୍ରାଣୀ ଉଭୟଲିଙ୍ଗୀ (Bisexual ବା Hermaphrodite) ଥାଆନ୍ତି । ଏସବୁ ବ୍ୟତୀତ ଏକ ଆଶ୍ଚର୍ଯ୍ୟର ବିଷୟ ହେଉଛି ''ସ୍ତ୍ରୀ ମଧ୍ୟରେ ପୁରୁଷ ରହି ପ୍ରଜନନ'' ଘଟଣାଟି ବିଚିତ୍ର ଲାଗିଲେ ବି ନିରାଟ ସତ୍ୟ ।

## ପ୍ରାଣୀର ବର୍ଣ୍ଣନା

ପୁରୁଷ ପ୍ରାଣୀଟି ସ୍ତ୍ରୀ ଶରୀର ମଧ୍ୟରେ ଅବସ୍ଥାନ କରି ପ୍ରଜନନ ଘଟାଇବା ଏକ ବିସ୍ମୟ । ଏ ପ୍ରାଣୀଟି ହେଉଛି ବୋନେଲିଆ (Bonellia) । ବୈଜ୍ଞାନିକ ଭାଷାରେ ଏହାର ନାମ *Bonellia viridis* । ଏହା ଏକ ସାମୁଦ୍ରିକ ଅମେରୁଦଣ୍ଡୀ ପ୍ରାଣୀ । ସାଗର ଗର୍ଭସ୍ଥ ପାହାଡ଼ ପର୍ବତ ଗର୍ଭ ଓ ଫାଙ୍କ ସ୍ଥାନଆଦି ଏମାନଙ୍କର ସ୍ଥାନ । ପୁରୁଷ ବୋନେଲିଆ ଦେଖିବାକୁ ଏକ ଫିତାକୃମି ପରି । ସମୁଦାୟ ଶରୀରଟି ଛୋଟ ଛୋଟ ପକ୍ଷ୍ମ (Cilia) ରେ ପୂର୍ଣ୍ଣ ଓ ଆକାର ପ୍ରାୟ ଏକରୁ ତିନି ମିଲିମିଟର ହେବ । ସତରେ

ଖୁବ୍ ଛୋଟ । କିନ୍ତୁ ଆଉ ଏକ ପ୍ରକାର ବୋନେଲିଆ *(Acanthobonellia miyalimal)* ର ପୁରୁଷଗୁଡ଼ିକ ଖୁବ୍ ଲମ୍ବା, ପ୍ରାୟ ୨୮ ସେଣ୍ଟିମିଟରରୁ ଅଧିକ ।



**ସ୍ତ୍ରୀ ବୋନେଲିଆ** **ପୁରୁଷ ବୋନେଲିଆ**

ପ୍ରକୃତିରେ ୨୦ ପ୍ରକାର ବୋନେଲିଆ ଦେଖାଯାଆନ୍ତି । ଏମାନେ ରାତ୍ରିଚର । ଶରୀରଟି କାଦୁଅ ବା ସାଗର ନିମ୍ନଭାଗସ୍ଥ ପଙ୍କିଳ ଅଂଶ ଅଥବା ପାହାଡ଼ର ଫାଙ୍କ ସ୍ଥାନମାନଙ୍କରେ ପୋତିହୋଇ ରହିଥିବାର ଦେଖାଯାଏ । ଅଧିକାଂଶ ପ୍ରାଣୀର ବର୍ଣ୍ଣ ସବୁଜ । ତାର କାରଣ " ବୋନେଲିନ୍" (Bonellin) ନାମକ ଏକପ୍ରକାର ସବୁଜ କଣିକା ଏମାନଙ୍କ ଦେହ ମଧ୍ୟରେ ଥାଏ । ଏ କଣିକା ଅନ୍ୟ ପ୍ରାଣୀମାନଙ୍କ ପାଇଁ ବିଷାକ୍ତ ହୋଇଥିବାରୁ ଏମାନଙ୍କୁ ସହଜରେ ଅନ୍ୟ ପ୍ରାଣୀମାନେ ଆକ୍ରମଣ କରନ୍ତି ନାହିଁ ବା ଖାଦ୍ୟ ଭାବରେ ଗ୍ରହଣ କରନ୍ତି ନାହିଁ । ଏମାନେ ଆଲୋକ ସହ୍ୟ କରିପାରନ୍ତି ନାହିଁ । ତେଣୁ ଆଲୋକ ଠାରୁ ଦୂରରେ ରହିବାକୁ ଏମାନେ ଭଲପାଆନ୍ତି । ଏ ପ୍ରାଣୀମାନଙ୍କର ଶରୀରର ବାହାରେ କୌଣସି ଆକୃତି ଦେଖାଯାଏ ନାହିଁ । ଖାଦ୍ୟନଳୀ ଅସଂପୂର୍ଣ୍ଣ

ଯେଉଁଥିରେ କି ପାଟି ଓ ମଳଦ୍ୱାର ନ ଥାଏ । ଏପରିକି ଅନ୍ୟ କୌଣସି ଶାରୀରିକ ତନ୍ତ୍ର ବା ପ୍ରଣାଳୀ ବି ଠିକ୍ ଭାବରେ ପୁରୁଷ ଦେହରେ ଦେଖାଯାଏ ନାହିଁ ।

ସ୍ତ୍ରୀ ବୋନେଲିଆ ଦେଖିବାକୁ ଅଣ୍ଡାକାର ଓ ସବୁଜ ବର୍ଣ୍ଣ । ଲମ୍ୱ ପ୍ରାୟ ପାଞ୍ଚ ସେ.ମି. । ସମଗ୍ର ଶରୀର ଖୁବ୍ ଛୋଟ ଛୋଟ କଣ୍ଟାକୃତି ଆକାରରେ ପୂର୍ଣ୍ଣ । ମୁଖ୍ୟ ଅଣ୍ଡାକୃତି ଶରୀର ଉପରିଭାଗରେ ଘଣ୍ଟା ସ୍ପ୍ରିଂ ପରି ଏକ ନଳୀ ବାହାରକୁ ବିଛାଇ ହୋଇ ରହିଥାଏ । ଯାହାର ଉପରଭାଗ ସାପ ଜିଭ ପରି ଦୁଇଫାଳିଆ । ଏହାକୁ ମୁଖାଗ୍ର ଶୁଣ୍ଢ (Prostomial Proboscis) ବୋଲି କୁହାଯାଏ । ଏହା ମୁଖ୍ୟ ଶରୀରଠାରୁ ପ୍ରାୟ ୧୦ରୁ ୧୫ ଗୁଣ ଅଧିକ ଲମ୍ୱ । ଅଧିକାଂଶ ସମୟରେ ଏହି ଶୁଣ୍ଢ ଜଳରେ ଏପଟ ସେପଟ ହେଉଥାଏ । ଏକମାତ୍ର ବଡ଼ ନିଷ୍କାସକ ପ୍ରାଣୀଟିର ଜରାୟୁ କାମ ଦେଉଥାଏ । ସ୍ତ୍ରୀ ବୋନେଲିଆର ପାଟି ଠିକ୍ ଲମ୍ୱାନଳୀ ପାଖରେ ଅବସ୍ଥିତ । ଏପରି ଭାବରେ ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ପ୍ରାଣୀ ମଧ୍ୟରେ ଥାଏ । ଗଠନଗତ ଦୃଷ୍ଟିକୋଣରୁ ସ୍ତ୍ରୀ ବୋନେଲିଆ ପୁରୁଷ ଠାରୁ ବେଶ୍ ଉନ୍ନତ ଧରଣର ।

## ବୋନେଲିଆର ବିଶେଷତ୍ୱ

ବୋନେଲିଆର ବିଶେଷତ୍ୱ ହେଉଛି ପୁରୁଷ ବୋନେଲିଆ ନିଜେ ଅଲଗା ବା ସ୍ୱାଧୀନ ଜୀବନ ଯାପନ ପରିବର୍ତ୍ତେ ସ୍ତ୍ରୀ ମଧ୍ୟରେ ଅବସ୍ଥାନ କରିବା । ଅତି ଛୋଟ ଅପରିପକ୍ୱ ଅବସ୍ଥାରେ ପୁରୁଷ ବୋନେଲିଆ ସ୍ତ୍ରୀ ବୋନେଲିଆର ମୁଖ ମଧ୍ୟଦେଇ ପ୍ରବେଶ କରେ । ଅପରିପକ୍ୱ ପୁରୁଷ ହିଁ ଅନ୍ତନଳୀର ଉପରଭାଗ ବା ବାହ୍ୟ ଚର୍ମରେ ଦେଖାଯାଏ । ଅଭିବୃଦ୍ଧି ପରେ ପୁରୁଷ ସବୁବେଳ ପାଇଁ ସ୍ତ୍ରୀ ଗର୍ଭରେ ଅବସ୍ଥାନ କରେ । ଏ ଅବସ୍ଥାନ ସମୟରେ ଜୀବଟି ଏକ ପରଜୀବୀ (Parasite) ଜୀବନ ଯାପନ କରେ, ଅର୍ଥାତ୍ ଖାଦ୍ୟ ପାଇଁ ସ୍ତ୍ରୀ ଉପରେ ନିର୍ଭର କରିବାକୁ ପଡ଼ିଥାଏ । ପ୍ରଜନନ ପରେ ଯେଉଁ ଲାର୍ଭା (Larva) ସବୁ ସୃଷ୍ଟି ହୁଅନ୍ତି ସେଗୁଡ଼ିକ ଉଭୟଲିଙ୍ଗର (ପୁରୁଷ ଓ ସ୍ତ୍ରୀ) ଗୁଣ ଧାରଣ କରିଥାଆନ୍ତି । ଲାର୍ଭାଗୁଡ଼ିକ ଆପେ ଆପେ ବୃଦ୍ଧି ପାଇଲେ ସେଗୁଡ଼ିକ ସ୍ତ୍ରୀ ବୋନେଲିଆରେ ପରିଣତ ହୋଇଯାଆନ୍ତି । କିନ୍ତୁ ଏ ଲାର୍ଭାଗୁଡ଼ିକ ପରିପକ୍ୱ ସ୍ତ୍ରୀ ବୋନେଲିଆ ସଂସ୍ପର୍ଶରେ ଆସିଲେ ପୁରୁଷ ବୋନେଲିଆରେ ପରିଣତ ହୋଇଥାଆନ୍ତି ।

## ଲିଙ୍ଗ ନିର୍ଦ୍ଧାରଣ

ଲିଙ୍ଗ ନିର୍ଦ୍ଧାରଣ (Sex Determination) ବୋନେଲିଆର ଏକ ଅଦ୍ଭୁତ ପଦ୍ଧତି । ଲିଙ୍ଗୀୟ ପରିବର୍ତ୍ତନ ଏମାନଙ୍କ କ୍ଷେତ୍ରରେ ଏକ ସାଧାରଣ କଥା । ଲିଙ୍ଗୀୟ

ପରିବର୍ତ୍ତନ ବା ନିର୍ଦ୍ଧାରଣର ସଠିକ୍ ଉତ୍ତର ଅଦ୍ୟାବଧି ଏକ ବିରାଟ ପ୍ରଶ୍ନବାଚୀ । ମନୁଷ୍ୟ କ୍ଷେତ୍ରରେ ଜଣେ ପୁରୁଷ ଗୋଟିଏ ସ୍ତ୍ରୀ ବା ଜଣେ ସ୍ତ୍ରୀ ଲୋକ ଜଣେ ପୁରୁଷରେ ପରିବର୍ତ୍ତନ ହେବା କ୍ୱଚିତ୍ ହେଲେ ବି ଏହା ସମାଜରେ ଦେଖାଯାଏ । ଅବଶ୍ୟ ଏହାର ଉତ୍ତର ବା କାରଣ ନିର୍ଦ୍ଧାରଣ କରାଯାଇପାରିଛି । ବୈଜ୍ଞାନିକମାନଙ୍କ ମତରେ ଲିଙ୍ଗୀୟ ଗୁଣସୂତ୍ରର ସଂଖ୍ୟା (Number of Sex Chromosomes) ବା ହରମୋନ୍ (Hormone) ଅଥବା ଦୁଇଟିଯାକ କାରଣ ମନୁଷ୍ୟ କ୍ଷେତ୍ରରେ ଲିଙ୍ଗ ପରିବର୍ତ୍ତନ ପାଇଁ ଦାୟୀ ।

କିନ୍ତୁ ବୋନେଲିଆ ସ୍ଥଳରେ ସମ୍ଭବତଃ କୌଣସି ଗ୍ରନ୍ଥିର ରାସାୟନିକ ପଦାର୍ଥ ବା ହରମୋନ୍ ହିଁ ଏହାର ଅନ୍ତର୍ନିହିତ ଓ ଶାରୀରିକ ପରିବର୍ତ୍ତନ ତଥା ଲିଙ୍ଗ ନିର୍ଦ୍ଧାରଣର କାରଣ ବୋଲି ଅନୁମାନ କରାଯାଏ । କେବଳ ସେତିକି ନୁହେଁ ବାହ୍ୟ ପରିସ୍ଥିତି ବା ପାରିପାର୍ଶ୍ୱିକ ଅବସ୍ଥା (Environmental Condition) ର ଭୂମିକା ମଧ୍ୟ ଏ ଲିଙ୍ଗ ନିରୂପଣରେ ଗୁରୁତ୍ୱପୂର୍ଣ୍ଣ । କାରଣ ଅପରିପକ୍ୱ ଲାର୍ଭା ବୋନେଲିଆଗୁଡ଼ିକ ସ୍ତ୍ରୀ ବୋନେଲିଆ ପାଖରେ ରହିଯିବାରୁ ଅଧିକାଂଶ ପୁରୁଷରେ ପରିଣତ ହୋଇଯାଆନ୍ତି । ବୋନେଲିଆ ବ୍ୟତୀତ ଏ ପରିସ୍ଥିତି ଦେଖାଯାଏ ଏକପ୍ରକାର ଗେଣ୍ଡା *(Crepidula)* ଓ ଅନ୍ୟ ଏକ ପ୍ରାଣୀ *(Amphitrocha)* ଠାରେ ।

ଲିଙ୍ଗୀୟ ଭିନ୍ନତା ଅନ୍ତଃସ୍ରାବଗ୍ରନ୍ଥି ପ୍ରଭାବରୁ ଉଚ୍ଚତର ପ୍ରାଣୀମାନଙ୍କ ଠାରେ କେବଳ ଯେ ଦେଖାଯାଏ ତାହା ନୁହେଁ; ନିମ୍ନତର ପ୍ରାଣୀମାନଙ୍କଠାରେ ମଧ୍ୟ ଏହା ପରିଲକ୍ଷିତ ହୁଏ । ବୋଧହୁଏ ନିମ୍ନତର ପ୍ରାଣୀମାନଙ୍କ କ୍ଷେତ୍ରରେ ସହଜରେ ପୁରୁଷ ଓ ସ୍ତ୍ରୀ ପ୍ରାଣୀମାନଙ୍କର ଅନୁପାତ ଠିକ୍ ରହିବା ପାଇଁ ଏହା ଏକ ପ୍ରାକୃତିକ ଉପାୟ । ଅର୍ଥାତ୍ ସମସ୍ତ ଲାର୍ଭା କେବଳ ପୁରୁଷ ବା କେବଳ ସ୍ତ୍ରୀ ପ୍ରାଣୀରେ ପରିଣତ ନ ହେବାରୁ ଲିଙ୍ଗୀୟ ଅନୁପାତ ଆପେ ଆପେ ସଠିକ୍ ରହୁଛି । ବାସ୍ତବିକ୍ ପ୍ରାଣିଜଗତ୍‌ର ଏହା କି ଅଦ୍ଭୁତ କରାମତି !

●

# ଆମ ଅବୁଝା ଜୀବଙ୍କ ଭାଷା

## ଭାଷା କଣ ଓ କାହିଁକି ?

ମଣିଷ କଥାବାର୍ତ୍ତା ବା ବାକ୍ୟ ବିନିମୟ କରିପାରୁଥିବାରୁ ଜୀବଜଗତରେ ଏକ ଶ୍ରେଷ୍ଠ ପ୍ରାଣୀ ଭାବରେ ବିବେଚିତ । ଭଲ ଭାବରେ କଥା କହିବା ପାଇଁ ବା ସ୍ୱର ସୃଷ୍ଟି ପାଇଁ ତା ତଣ୍ଟି ପାଖରେ ରହିଛି ଏକ ସ୍ୱତନ୍ତ୍ର ଅଂଗ । ଏହା ହେଉଛି ସ୍ୱରପେଟିକା (Larynx) । ପକ୍ଷୀମାନଙ୍କର ସେପରି ଏକ ଶବ୍ଦ ବାକ୍ସ (Syrinx) ତଣ୍ଟି ପାଖରେ ଥାଏ । ତେଣୁ ପକ୍ଷୀମାନଙ୍କ ମଧ୍ୟରୁ କେତେକ ଭଲ ସ୍ୱର ସୃଷ୍ଟି କରିବାର ଦେଖାଯାଏ । ଶାରୀ ଓ ଶୁଆ ଇତ୍ୟାଦି ସେମାନଙ୍କର ଉଦାହରଣ । ଏ ସବୁ ଛଡ଼ା ଆଉ କେତେକ ପ୍ରାଣୀ ଚିଁ ଚାଁ ଶବ୍ଦ ବେଳେ ବେଳେ କରିବାର ଦେଖାଯାଏ । କିନ୍ତୁ ଅନ୍ୟ ପ୍ରାଣୀମାନେ ମୋଟାମୋଟି ମନୁଷ୍ୟ ପରି କଥାବାର୍ତ୍ତା ବା ଶବ୍ଦ ବିନିମୟ କରିପାରି ନ ଥାଆନ୍ତି । କିନ୍ତୁ ପରସ୍ପରର କଥା ବୁଝିବା ପାଇଁ ଅନ୍ୟ କେତେପ୍ରକାର ଭାବଭଙ୍ଗୀ ଇତ୍ୟାଦି ଦେଖିବାକୁ ମିଳେ । ସେଗୁଡ଼ିକ ହେଉଛି ପଶୁପକ୍ଷୀମାନଙ୍କର ଭାଷା । ସେସବୁକୁ ବୁଝିବା ଆମ ପକ୍ଷରେ କଷ୍ଟ ହେଲେ ବି ତାହାର ଥାଏ ଅର୍ଥ । ସେମାନେ ସେ ସବୁ ସଙ୍କେତକୁ ବୁଝିପାରନ୍ତି ଓ ସେ ଅନୁସାରେ ସେମାନଙ୍କ କାର୍ଯ୍ୟ ସମାହିତ କରିଥାଆନ୍ତି ।

## କେତେକ ସାଧାରଣ ପ୍ରାଣୀଙ୍କ ଭାଷା

କେତେକଙ୍କ ଘରେ ଶୁଆ, ଶାରୀ, କୁକୁର ଓ ବିଲେଇ ଇତ୍ୟାଦି ଗୃହପାଳିତ ପଶୁପକ୍ଷୀ ଥାଆନ୍ତି । ଏମାନେ ସମସ୍ତେ ଭିନ୍ନ ଭିନ୍ନ ସମୟରେ ବିଭିନ୍ନ ପ୍ରକାରର ଶବ୍ଦ କରିଥାନ୍ତି । ବିଲେଇ ମିଆଁଉ, ମିଆଉଁ କରେ । କୁକୁର ଭାଉ ଭାଉ କରେ । ରାତି ପାହିଲା ଆଗରୁ ଭାଡ଼ି ଭିତରେ ପାରା ଘୁମୁରିଉଠେ । ସକାଳ ହେଲେ କାଉ କା' କା' ଶବ୍ଦ କରି ଆମ ନିଦ ଭାଙ୍ଗିଦିଏ । କୁମ୍ଭାଟୁଆ ଘର ସାମନାରେ ଥିବା ଗଛ ଡାଳରେ ବସି କୁପ୍ କୁପ୍ ଶବ୍ଦ କରେ । ଏସବୁ ଶବ୍ଦ କେବଳ ଅର୍ଥହୀନ ନୁହେଁ । ଆମେମାନେ ସେମାନଙ୍କର ଭାଷା ବୁଝି ପାରୁନା ସତ; କିନ୍ତୁ ସେମାନେ ନିଜ ନିଜ ଭାଷାରେ କଥାବାର୍ତ୍ତା ହୁଅନ୍ତି କିମ୍ବା ଜାଣିଥିବା ଅବା ଶୁଣୁଥିବା ଶବ୍ଦର ଅବିକଳ ନକଲ କରନ୍ତି ।

## କେତେକ ବିଚିତ୍ର ଭାବଭଙ୍ଗୀ ଭାଷା ଭାବରେ

ଡଃ ଭନ୍ ଫ୍ରିସକ୍ ପ୍ରାୟ ୪୦ ବର୍ଷ ଧରି ମହୁମାଛିମାନଙ୍କର କାର୍ଯ୍ୟକଳାପକୁ ଅନୁଧ୍ୟାନ କରୁଥିଲେ । ମହୁ ଫେଣାଟି, ମାଛିମାନଙ୍କର ସାମାଜିକ ଜୀବନଯାପନ ପ୍ରଣାଳୀର ଚରମ ପରିପ୍ରକାଶ । ଡଃ ଫ୍ରିସକ୍ ତାଙ୍କ ଅନୁଶୀଳନରୁ ଆବିଷ୍କାର କଲେ ଯେ, ମହୁମାଛିଟିଏ କେଉଁଠି ଖାଦ୍ୟର ସନ୍ଧାନ ପାଇଲେ ବସାକୁ ଫେରିଆସି ଅନ୍ୟ ମାଛିମାନଙ୍କୁ ଏ ବିଷୟରେ ଖବର ଦିଏ । ତାଙ୍କ ମତରେ ବିଭିନ୍ନ ଅଙ୍ଗଭଙ୍ଗୀ, ମୁଦ୍ରା ପ୍ରଦର୍ଶନ କରିଆରେ ମହୁମାଛି ତାର ଭାବ ବ୍ୟକ୍ତ କରିଥାଏ । ତାର ନୃତ୍ୟଭଙ୍ଗୀର ଦିଗ ହିଁ ମହୁଭରା ଫୁଲ କେଉଁ ଦିଗରେ ଅଛି, ସୂଚନା ଦେଇଥାଏ । ନୃତ୍ୟର ଶୈଳୀରୁ ମଧ୍ୟ ଖାଦ୍ୟର ଦୂରତା ଜଣାପଡ଼େ । ବୃତ୍ତାକାରରେ ନୃତ୍ୟ କଲେ ପାଖରେ ମହୁର ସନ୍ଧାନ ମିଳିଥିବାର ଜଣାଯାଏ । ଧୀର ମୁଦ୍ରାରେ ବା ଅସ୍ଥିର ଭାବେ ଆନ୍ଦୋଳିତ ହୋଇ ନୃତ୍ୟ କଲେ, ମହୁଭରା ଫୁଲର ଉତ୍ସ କିଛି ଦୂରରେ ଥିବାର ସଂକେତ ମିଳେ । ଗୃହପାଳିତ ପଶୁମାନଙ୍କ ମଧ୍ୟରେ ବିଲେଇ, କୁକୁରଙ୍କର ଭାଷା ମାଧ୍ୟମରେ ଭାବ ବ୍ୟକ୍ତ କରିବାର ଦକ୍ଷତା ଅଧିକ ମନେହୁଏ । ପୋଷା ବିଲେଇଟିକୁ କୋଳକୁ ଟେକିନେଇ ଆଉଁଶିଦେଲେ, ସେ ଆନନ୍ଦରେ ଘୁଡୁ ଘୁଡୁ ଶବ୍ଦ କରିବା ଆରମ୍ଭ କରିଦିଏ । ସେ ସମୟରେ ତାକୁ କୋଳରୁ ଓହ୍ଲାଇବାକୁ ଚାହିଁଲେ, ବିଲେଇଟି ମୁହଁକୁ ଅନାଇ କରୁଣ ସ୍ୱରରେ ମିଆଉଁ ମିଆଉଁ କରି ଏପରି ନ କରିବାକୁ ବାରଣ କରେ । ଖାଇବା ସମୟ ହୋଇଗଲେ, ଯିଏ ତାକୁ ସବୁଦିନ ଖାଇବାକୁ ଦିଏ, ତାରି ପଛେ ପଛେ ଦେହରେ ଘଷିହୋଇ କୁଁ, କୁଁ କରି ଚାଲିଥାଏ ସେ । ବିଲେଇଠାରୁ କୁକୁର ଅଧିକ ଚାଲାକ ଚତୁର । ପୋଷା କୁକୁର କ'ଣ ବ୍ୟକ୍ତ କରିବାକୁ ଚାହୁଁଛି, ଘରର ଲୋକମାନେ ତାହା ତାର ହାବଭାବରୁ ଉତ୍ତମ ରୂପେ ବୁଝିପାରନ୍ତି । ଅଜଣା, ଅଚିହ୍ନା ଲୋକଟିକୁ ଦେଖିଲେ ସେ ଖୁବ୍ ଜୋରରେ ଭାଉ ଭାଉ କରି ମୁନିବକୁ ବୁଝାଇବାକୁ ଚେଷ୍ଟା କରେ, ନୂତନ ଆଗନ୍ତୁକର ଆଗମନ । କୁକୁରର ଖାଇବାକୁ ମାଗିବାର ସ୍ୱର ଏ ସ୍ୱରଠାରୁ ଭିନ୍ନ । ବୁଲିଯିବାର ଇଚ୍ଛା ଥିଲେ, ଅଥବା ପରିସ୍ରା ଓ ମଳତ୍ୟାଗ କରିବାକୁ ଚାହୁଁଥିଲେ, କୁକୁରଟି ଏକ ପ୍ରକାର ଭାଷା ଓ ଭଙ୍ଗୀର ମିଶ୍ରଣରେ ତାର ଭାବ ବ୍ୟକ୍ତ କରିଥାଏ । କିଛି ବାଟ ଦଉଡ଼ିଯାଏ ଓ ପୁଣି ପଛକୁ ବୁଲି ଆସି ଭାଉ ଭାଉ କରି ଡାକ ପକାଏ । ମୁନିବର ଆଉଁଶା ଟିକିଏ ପାଇବା ଲାଗି ସେ ଆନନ୍ଦରେ ଲାଙ୍ଗୁଡ଼ ହଲାଇ ନିଜ ଭାଷା ଓ ଭାବରେ ନିମନ୍ତ୍ରଣ କରିଥାଏ । ପ୍ରକୃତରେ ଜୀବଜଗତରେ ଭାବ ବ୍ୟକ୍ତ କରିବାରେ ଏହି ପରିଭାଷା ଏକ ଅଜବ ବିସ୍ମୟ । ସେମାନେ ପ୍ରକାଶ କରୁଥିବା ବିଭିନ୍ନ ଧ୍ୱନି ବା ଶବ୍ଦର ଅର୍ଥ ଆମେ ବୁଝି ପାରୁ ନ ଥିଲେ ମଧ୍ୟ ସ୍ୱରର ବିଭିନ୍ନତା ଓ ପ୍ରକାଶ କରିବାର ଭଙ୍ଗୀଦ୍ୱାରା ଜୀବଜନ୍ତୁମାନେ ନିଜ ନିଜର ଭାବକୁ ଅତି

ସହଜରେ ବ୍ୟକ୍ତ କରିପାରନ୍ତି । ସବୁ ଜୀବଜନ୍ତୁଙ୍କ ମଧ୍ୟରେ ପକ୍ଷୀ ହିଁ ଅଧିକ କଥା କୁହେ । ପକ୍ଷୀଟି କିପରି ରାବ କରେ, ତାର ସାମାନ୍ୟ ସୂଚନା ଯଥା - ଏକକ ସ୍ୱର, କମ୍ପନ, ଉଡ଼ିଲାବେଳେ ସିଟି ମାରିବା ବା ଫଡ଼ ଫଡ଼ ଶବ୍ଦ କରିବା, ତୀକ୍ଷ୍ଣ କିଚିରି ମିଚିରି ଶବ୍ଦ ଓ କୂଜନ ଆଦିକୁ ସ୍ଥିର ମନରେ ଅଧ୍ୟୟନ କଲେ, ତାହା ପକ୍ଷୀଟିକୁ ଚିହ୍ନିବାରେ ପଥ ପ୍ରଦର୍ଶକ ହୋଇପାରେ । ଗହଳିଆ ଆମ୍ବତୋଟାରୁ' କୋଇଲିଟିର ସାଙ୍ଗୀତିକ କୁହୁସ୍ୱନ ଅବା ଭାରତୀୟ ରବୀନ୍ ପକ୍ଷୀଟି ଯେବେ ଗ୍ରୀଷ୍ମ ଋତୁରେ ସୁନ୍ଦର ଗାୟକ ପକ୍ଷୀ ଭାବେ ଉଲ୍ଲାଦଧ୍ୱନି କରେ, କପୋତଟିଏ ଯେବେ ଉଚ୍ଚାରଣ କରେ ବିଷାଦବୋଳା ସ୍ୱନ କୃ - କୃକ୍ - କୃକ୍ - କୃକ୍ - କୃ ବା ପେଚାଟିଏ ଯେବେ ହୁଟ୍ ହୁଟ୍ ଶବ୍ଦ କରେ ଅଥବା ବଣି ଚଢ଼େଇଟିର ଗାଳି କରିବା ପରି ଶବ୍ଦ 'ରାଡିଓ - ରାଡିଓ - ରାଡ଼ିଓ', ପ୍ରତ୍ୟେକଟି ଧ୍ୱନି ବା ଶବ୍ଦ ଉଚ୍ଚାରଣ ଶୈଳୀ ପଛରେ କିଛି ନା କିଛି ଅର୍ଥ ନିହିତ ଥାଏ । ସାଧାରଣତଃ ପକ୍ଷୀମାନେ ଅତି କମ୍‌ରେ ଛଅ ପ୍ରକାରର ଧ୍ୱନି କରିଥାନ୍ତି ଓ ପ୍ରତ୍ୟେକଟି ଭିନ୍ନ ଭିନ୍ନ ଅର୍ଥରେ ସୂଚିତ ହୋଇଥାଏ ।

## ପ୍ରାଣୀମାନଙ୍କ ସାଙ୍କେତିକ ଭାଷା ଓ ସତର୍କତା

ପକ୍ଷୀ ଶାବକମାନଙ୍କ ସହିତ ଥିବା ମା' ପକ୍ଷୀଟିର କୌଣସି ଆପଦ ବିପଦର ସୁରାକ୍ ପାଇଲେ, ଛୁଆମାନଙ୍କୁ ଏକ ପ୍ରକାର ସାଂକେତିକ ଶବ୍ଦ କରି ସତର୍କ କରେଇଦିଏ । – " ସାବଧାନ ରୁହ !" ଦୁର୍ବଳ ପକ୍ଷୀ ଶାବକକୁ ଅନ୍ୟ ଶାବକମାନେ ମାଡ଼ି ଚକଟି ପକାଇବା ଓ ସେ ନୀଡ଼ ବାହାରକୁ ଖସି ପଡ଼ିବାର ମଧ ଆଶଙ୍କା ଥାଏ । ନୀଡ଼ ବାହାରୁ ବିଲେଇ, ଏଣ୍ଡୁଅ, ମୂଷା, ସାପ, କାଉ ଓ ଅନ୍ୟାନ୍ୟ ପକ୍ଷୀ ଆସି ସେମାନଙ୍କୁ ଖାଇ ଯାଇପାରନ୍ତି । ଝଡ଼, ବତାସ ଓ ଅନ୍ୟାନ୍ୟ ପ୍ରାକୃତିକ ଦୁର୍ଘଟଣାର ମଧ ବିପଦ ରହିଥାଏ । ମାଆ ପକ୍ଷୀମାନେ ଏହିସବୁ ସାମ୍ଭାବ୍ୟ ବିପଦକୁ ଲକ୍ଷ୍ୟ ରଖି ଛୁଆମାନଙ୍କୁ ସତର୍କତାର ସହ ଜଗିଥାନ୍ତି । କୌଣସି ଭୟର ଆଶଙ୍କା ହେଲେ ସେମାନେ ଜୋର୍‌ରେ ଶବ୍ଦ କରନ୍ତି । ଫଳରେ ଛୁଆମାନେ ହୁରୁଡ଼ି ଯାଇ ଏଣେତେଣେ ନିରାପଦ ଆଶ୍ରୟ ଖୋଜି ବୁଲନ୍ତି । କୁନି ବାଛୁରୀଟି ଦୂରକୁ ପଳେଇଗଲେ, ମା' ଗାଈ ଜୋର୍‌ରେ ହମ୍ବା, ହମ୍ବା ରଡ଼ି ଛାଡ଼ି ଡାକ ପକାଏ । ଏ ଡାକର ଶବ୍ଦ ଶୁଣି ମାଆ ଖୋଜୁଛି ଜାଣିପାରି ବାଛୁରୀଟି ମଧ ଉପଯୁକ୍ତ ଜବାବ ଦେଇ ନିକଟକୁ ଦଉଡ଼ିଆସେ ।

ପକ୍ଷୀଟି ମୁଣ୍ଡକୁ ହଲାଇ, ଦେହକୁ ଝୁଲାଇ ଯେଉଁ ଶବ୍ଦ କରେ, ତାହା ଅନେକ ପରିମାଣରେ ଡାମରାକାଉର ରାବ ପରି ଏକପ୍ରକାର ଅସନ୍ତୋଷସୂଚକ ଚିରିଚିରିଆ 'କଇଆ (ହ)' ଶବ୍ଦ । ବସନ୍ତ ଋତୁର ଉଚ୍ଚ ସ୍ୱରରେ ଶୁଣା ଯାଉଥିବା ଏହି ଶବ୍ଦ ଗ୍ରୀଷ୍ମର

ଶେଷ ଆଡ଼କୁ ପ୍ରାୟଶଃ କମିଆସେ । ଅନ୍ୟ ସମୟରେ ବାହାରୁ ବୁଲିବାଲି ଆସି ପକ୍ଷୀଟି ବସା ନିକଟରେ ପହଞ୍ଚିଗଲା ପରେ ଜିଭ ତଳକୁ କରି ଏକପ୍ରକାର ଅବରୁଦ୍ଧ ସ୍ୱରରେ 'ହୁ-ହୁ-ହୁ' ଡାକ ଦେଇଥାଏ । ବାପା, ମା' ମାଛଖିଆ ପକ୍ଷୀ ସେମାନଙ୍କର ଚଞ୍ଚୁକୁ ପ୍ରସାରିତ କରି ଏକପ୍ରକାରର କରୁଣ ମିଆଉଁ ମିଆଉଁ ଶବ୍ଦ କରିଥାନ୍ତି । ଏହି ଶବ୍ଦ ବିଷାଦବୋଳା ଜଣାପଡୁଥିଲେ ମଧ୍ୟ, ବାସ୍ତବରେ ପକ୍ଷୀଶାବକମାନଙ୍କୁ ଖାଇବା ପାଇଁ ଆମନ୍ତ୍ରଣର ଡାକ । ପକ୍ଷୀଛୁଆମାନେ ମଧ୍ୟ ବାପା, ମା'ଙ୍କର ଥଣ୍ଟକୁ ଖୁମ୍ପି ଖୁମ୍ପି ଆଣିଥିବା ଖାଦ୍ୟ ଗ୍ରହଣ କରନ୍ତି । ସତର୍କ ସୂଚନା ଦେଲାବେଳେ ଏହି ପକ୍ଷୀଟି ହସିଲା ଭଳି ଏକ ପ୍ରକାରର ହାଃ ହାଃ ଶବ୍ଦ କରିଥାଏ । ବାସ୍ତବରେ ଏହା ହସ ନୁହେଁ, ବରଂ ପ୍ରତି ଆକ୍ରମଣର ପ୍ରସ୍ତୁତି ସୂଚନା ।

## ପ୍ରାଣୀଙ୍କ ଭାଷା ଅନୁକରଣ

ଆନନ୍ଦିତ, ଆହ୍ଲାଦିତ ହେଲେ ଅଥବା ଅତିଶୟ ଖୁସି ହୋଇଗଲେ, ପକ୍ଷୀମାନେ ଏକ ପ୍ରକାରର 'କାକଳି' କରିଥାନ୍ତି । ଶାଗୁଣାଟିଏ କୌଣସି ସ୍ଥାନରେ ମଢ଼ର ସନ୍ଧାନ ପାଇଲେ, ତା ଭାଷାରେ ଅନ୍ୟ ସମସ୍ତ ଶାଗୁଣାକୁ ନିମନ୍ତ୍ରଣ କରିଆଣେ । ଖାଦ୍ୟର ସନ୍ଧାନ ପାଇଲେ କାଉ ମଧ୍ୟ ହର୍ଷୋତ୍‌ଫୁଲ୍ଲ କା' କା' ଧ୍ୱନି କରି ଅନ୍ୟ କାଉମାନଙ୍କୁ ଡାକ ପକାଏ । ଗୁଡ଼ର ସନ୍ଧାନ ପାଇଲେ, ପିମ୍ପୁଡ଼ି ମଧ୍ୟ ତା'ର ଜାତିଭାଇଙ୍କୁ ଆସିବାର ସଙ୍କେତ ଦେଇଥାଏ । ଅତ୍ୟଧିକ ଖୁସି ଥିଲାବେଳେ ପଶୁମାନେ ଏକପ୍ରକାର ଆଦର ସୂଚକ ଶବ୍ଦ କରିଥାନ୍ତି । ବିଲେଇ ଘୁଡୁରୁ ଘୁଡୁରୁ ହୋଇ ଦେହରେ ଘଷିହୁଏ । ଗୃହ ମାଲିକ ଯେତେବେଳେ ବାହାରୁ ବୁଲାବୁଲି କରି ଘରକୁ ଫେରେ, ସେତେବେଳେ ପୋଷା କୁକୁରଟି କାଁ, କୁଁ, ହୋଇ ତା ପାଖକୁ ଦଉଡ଼ି ଆସେ ଓ ଦେହରେ ଘଷିହୁଏ । ପକ୍ଷୀମାନେ ସାଧାରଣତଃ ବିଲେଇକୁ ଘୃଣା କରିଥାନ୍ତି ଓ ତାକୁ ଭୟ କରିବାର ମଧ୍ୟ ଯଥେଷ୍ଟ କାରଣ ଅଛି; କିନ୍ତୁ ପରିହାସ ଛଳରେ କୁହାଯାଇଥାଏ ପକ୍ଷୀମାନେ ବିଲେଇ ପରି ନକଲ କରିବାରେ ଧୁରନ୍ଧର । ଶୁଆ ଶାରୀମାନେ ଆମେ ଶିଖାଉଥିବା କଥାକୁ ଶୁଣି, ଶିଖି ଓ ଅନୁକରଣ କରି ଅନେକ କଥା କହିପାରନ୍ତି । ଶାରୀ ମଧ୍ୟ ଶିଖିକରି ଗୀତ ଗାଇବାର ବା ଆଇମା ବୁଢ଼ୀଠାରୁ ଶୁଣି ଶୁଣି ପଦେ ଅଧେ ଗୀତ ଗାଇବାର ନଜିର ଅଛି; କିନ୍ତୁ ଏହା ସେମାନଙ୍କର ନିଜସ୍ୱ ଭାଷା ନୁହେଁ । ଏକଥା ସତ ଯେ ପ୍ରଥମାବସ୍ଥାରେ ନିଜ ପ୍ରବୃତିବଶତଃ ପକ୍ଷୀମାନେ ଗୀତ ଗାଇବା ଆରମ୍ଭ କରନ୍ତି । ବିପଦର ଗନ୍ଧ ବାରିପାରିଲେ ସଂକେତ ଦେବା ଏବଂ ମିଳନ ବା ସହବାସ ପାଇଁ ଆମନ୍ତ୍ରଣ କରିବାର ଡାକ ସେମାନେ ଆପେ ଆପେ ଶିଖିଯାନ୍ତି । କେତେକ ପକ୍ଷୀ ଗୀତ ଗାଇବାର ଶୈଳୀ ବଂଶାନୁକ୍ରମେ

ପାଉଥିବାବେଳେ, କେତେକ ମଧ୍ୟ ପାରିପାର୍ଶ୍ୱିକ ପରିବେଶରୁ ତାହା ଆହରଣ କରିଥାନ୍ତି । ନିକୋଟିନ୍ ଚରଗନ୍‌ଙ୍କ ମତରେ ସାମୁଦ୍ରିକ ଜଳଚର ଜୀବ ମାଛଖିଆର କଣ୍ଠ ଅତ୍ୟନ୍ତ ସୁମଧୁର । ସହବାସ ପାଇଁ ସ୍ତ୍ରୀ 'ମାଛଖିଆ'କୁ ଆକର୍ଷଣ କରିବା ଉଦ୍ଦେଶ୍ୟରେ ସେ ଖୁବ୍ ଲମ୍ବା ସ୍ୱରରେ ଡାକିଥାଏ । ବସା ନିକଟରେ ବିପଦର ସୂଚନା ପାଇଲେ ସେ ଆକ୍ରମଣ ପାଇଁ ଯୁଦ୍ଧଂ ଦେହି ଡାକରା ଦେଇଥାଏ । ଏହା ମିଳନ ପାଇଁ ଉଦ୍ଦିଷ୍ଟ ଡାକ ତୁଳନାରେ ଅଧିକ ଶବ୍ଦାୟିତ ଏବଂ ପ୍ରତିଥର ଏହି ପ୍ରକାର ଧ୍ୱନି ସହ ପକ୍ଷୀଟି ଆକ୍ରମଣର ଅଙ୍ଗଭଙ୍ଗୀ ଦେଖାଇଥାଏ । ଏହି ଜାତୀୟ ପକ୍ଷୀମାନେ ବର୍ଷସାରା ରଣତୂରୀ ବାଜିଲା ପରି ଉଚ୍ଚ ସ୍ୱରରେ କର୍କଶ ରାବ କରିଥାନ୍ତି ।

## ଖାଦ୍ୟ ପାଇଁ ଭାଷା

ଭୋକ ହେଲେ ପକ୍ଷୀ ଶାବକମାନେ ସେଁ ସାଁ ଶବ୍ଦ କରନ୍ତି । ଭୋକରେ ଅନେକ ପକ୍ଷୀ ଛୁଆ ଧକେଇ ହୁଅନ୍ତି । ଯେଉଁ ପକ୍ଷୀଶାବକମାନେ ସେଁ ସାଁ ଶବ୍ଦ କରି ଆଗକୁ ଥଣ୍ଟ ବଢ଼ାନ୍ତି ସେମାନଙ୍କ ପାଟିରେ ଆଗ ଆହାର ପଡ଼େ' । ବସା ଦୋହଲିଗଲେ, ମା' ଆସିଛି ବୋଲି ଜାଣିପାରି ଖାଦ୍ୟ ଆଶାରେ ଅନେକ ପକ୍ଷୀଛୁଆଙ୍କ ପାଟି ଆପେ ଆପେ ଖୋଲିଯାଏ ।

## ମିଳନ ପାଇଁ ଆହ୍ୱାନ

ମିଳନ ବା ସହବାସ ପାଇଁ ପୁରୁଷ ପଶୁପକ୍ଷୀ, ସ୍ତ୍ରୀ ପଶୁପକ୍ଷୀମାନଙ୍କୁ ଏକ ପ୍ରକାରର ଆନ୍ତରିକ କୋମଳ ସ୍ୱରରେ ଆହ୍ୱାନ କରିଥାନ୍ତି । ଏହି ଶବ୍ଦ ସାଙ୍ଗୀତିକ ଓ ଶ୍ରୁତିମଧୁର । ବର୍ଷର ଅନ୍ୟ ସବୁ ସମୟର ଧ୍ୱନିଠାରୁ ପ୍ରଜନନ କାଳର ସଙ୍ଗୀତ ମୁଖରତା ଭିନ୍ନ । ଏହି ସମୟରେ ଅନେକ ଅଣ୍ଡିରା ପକ୍ଷୀ ସଙ୍ଗୀତମୁଖର ହୋଇଉଠନ୍ତି । ଅନ୍ତତଃପକ୍ଷେ ନିତିଦିନିଆ କାକଳି ସାଙ୍ଗକୁ ଗୋଟିଏ ଯୋଡ଼ିଏ ଅଧିକା ସୁର ସେମାନେ ଉଚ୍ଚାରଣ କରନ୍ତି । ଅବଶ୍ୟ ପୂର୍ବରୁ ଧାରଣା ଥିଲା ଯେ, ଅଣ୍ଡିରା ପକ୍ଷୀର ସଙ୍ଗୀତ କେବଳ ମାଈ ପକ୍ଷୀକୁ ଆକୃଷ୍ଟ କରିବା ପାଇଁ ଉଦ୍ଦିଷ୍ଟ ।

## ପ୍ରାଣୀଙ୍କ ଭାଷା ଓ ଇଲାକା ନିର୍ଦ୍ଦେଶ

ନିଜ ଇଲାକାର ଦଖଲସ୍ୱତ୍ୱ ଜାହିର କଲାବେଳେ ବା ନିଜ ସାମ୍ରାଜ୍ୟର ସ୍ଥିତି ଅନ୍ୟକୁ ଜଣେଇ ଦେବା ପାଇଁ ପଶୁପକ୍ଷୀମାନେ ଏକ ପ୍ରକାରର ଶବ୍ଦ କରିଥାନ୍ତି । ବାଘ ଓ ସିଂହ ଯେତେବେଳେ ଗୁରୁ ଗର୍ଜ୍ଜନ କରେ, ସେତେବେଳେ ସେ ନିଜ ସାମ୍ରାଜ୍ୟର ସ୍ଥିତି ବିଷୟରେ ଅନ୍ୟକୁ ସତର୍କ କରେଇ ଦିଏ । ସେହିପରି କୁକୁରଟିଏ ତାର ଚିରାଚରିତ

ସ୍ଥାନରେ ଅନ୍ୟ ଗୋଟିଏ କୁକୁରକୁ ଦେଖିଲେ, ଭାଉ ଭାଉ ଗର୍ଜନ କରି ତାକୁ ସେଠୁ ଘଉଡ଼େଇ ଦିଏ । ''ଏ ଗଛଟି ମୋର, ମୁଁ ଏଠି ବସା ବାନ୍ଧୁଛି । ଏଠୁ ପଳେଇଯା–'' ଏକ ପ୍ରକାରର ଶବ୍ଦ କରି ଅଣ୍ଡିରା କୋଇଲିଟି ଅନ୍ୟମାନଙ୍କୁ ସେ ଗଛରୁ ଘଉଡ଼େଇ ଦିଏ ।

## ଭାଷା ଓ ବିପଦ ସୂଚନା

ସତର୍କ ସୂଚନା ପାଇଁ ଏକ ଭିନ୍ନ ରକମର ଧ୍ୱନି ସାଧାରଣତଃ ଜୀବଜନ୍ତୁମାନେ କରିଥାନ୍ତି । ଜଙ୍ଗଲରେ ବାଘ ଯେଉଁ ଦିଗକୁ ଯାଏ ଗଛ ଉପରେ ବସିଥିବା ମାଙ୍କଡ଼ ଗଛ ଡାଳରୁ ଡାଳକୁ ଡେଇଁ ତାର ଅନୁସରଣ କରେ ଏବଂ ହରିଣ, ସମ୍ବର ଓ ଅନ୍ୟ ଛୋଟ ଛୋଟ ଜୀବଜନ୍ତୁଙ୍କୁ ଏକ ସାଙ୍କେତିକ ଶବ୍ଦ କରି ସତର୍କ କରେଇ ଦିଏ । କାଉ ମଧ ବେଳେବେଳେ କର୍କଶ ରାଉ ରାଉ ଶବ୍ଦ କରି ବିପଦର ସୂଚନା ଦେଇଥାଏ । ଏହି ଶବ୍ଦର ଅର୍ଥ ହେଉଛି, ବିପଦର ସମ୍ଭାବନା ଅଛି, ଦୂରକୁ ପଳେଇଯାଅ ।

## ନିଜ ପରିସର ନିର୍ଦ୍ଧାରଣ ଓ ବ୍ୟବହାର

ମହୁମାଛି,ବିରାଡ଼ି, କୁକୁର, ଅନେକ ପ୍ରକାର ପକ୍ଷୀ ଓ ବାଘ, ସିଂହ ଇତ୍ୟାଦି ପ୍ରାଣୀଙ୍କ ଭାଷା ବା ଭଙ୍ଗୀକୁ ବାଦଦେଲେ ଆଉ କେତେକ ପ୍ରାଣୀଙ୍କ ବ୍ୟବହାର ବା ଇଙ୍ଗିତ ଜାଣିଲେ ଆହୁରି ଆଶ୍ଚର୍ଯ୍ୟ ଲାଗିବ । ହରିଣ ପରିବାରର ପ୍ରାଣୀମାନେ ଅର୍ଥାତ୍ ହରିଣ, ସମ୍ବର, ଚିତଳ, ଚଉଶିଙ୍ଗା ଓ ବାରଶିଙ୍ଗା ଆଦି ପ୍ରାଣୀ କେତେକ ନିର୍ଦ୍ଦିଷ୍ଟ ସ୍ଥାନ ମଧରେ ରହିବାକୁ ଭଲପାଆନ୍ତି । ଏମାନେ ମୁଖ୍ୟତଃ ତାଙ୍କର ମଳଦ୍ୱାରକୁ ଗଛଗୁଡ଼ିକର ଗଣ୍ଡିରେ ଘଷି ତାଙ୍କମାନଙ୍କ ପରିଧି ବା ପରିସରକୁ ନିୟନ୍ତ୍ରିତ କରିଥାଆନ୍ତି । ଅର୍ଥାତ୍ ସେମାନେ ରହୁଥିବା ଅଞ୍ଚଳ ମଧରେ ଗୁହ୍ୟଦ୍ୱାରକୁ ଗଛରେ ଘଷିବା ଦ୍ୱାରା ଏକ ପ୍ରକାର ଗନ୍ଧ ଦ୍ୱାରା ସେମାନେ ତାଙ୍କର ଅଞ୍ଚଳ ମଧରେ ନିଜକୁ ସୀମାବଦ୍ଧ କରିଥାଆନ୍ତି । ସେ ପରିସର ବାହାରକୁ ଆସିଲେ ଗନ୍ଧ ଜାଣି ନ ପାରି ପୁଣି ତାଙ୍କ ନିଜ ପରିସରକୁ ଫେରିଯାଆନ୍ତି ।

## ମଳତ୍ୟାଗ ମାଧ୍ୟମରେ ନିଜର ଇଲାକା

ଆଉ କେତେକ ଗୋମେଷାଦି ପ୍ରାଣୀମାନେ ଜଙ୍ଗଲରେ ବୁଲିବା ବେଳେ ତାଙ୍କ ନିଜ ଜାତିଭାଇକୁ ଜାଣିବା ସମ୍ଭବ ହୋଇ ନ ଥାଏ । ହଜିଯାଆନ୍ତି ବେଳେ ବେଳେ । ଜାଣିବା ପାଇଁ ସେମାନେ ଆଉ ଏକ ଉପାୟ ଅବଲମ୍ବନ କରିଥାଆନ୍ତି । ଜଙ୍ଗଲର ଯେଉଁ ସ୍ଥାନରେ ଥିଲେ ବି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ସେମାନେ ମଳତ୍ୟାଗ କରିଥାଆନ୍ତି ।

ତେଣୁ ମଳ ଏକାଠି ଗଦା ହେବା ଫଳରେ ମଳଗଦା ସୃଷ୍ଟି ହୋଇଥାଏ । ସେ ଗଦାକୁ ଦେଖି ବା ତାହାର ବାସନା ବାରି ପୁନର୍ବାର ସେ ସ୍ଥାନକୁ ହଜିଯାଇଥିବା ଗାଈ ଫେରିଆସନ୍ତି ।

## ଭାଷା ଓ ଗବେଷଣା

କହିବାକୁ ଗଲେ ମୋଟାମୋଟି ପ୍ରତ୍ୟେକ ପ୍ରାଣୀ ତାର ସମଜାତିର ପ୍ରାଣୀ କଥା ବୁଝିବା ପାଇଁ ବା ଜଣାଇବା ପାଇଁ ଅଥବା ଆକୃଷ୍ଟ କରିବା ପାଇଁ କିଛି ନା କିଛି ଭାବ, ଭଙ୍ଗୀ, କୌଶଳ ବା ଇଙ୍ଗିତ ଦେଖାଇବାର ସୂଚନା ଦେଖାଯାଇଥାଏ । ଯେଉଁମାନଙ୍କର ଆମେ ବୁଝିପାରୁ ଆମେ ତାହା ଆଲୋଚନା କରିଥାଉ । ଆଉ ଯେଉଁମାନଙ୍କର ବୁଝିପାରି ନ ଥାଉ ସେଗୁଡ଼ିକୁ ଆଲୋଚନା ପରିସରକୁ ଆଣି ନ ଥାଉ । ସମୟାନୁକ୍ରମେ ମଣିଷ ଗୃହପାଳିତ ପଶୁପକ୍ଷୀମାନଙ୍କର ଭାଷାକୁ ପ୍ରଥମେ ବୁଝିପାରିଥିଲା; କାରଣ ପାଖରେ ରଖି ସେମାନଙ୍କ କାର୍ଯ୍ୟକଳାପକୁ ନିୟମିତ ପର୍ଯ୍ୟବେକ୍ଷଣ କରିବା ଦ୍ୱାରା ସେମାନଙ୍କୁ ବୁଝିବା ସମ୍ଭବ ହୋଇଥାଏ । ପ୍ରକୃତିରେ ବା ପରିବେଶର ଚାରିପଟେ ଯେଉଁ ବନ୍ୟପ୍ରାଣୀ ରହିଲେ ସେମାନଙ୍କୁ ଜାଣିବା ପାଇଁ ଅଭୟାରଣ୍ୟ, ଜାତୀୟ ଉଦ୍ୟାନ ବା ଜୈବମଣ୍ଡଳଗୁଡ଼ିକ ଖୋରାକ ଯୋଗାଇଥାଏ । ବାସ୍ତବରେ ଜୀବଜନ୍ତୁମାନଙ୍କର କଥାକୁ ବୁଝିବା ଆଦୌ ସହଜ ନୁହେଁ । ଅନେକ ପର୍ଯ୍ୟବେକ୍ଷଣଗୁଡ଼ିକରୁ ସେମାନଙ୍କ କାର୍ଯ୍ୟକଳାପ ବା ଆବଶ୍ୟକତା ଜଣାପଡ଼ିବା ସମ୍ଭବପର । କିଛି କିଛି ଜୀବଜନ୍ତୁମାନଙ୍କର ଏପରି ବ୍ୟବହାର ବିଜ୍ଞାନ (Ethology) ଅନୁଧ୍ୟାନ କରିବା ପରେ ବା ପଢ଼ିବା ପରେ ଅଥବା ଶୁଣିବା ପରେ ମନେହୁଏ ବୋଧହୁଏ ପୃଥିବୀର ସମସ୍ତ ପ୍ରାଣୀମାନଙ୍କର ଭାବ ବିନିମୟ ପ୍ରକ୍ରିୟା ରହିଛି । ହୁଏତ ଆମେ ବୁଝିପାରୁ ନାହୁଁ ବା ପାରି ନାହୁଁ । ଚେଷ୍ଟାକଲେ ଏହାର ଉତ୍ତର ନିଶ୍ଚୟ ଆମକୁ ମିଳିବ । ଅଧିକ ନିରବଚ୍ଛିନ୍ନ ଗବେଷଣା ହିଁ ଆମକୁ ଏ ଜଟିଳ ସମସ୍ୟାର ଉତ୍ତର ଦେବ ବୋଲି ଆଶା ।



# ମଣିଷଗିଳା ବଉଳା

ଓଡ଼ିଶାରେ ଦେଖାଯାଉଥିବା ତିନିଜାତୀୟ କୁମ୍ଭୀରମାନଙ୍କ ମଧ୍ୟରୁ ଲୁଣା ବା ବଉଳା କୁମ୍ଭୀର (*Crocodylus porosus*)ବାସସ୍ଥଳ ଓ ପରିବେଶ ସମ୍ପୂର୍ଣ୍ଣ ଭିନ୍ନ ଧରଣର । ଅନ୍ୟ ଦୁଇଟି କୁମ୍ଭୀର, ଯଥା-ଥଣ୍ଟିଆ ବା ଘଡ଼ିଆଳ (Gavialis *gangeticus)*ଏବଂ ମଗର ବା ଗୋମୁହାଁ । *(Crocodylus palustris)* କୁମ୍ଭୀରଙ୍କର ବାସସ୍ଥଳ ପ୍ରାୟ ଏକପ୍ରକାର । ଘଡ଼ିଆଳ କୁମ୍ଭୀର ଗଭୀର ନଦୀ ତଥା ଗଣ୍ଡରେ ରହିବାକୁ ଭଲପାଆନ୍ତି । ମଗର କୁମ୍ଭୀର ନଦୀ, ନାଳ, ପୋଖରୀ, ଜଳାଶୟ, ଏବଂ ଖାଲୁଆ ଜାଗାରେ ରହିବାକୁ ଭଲପାଆନ୍ତି । ଏହି ଦୁଇଜାତୀୟ କୁମ୍ଭୀର ମିଠା ପାଣିରେ ରହନ୍ତି କିନ୍ତୁ ଲୁଣାପାଣି କୁମ୍ଭୀର ଲୁଣି ବା ଖାରିଆ ପାଣିରେ ରହନ୍ତି । ଗଭୀର ନଦୀ, ନାଳ, କାଦୁଆ ନଦୀପଠା ଓ ଘଞ୍ଚ ଜଙ୍ଗଲ ହେନ୍ତାଳ ବନ ବା ସୁନ୍ଦରୀ ଜଙ୍ଗଲ (Mangroves) ଥିବା ପରିବେଶ ଲୁଣା ବା ବଉଳା କୁମ୍ଭୀରର ପ୍ରକୃତ ବାସସ୍ଥଳ ।

**ବଉଳାର ବସା ଓ ଅଣ୍ଡା**

ଘଡ଼ିଆଳ ଓ ମଗର କୁମ୍ଭୀର ନଦୀପଠାରେ ବାଲି ଭିତରେ ଗାତ କରି ଅଣ୍ଡା ଦିଅନ୍ତି । କିନ୍ତୁ ଲୁଣା କୁମ୍ଭୀର, ଅଣ୍ଡା ଦେବାପାଇଁ ଲୁଣା ଜଙ୍ଗଲ ଉପରେ ନିର୍ଭର କରେ । ଏମାନଙ୍କର ବସାକରିବା ଓ ଅଣ୍ଡାଦେବା ପ୍ରଣାଳୀ ଅନ୍ୟ ଦୁଇ କୁମ୍ଭୀରମାନଙ୍କ ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ମା କୁମ୍ଭୀର ଅଣ୍ଡା ଦେବାର କିଛିଦିନ ପୂର୍ବରୁ(ମେ ମାସର ମଧ୍ୟଭାଗରୁ) ନଦୀ ସହିତ ମିଶିଥିବା ଛୋଟ ଛୋଟ ନାଳ ଦେଇ ଜଙ୍ଗଲ ଭିତରକୁ ଯାଏ । ଜଙ୍ଗଲ ଭିତରେ ବସାଟିଏ କରି ଅଣ୍ଡା ଦେବା ପାଇଁ ମା' କୁମ୍ଭୀରକୁ ବହୁତ ପରିଶ୍ରମ କରିବାକୁ ପଡ଼େ । ଦେଖାଯାଇଛି ଯେ ଉତ୍ତମ ସ୍ଥାନଟିଏ ନ ପାଇ ମା' କୁମ୍ଭୀର ତିନି ଚାରି ଜାଗା ବସା କରିବାକୁ ଚେଷ୍ଟାକରି ବିଫଳ ହୋଇଛନ୍ତି । କୁମ୍ଭୀର ବସାଟିଏ କରିବା ପୂର୍ବରୁ ପ୍ରଥମେ ଦେଖେ ସେ ସ୍ଥାନରେ ପ୍ରଚୁର ପରିମାଣରେ ବସାଟିଏ ବାନ୍ଧିବାର ଉପକରଣ ଯଥା– ଗଛର ଡାଳ ଓ ପତ୍ର ଅଛି କି ନାହିଁ । ଦ୍ୱିତୀୟରେ ସ୍ଥାନଟି ନିରାପଦ ହୋଇଥିବା ଦରକାର । ବିଶେଷତଃ ମଣିଷର ଅତ୍ୟାଚାରରୁ ସେ ନିଜ ବଂଶଧରକୁ ନିରାପଦରେ ରଖିବାକୁ ଚାହେଁ । ତୃତୀୟରେ ସେ ସ୍ଥାନଟି ଟିକେ ଉଚ୍ଚାଜାଗା ହୋଇଥିବା ଦରକାର । ଦିନକୁ ଦୁଇଥର ଜୁଆରର ପ୍ରଭାବରେ ପାଣି ମାଡ଼ି ଯାଉଥିବା ଯୋଗୁଁ ବସାଟି ଯେପରି



ବୁଡ଼ି ନ ଯାଏ କିମ୍ବା ଭାସି ନ ଯାଏ ତାହା ମଧ୍ୟ ମା କୁମ୍ଭୀର ବିଚାରକୁ ନେଇଥାଏ । ଭିତରକନିକାରେ କୁମ୍ଭୀରର ବଂଶରକ୍ଷା ଓ ବଂଶବୃଦ୍ଧି ପାଇଁ କାର୍ଯ୍ୟକାରୀ ହେଉଥିବା ଯୋଜନା ମାଧ୍ୟମରେ ୧୯୭୫ ମସିହା ପରଠାରୁ ଜଙ୍ଗଲରୁ ଅଣ୍ଡା ସଂଗ୍ରହ କରାଯାଇ ଛୁଆ ଉତ୍ପାଦନ କରାଯାଉଅଛି । ଦେଖାଯାଇଛି, ଯେଉଁଠି ବସାଟି ଜୁଆର ପାଣିରେ ଦୈନିକ ବୁଡ଼ିଯାଇଛି କିମ୍ବା ସମ୍ପୂର୍ଣ୍ଣ ରୂପେ ବୁଡ଼ିକରି ରହିଛି ସେ ବସାରେ ଥିବା ଅଣ୍ଡାଗୁଡ଼ିକ ସଂପୂର୍ଣ୍ଣ ରୂପେ ପଚିଯାଇଛି କିମ୍ବା ଛୁଆ କିଛି ପରିମାଣରେ ବଢ଼ିବା ପରେ ଅଣ୍ଡା ମଧ୍ୟରେ ମରିଯାଇଛି । ଯଦି ଅଣ୍ଡାଗୁଡ଼ିକ ୨୪ ଘଣ୍ଟାରୁ ଅଧିକ ସମୟ ପାଣିରେ ବୁଡ଼ି ରହନ୍ତି ତା ହେଲେ ସେଥିରୁ ଛୁଆହେବା ସମ୍ଭବ ନୁହେଁ । ମାଆ କୁମ୍ଭୀର ଏଭଳି ପରିସ୍ଥିତିରୁ ରକ୍ଷା ପାଇବା ପାଇଁ ବିଭିନ୍ନ ପନ୍ଥା ଅବଲମ୍ବନ କରିଥାଏ । ପୁରୁଣା ବସା ଉପରେ ଆଉ କିଛି ପତ୍ରଡ଼ାଳ ପକାଇ ନୂତନ ବସା କରେ ଓ ସେଥିରେ ଅଣ୍ଡାଦିଏ । ଜୁଆର ପାଣି ଯଦିଓ ବସାର ମଝି ପର୍ଯ୍ୟନ୍ତ ସ୍ପର୍ଶ କରେ; କିନ୍ତୁ ବସାକୁ ସଂପୂର୍ଣ୍ଣ ରୂପେ ବୁଡ଼ାଇପାରେ ନାହିଁ । ଫଳରେ ଅଣ୍ଡାର କିଛି କ୍ଷତି ହୁଏ ନାହିଁ ।

## ଭିତର କନିକା ଓ ବଉଳା

ଭିତରକନିକାରେ ଏ ପର୍ଯ୍ୟନ୍ତ ଯେତେଗୁଡ଼ିଏ କୁମ୍ଭୀର ବସାରୁ ଅଣ୍ଡା ସଂଗ୍ରହ ହୋଇଛି ସେଥିମଧ୍ୟରୁ ୭୫ ଭାଗ ବସା ଲୁଣା ଜଙ୍ଗଲର ଏପରି ସ୍ଥାନରେ ମିଳିଛି,

ଯେଉଁଠି ପ୍ରଚୁର ପରିମାଣରେ ଫର୍ଣ୍ଣ ଜାତୀୟ ଗଛ ଥାଏ । ଏହି ଗଛର ନାମ ଖରଖରି । ଏହି ଗଛର ପତ୍ର ଓ ଡାଳକୁ ମାଆ କୁମ୍ଭୀର ସହଜରେ ଦାନ୍ତରେ ଛିଡ଼ାଇ ପାରେ ଓ ଅଳ୍ପ ସମୟରେ ବହୁତ ଡାଳପତ୍ର ସଂଗ୍ରହ କରିପାରେ । ଏହା ବ୍ୟତୀତ ଖରଖରି ପତ୍ର ଶୀଘ୍ର ପଚିଯାଏ, ଫଳରେ ଅଣ୍ଡାରୁ ଛୁଆ ହେବାପାଇଁ ଦରକାରୀ ପରିମାଣରେ ଉତ୍ତାପ ମିଳେ । ଖରଖରି (ଫର୍ଣ୍ଣ) ବ୍ୟତୀତ ହେନ୍ତାଳଗଛ ହେଉଛି ବସାବାନ୍ଧିବା ପାଇଁ ଅନ୍ୟ ଏକ ଦରକାରୀ ଗଛ । ଶତକଡ଼ା ୨୦ ଭାଗ କୁମ୍ଭୀର ବସା ହିଁ ବୁଦୁବୁଦିଆ କିମ୍ବା ଘଞ୍ଚ ହେନ୍ତାଳ ଜଙ୍ଗଲ ମଧ୍ୟରୁ ମିଳିଥାଏ । ହେନ୍ତାଳ ଗଛରେ କଣ୍ଟା ଥିବାରୁ କୁମ୍ଭୀରଙ୍କୁ ବସା ତିଆରି କରିବାରେ ଟିକିଏ ଅସୁବିଧା ହୁଏ । ଏହା ବ୍ୟତୀତ ଅଳ୍ପ କେତେକ ମାଆ କୁମ୍ଭୀର କାଦୁଅରେ କିଛି ଶୁଖିଲାପତ୍ର ଓ ଡାଳ ମିଶାଇ ବସା ତିଆରି କରନ୍ତି । ଏଭଳି ବସା ମାତ୍ର ଶତକଡ଼ା ୫ ଭାଗ ।

ଚାନ୍ଦବାଲିଠାରୁ ମଟରଲଞ୍ଚ କିମ୍ବା ଡଙ୍ଗାରେ ବୈତରଣୀ ନଦୀରେ ଉପରମୁହାଁ କିଛି ବାଟ ଗଲେ ପଡ଼ିବ "ଦୁର୍ଗାପୁର" ମୁହାଣ- ବୈତରଣୀ ଓ ବ୍ରାହ୍ମଣୀ ନଦୀର ସଙ୍ଗମ ସ୍ଥଳ । ତାପରେ ତଳମୁହାଁ କିଛି ବାଟ ଗଲେ ପଡ଼ିବ " ଖୋଳା" । ପ୍ରାୟ ଷାଠିଏ ବର୍ଷ ପୂର୍ବରୁ ଏହି ଖୋଳାଠାରେ ତତ୍କାଳୀନ କନିକା ରାଜା ଖୋଳାଇଥିଲେ ୨ କିଲୋମିଟର ବ୍ୟାପୀ ଏକ କୃତ୍ରିମ ନାଳ ଭିତରକନିକା ନଦୀ ସହିତ ସଂଯୋଗ ସ୍ଥାପନ କରିବା ପାଇଁ । ଏହି ଖୋଳାଠାରୁ ଆରମ୍ଭ ହୋଇଛି ଦିଗନ୍ତବିସ୍ତାରୀ " ଲୁଣା ଜଙ୍ଗଲ" ଯାହାକି ବିଖ୍ୟାତ କନିକା ଅଭୟାରଣ୍ୟ ରୂପେ ପରିଚିତ । ଏହି ଅଭୟାରଣ୍ୟର କ୍ଷେତ୍ରଫଳ ହେଉଛି ୬୫୦ ବର୍ଗ କିଲୋମିଟର ଏବଂ ଏହି ଲୁଣା ଜଙ୍ଗଲର ମୋଟ କ୍ଷେତ୍ରଫଳ ୧୪୧ ବର୍ଗ କିଲୋମିଟର । କନିକା ନଦୀ ପଥରେ ଗଲାବେଳେ ଅନେକ ନାଳ ସଂଯୋଗ କରୁଥିବାର ଦେଖାଯାଏ, ଯଥା– ଜଳଆହାର,ଗଞ୍ଜେଇଖିଆ ଓ ଶୁଗୁଣା ଚେର ଇତ୍ୟାଦି । କଟକ ଜିଲ୍ଲାର କନିକା ଓ ରାଜନଗର ବ୍ଲକରେ ଥିବା ଏହି ନଦୀର ନାଳରେ ପୂର୍ବରୁ ଅସଂଖ୍ୟ ଲୁଣାପାଣି କୁମ୍ଭୀର 'ବଉଳା' ରହୁଥିଲେ ବୋଲି ଶୁଣାଯାଏ । କାଳକ୍ରମେ ଶିକାରୀମାନଙ୍କ ଗୁଳିରେ ଓଡ଼ିଶାର ନଦନଦୀରେ ରହୁଥିବା ଅନ୍ୟ ଦୁଇଟି କିସମର କୁମ୍ଭୀର ଗୋତ୍ରର ଘଡ଼ିଆଳ ଓ ମଗର ସହିତ ଏଗୁଡ଼ିକର ମଧ୍ୟ ବଂଶ ନିପାତ ହେବାକୁ ବସିଥିଲା; କିନ୍ତୁ କନିକାର ଏହି ଲୁଣା ଜଙ୍ଗଲ ଅଞ୍ଚଳକୁ ଅଭୟାରଣ୍ୟ ରୂପେ ଘୋଷଣା କରାଯିବା ପରଠାରୁ ଏ ଅଞ୍ଚଳରେ କୁମ୍ଭୀର କିମ୍ବା ଅନ୍ୟ ବନ୍ୟପ୍ରାଣୀ ଶିକାର କରିବାକୁ ନିଷେଧ କରାଗଲା ।

ଚାନ୍ଦବାଲିଠାରୁ ଭିତରକନିକା ନଦୀ ପଥରେ ଗଲେ ୪୦ କିଲୋମିଟର ଦୂରରେ ପଡ଼ିବ ଭାରତର ସର୍ବବୃହତ୍ କୃତ୍ରିମ କୁମ୍ଭୀର ପ୍ରଜନନ କେନ୍ଦ୍ର- ''ଡାଙ୍ଗମାଳ''। ଅଢ଼େଇ ଲକ୍ଷ ଟଙ୍କା ବ୍ୟୟରେ ରାଜ୍ୟ ଜଙ୍ଗଲ ବିଭାଗ ଦ୍ୱାରା ନବନିର୍ମିତ ଆରାମଦାୟକ ମଟରଲଞ୍ଚ '' ବଉଳା'' ରେ ଏହି ନଦୀପଥରେ, ଭାରତବିଖ୍ୟାତ ପ୍ରାଣିବିଜ୍ଞାନୀ ତଥା ଚେନ୍ନାଇ ସର୍ପ ଉଦ୍ୟାନର ଡାଇରେକ୍ଟର ଶ୍ରୀ.ଆର. ହ୍ୱାଇଟାକେର, ଗହୀରମଥା ଡାଙ୍ଗମାଳର ସମସ୍ତ ଅଞ୍ଚଳ ବୁଲି କୁମ୍ଭୀରମାନଙ୍କର ସୁନ୍ଦର ପ୍ରାକୃତିକ ପରିବେଶ ବୋଲି ମତପୋଷଣ କରିଥିଲେ ।

ବଉଳା କୁମ୍ଭୀର ଖୁବ୍ ଚତୁର ଓ ଭୟଙ୍କର । ଏହା ମଣିଷକୁ ଗୋଟାସୁଦ୍ଧା ଗିଳିଦିଏ ବୋଲି ପ୍ରବାଦ ଅଛି । ଅନ୍ୟ ଦୁଇଟି କିସମର କୁମ୍ଭୀର ମଧ୍ୟରୁ ଘଡ଼ିଆଳ ମଣିଷ ମାରେ ନାହିଁ । ମାଛ ଏହାର ପ୍ରଧାନ ଖାଦ୍ୟ । ମଗର ମଣିଷ ମାରିବା କ୍ୱଚିତ୍ ଦୃଷ୍ଟିକୁ ଆସେ ।

ବିଶ୍ୱବିଖ୍ୟାତ ପ୍ରାଣିବିଜ୍ଞାନୀ ଶ୍ରୀ ଏଚ. ଆର. ବସଟାର୍ଡଙ୍କ ସୁପାରିସ ଅନୁଯାୟୀ ମହାନଦୀର ଟିକରପଡ଼ାଠାରେ ୧୯୭୪ ମସିହାରେ ପୃଥିବୀର ପ୍ରଥମ ଘଡ଼ିଆଳ କୁମ୍ଭୀର କୃତ୍ରିମ ପ୍ରଜନନ କେନ୍ଦ୍ର ସ୍ଥାପିତ ହୋଇ ସାରିଥିଲା । ପରେ ପରେ ୧୯୭୫ ମସିହାରେ ଡାଙ୍ଗମାଳଠାରେ ବଉଳା କୁମ୍ଭୀରର କୃତ୍ରିମ ପ୍ରଜନନ କେନ୍ଦ୍ର ପ୍ରତିଷ୍ଠିତ ହୋଇଛି ।

ଅଣ୍ଡାରୁ ଛୁଆ ବାହାରିବା ପରେ ପ୍ରଥମ ବର୍ଷ କୁମ୍ଭୀରଟି ପ୍ରାୟ ୩ ଫୁଟ ପର୍ଯ୍ୟନ୍ତ ବଢ଼ିଯାଏ । ତା'ପରେ ଏହା ଧୀରେ ଧୀରେ ବଢ଼େ । କୁମ୍ଭୀର ଛୁଆକୁ ତିନି ଚାରି ବର୍ଷ ହେଲେ କିମ୍ବା ତିନି ଚାରି ଫୁଟ ଲମ୍ବା ହେଲେ, ତାକୁ ଭିତରକନିକା ନଦୀ ଓ ନାଳମାନଙ୍କରେ ଛାଡ଼ି ଦିଆଯାଏ । ଏଭଳି କେତେକ ବଉଳା କୁମ୍ଭୀର ଛୁଆକୁ ପ୍ରାକୃତିକ ପରିବେଶ ମଧ୍ୟକୁ ଛଡ଼ାଯାଇଛି ।

ଶଙ୍ଖୁଆ କୁମ୍ଭୀରର ରଙ୍ଗ ବିଶୁଦ୍ଧ ଧଳା ନୁହେଁ । ଏହା ପ୍ରାୟ ହଳଦିଆ ଓ ଧଳା ମିଶାମିଶି ଏବଂ ଦେହସାରା କଳାଦାଗ ରହିଛି । ଏହାକୁ ଇଂରାଜୀରେ ''ଜାଣ୍ଡିକ୍'' ରଙ୍ଗ କହନ୍ତି । ଏହି କୁମ୍ଭୀରଗୁଡ଼ିକ ସାଧାରଣତଃ ଗହନ ଲୁଣା ଜଙ୍ଗଲ କୂଳରେ ରହିବାକୁ ଏବଂ ଅଣ୍ଡା ଦେବାକୁ ଭଲ ପାଆନ୍ତି । ଭିତରକନିକା ନଦୀ ଓ ନାଳରେ ମିଳୁଥିବା ପ୍ରଚୁର ମାଛ ଏମାନଙ୍କର ପ୍ରଧାନ ଖାଦ୍ୟ । ଏହି କେନ୍ଦ୍ରରେ ଥିବା କୁମ୍ଭୀରମାନଙ୍କ ଖାଦ୍ୟ ପାଇଁ ଚିଙ୍ଗୁଡ଼ି ଓ ଭେକ୍ଟିମାଛ ଚାଷ ମଧ୍ୟ କରାଯାଉଛି । ଏମାନଙ୍କର ଖାଦ୍ୟ ପାଇଁ ବର୍ଷକୁ ବେଶ୍ ଖର୍ଚ୍ଚ ହୁଏ ।

## କୁମ୍ଭୀର ଚାଷ ଓ ଭାରତ

କୁମ୍ଭୀର ଚାଷ ସମ୍ପର୍କରେ ଯଦିଓ ପାପୁଆ ନିଉଗିନି ଏବଂ ଥାଇଲାଣ୍ଡର ବ୍ୟାଙ୍କକ୍‌ଠାରେ କୁମ୍ଭୀର ଚାଷ କରାଯାଇ କୋଟି କୋଟି ଟଙ୍କାର ବୈଦେଶିକ ମୁଦ୍ରା ଅର୍ଜନ କରାଯାଉଛି, ତଥାପି ଭାରତରେ ଏହା ଏ ପର୍ଯ୍ୟନ୍ତ ସମ୍ଭବ ନୁହେଁ । ପାପୁଆ ନିଉଗିନିରେ ପ୍ରାୟ ଅଧିକସଂଖ୍ୟକ ଜଳ ଏବଂ ଲୁଣାଜଳ କୁମ୍ଭୀର ଅଛନ୍ତି । ବ୍ୟାଙ୍କକ୍‌ରେ ୟାଙ୍ଗ୍‌ପ୍ରାପାକମ ବୋଲି ଜଣେ ଚୀନ୍ ସ୍ଥାୟୀ ଲୋକ ପ୍ରାୟ ତିନିଶହ ହଜାର କୁମ୍ଭୀର ପାଳିଛନ୍ତି ଏବଂ ସେଥିରୁ ତାଙ୍କର ବାର୍ଷିକ ଆୟ ହେଲା ପ୍ରାୟ ଦେଢ଼ନିୟୁତ ଡଲାର । ଦେଖାଯାଉଛି ଯେ, ପାଞ୍ଚହଜାର କୁମ୍ଭୀର ନ ପାଳିଲେ ଏହା ଏକ ଲାଭଜନକ ବ୍ୟବସାୟ ହେବ ନାହିଁ । ସାଧାରଣତଃ କୁମ୍ଭୀର ଚମଡ଼ାର ସୁଟ୍‌କେଶ, ମନିବ୍ୟାଗ, ମହିଳାଙ୍କ ବ୍ୟାଗ ଆଦି ଆମେରିକା ଏବଂ ୟୁରୋପରେ ଖୁବ୍ ଆଦୃତ । ଏହା ବେଶ୍ ମୂଲ୍ୟବାନ ମଧ୍ୟ । ବ୍ୟାଙ୍କକ୍‌ରେ ଗୋଟିଏ ମହିଳା ବ୍ୟାଗର ମୂଲ୍ୟ ୬ହଜାର ଟଙ୍କା ବୋଲି ସେ କହିଥିଲେ ।

## କୁମ୍ଭୀର ପାଳନ ଓ ପରିବେଶ

ଭିତରକନିକା ଅଞ୍ଚଳରେ କୁମ୍ଭୀର ପାଳନ କରାଯିବାରୁ ପାର୍ଶ୍ୱବର୍ତ୍ତୀ ଜନବସତିରେ ଏହାର କି ପ୍ରଭାବ ପଡୁଛି ବୋଲି ପ୍ରଶ୍ନ ହେବାରୁ ଡି.ଏଫ. ଓ. ଙ୍କ ମତରେ ୧୯୭୫ ମସିହାରୁ କେବଳ ମାତ୍ର ଦୁଇଟି ସ୍ତ୍ରୀ ଏବଂ ଗୋଟିଏ ପୁରୁଷକୁ ଏହି ବଉଳା କୁମ୍ଭୀର ମାରିଥିବାର ଜଣାଯାଇଛି । ଏହି ସମୟ ମଧ୍ୟରେ କୁମ୍ଭୀର ୧୩ ଟି ଛେଳିମେଣ୍ଢା, ଗୋରୁଗାଈ ଖାଇଥିବାର ଜଣାଯାଇଛି । ୧୯୮୨ ଅଗଷ୍ଟ ମାସରେ ଭିତରକନିକା ନଦୀ ସହିତ ସଂଯୋଜିତ ହୋଇଥିବା ବ୍ରାହ୍ମଣୀ ନଦୀର ଶାଖା ପାଠଶାଳା କୂଳରେ ଥିବା ପଟାବାରିଆ ଗ୍ରାମର ସୁଧାଂଶୁ ଶେଖର ଭୂୟାଁଙ୍କର ୨୨ ବର୍ଷ ବୋହୂଙ୍କୁ କୁମ୍ଭୀର ନେଇ ଯାଇଥିଲା । ଏହା ବ୍ୟତୀତ ରାଜନଗର ବ୍ଲକର ମହୀଶପଡ଼ା ଗ୍ରାମର ଜଣେ ଲୋକ ତା ପୋଖରୀରୁ ମାଛ ମାରିବା ବେଳେ ତାକୁ କୁମ୍ଭୀର ଟାଣିନେଇ ଆହତ କରିଥିଲା । କାରଣ ଏହି ପୋଖରୀ ସହିତ ଗୋଟିଏ ନାଳର ସଂଯୋଗ ରହିଥିଲା । ବର୍ତ୍ତମାନ ଜନବସତି ଅଞ୍ଚଳରେ ଯେପରି କୁମ୍ଭୀର ସହଜରେ ଆକ୍ରମଣ କରି ନ ପାରିବ, ଏହି ସବୁ ଗ୍ରାମକୁ ସଂଯୋଗ କରୁଥିବା ନାଳଗୁଡ଼ିକରେ " ଗୁଆ" ଗଛର ବାଡ଼ ଜଙ୍ଗଲ ବିଭାଗ ପକ୍ଷରୁ ଦିଆଯାଉଛି । ଫଳରେ କୁମ୍ଭୀର ଆକ୍ରମଣର ଆଉ ଭୟ ରହିବ ନାହିଁ ।

ଏହି ଲୁଣା ଜଙ୍ଗଲରେ ବିଭିନ୍ନ କିସମର ପକ୍ଷୀ ଯଥା- ପାଣି ହେରନ, ବିଭିନ୍ନ ଜାତୀୟ ବଗ, ଡାହୁକ, ମାଛରଙ୍କା ଓ ମାଛରଙ୍କା ପକ୍ଷୀ ଦେଖାଯାଆନ୍ତି । ଏହାବ୍ୟତୀତ

ଏ ଜଙ୍ଗଲରେ ବିଭିନ୍ନ ଧରଣର ସାପ, ଅଜଗର ଓ ନାଗସାପ ବହୁସଂଖ୍ୟାରେ ଦେଖାଯାଆନ୍ତି । ଏପରିକି ଗଛ ଉପରେ ମଧ୍ୟ ଏହି ନାଗସାପଗୁଡ଼ିକ ଥିବାର ଦେଖାଯାଏ । ବହୁ ସଂଖ୍ୟାରେ ହରିଣ ମଧ୍ୟ ଏହି ଜଙ୍ଗଲରେ ଅଛନ୍ତି ।

ଏ ଜଙ୍ଗଲରେ ଥିବା ଗଛଗୁଡ଼ିକର ନାମ ହେଲା କେରୁଆଁ, ବନି, ସୁନ୍ଦରୀ, ହେନ୍ତାଳ ଓ ପିତାମାରି । ଏହି ଗଛଗୁଡ଼ିକ ବିଭିନ୍ନ କାର୍ଯ୍ୟରେ ଲାଗିଥାଏ । ହେନ୍ତାଳ ଗଛର ଡାଳରେ ଘର ଛପର କରାଯାଇ କେରୁଆଁ ଗଛଗଣ୍ଡିରୁ ଡଙ୍ଗା ତିଆରି ହୁଏ ଏବଂ ବନିଗଛର ପତ୍ର ଗୋଖାଦ୍ୟ ରୂପେ ବ୍ୟବହୃତ ହୁଏ ।

ଭିତରକନିକା ଅଞ୍ଚଳକୁ ଏକ ପର୍ଯ୍ୟଟନ କେନ୍ଦ୍ରରେ ପରିଣତ କରିବା ସମ୍ପର୍କରେ ପ୍ରଶ୍ନ ହେବାରୁ ଜଙ୍ଗଲ ବିଭାଗର ଅଫିସରମାନେ କହନ୍ତି ଯେ, ଏ ଅଞ୍ଚଳରେ ପ୍ରାକୃତିକ ଜୀବଜନ୍ତୁ ଏବଂ ଜଙ୍ଗଲ ସମ୍ପଦର ସୁରକ୍ଷା ନିମନ୍ତେ ବର୍ତ୍ତମାନ ଅବସ୍ଥାରେ ଏହାକୁ ପର୍ଯ୍ୟଟନ କେନ୍ଦ୍ର ରୂପେ ପରିଣତ କରିବା ଉଚିତ ହେବ ନାହିଁ । ତେବେ ଯେଉଁମାନେ ଏ ଅଞ୍ଚଳର ଜୀବଜଗତ ଏବଂ ଜଙ୍ଗଲ ସମ୍ପର୍କରେ ଅନୁଧ୍ୟାନ କରିବାକୁ ଆଗ୍ରହୀ, ସେମାନଙ୍କୁ ସୁବିଧା ଦିଆଯିବା ଆବଶ୍ୟକ ।




**କୁମ୍ଭୀର ଗବେଷଣା ଓ ଓଡ଼ିଶା**

ପୃଥିବୀରେ ଧଳା କୁମ୍ଭୀରକୁ ଓଡ଼ିଆରେ 'ଶଙ୍ଖୁଆ' ବୋଲି କୁହାଯାଏ । ପୃଥିବୀର ସମସ୍ତ ତିନି ଶ୍ରେଣୀର କୁମ୍ଭୀର, ଯଥା- ଘଡ଼ିଆଳ, ମଗର ଏବଂ ଲୁଣିପାଣି କୁମ୍ଭୀର ନନ୍ଦନକାନନରେ ରଖାଗଲାଣି । ଏମାନଙ୍କ ମଧ୍ୟରୁ ପ୍ରଥମ ଦୁଇ ଶ୍ରେଣୀର କୁମ୍ଭୀର ନନ୍ଦନକାନନ ମଧ୍ୟରେ ଛୁଆ ଜନ୍ମ କରିଛନ୍ତି । ପୃଥିବୀରେ ଘଡ଼ିଆଳ ଶ୍ରେଣୀ କୁମ୍ଭୀରର ଛୁଆ ଜନ୍ମ କରିବା ପାଇଁ ନନ୍ଦନକାନନ ସର୍ବପ୍ରଥମ ଚିଡ଼ିଆଖାନା । ଜର୍ମାନୀର ଫ୍ରେଙ୍କଫର୍ଟ ଚିଡ଼ିଆଖାନା ଗୋଟିଏ ପୁରୁଷ ଘଡ଼ିଆଳ କୁମ୍ଭୀର ଋଣ ଆକାରରେ ନନ୍ଦନକାନନକୁ ଯୋଗାଇଥିବାରୁ ଏହା ସମ୍ଭବ ହୋଇପାରିଲା ।



# ଆମ ଜାତୀୟ ପଶୁ ବାଘ

'ଜଙ୍ଗଲ୍ ଜଙ୍ଗଲ୍ ପତା ଚଲା ହେ' - ଜଙ୍ଗଲ ବୁକ୍ ସିରିଏଲ୍‌ର ଟିଭିରେ ଏକ ପଦ । ସାନ ପିଲାଙ୍କର କି ଆଗ୍ରହ ଏ ସିରିଏଲ୍ ଦେଖିବାକୁ । ବାଘ ଭାରତର ଜାତୀୟ ପଶୁ । ରୁଡ୍‌ୟାର୍ଡ୍ କିପ୍‌ଲିଙ୍ଗ୍ (Rudyard Kipling) ଲେଖିଥିବା ଜଙ୍ଗଲ୍ ବୁକ୍ (Jungle Book) ଗପ ପିଲାମାନଙ୍କର ଅତି ପ୍ରିୟ । ଅନେକ ବି ଜିମ୍ କରବେଟ୍ (Jim Corbett) ଙ୍କ ରଚିତ ବାଘ ସମ୍ପର୍କରେ ଏକ ପୁସ୍ତକ (The Man Eaters of Kumaon) ପଢ଼ିଥିବେ । ବାଘର ଭୟଙ୍କର ରୂପକୁ ଦେଖି ଉଇଲିୟମ୍ ବ୍ଲେକ୍ (William Blake) ଲେଖିଥିଲେ-

"Tiger, tiger burning bright
In the forest of the night
What immortal hand or eye
Could frame thy
fearful symmetry."



ବାଘ

## ବର୍ଣ୍ଣିତ ତଥ୍ୟ

ଭାରତୀୟ ପୁରାଣରେ ବାଘର ସ୍ଥାନ ବି. କିଛି କମ୍ ନୁହେଁ । ମହାଦେବ ସର୍ବଦା ବାଘଛାଲ ପରିଧାନ କରି ତପସ୍ୟାରତ ଥିବାର ଛବିରେ ଦେଖାଯାଏ । ଚୀନ୍‌ଦେଶର ପୁରାଣରେ ବର୍ଣ୍ଣିତ ଅଛି ଯେ ବାଘ ଅତୃପ୍ତ ଆତ୍ମା (Evil spirit) ର ବିନାଶକାରୀ । ପିଲାଦିନେ ସମସ୍ତେ ବାଘ ଦେଖିଥାନ୍ତୁ ବା ନ ଦେଖିଥାନ୍ତୁ, ବାଘ ବିଷୟରେ ଶୁଣିଥାନ୍ତି ଅନେକ କାହାଣୀ । ଖାଇବାବେଳେ ବାଘମାମୁ କଥା ଶୁଣାଇ ମାଆମାନେ ପିଲାମାନଙ୍କୁ ଖୁଆଇଥାନ୍ତି । ଏମିତି ଗପ ଶୁଣି

ଶୁଣି ପିଲାମାନଙ୍କର ମନରେ ବାଘପ୍ରତି ଏକ ଭୟ ସୃଷ୍ଟି ହୋଇଥାଏ । ସତରେ ଅନେକ କାହାଣୀ, ଲୋକକଥା ଓ ବିଶ୍ୱାସ ରହିଛି ବାଘ ବିଷୟରେ । ବାଘକୁ ହିନ୍ଦୀରେ ବାଘ, ଶେର୍, ମଧ୍ୟଭାରତରେ ନାହାର୍, ସେଲାବାଘ, ମରାଠୀରେ ଓ୍ୟାଘ, ତାମିଲ୍ ଓ ତେଲୁଗୁରେ ପଲି, ମାଲାୟାଲାମ୍‌ରେ କଡ଼ୁଓ୍ୱା, କାନାରୀରେ ହୁଲି ଓ ଓଡ଼ିଆରେ ବାଘ ବା ବ୍ୟାଘ୍ର ବୋଲି କୁହାଯାଏ । ବୈଜ୍ଞାନିକ ଭାଷାରେ ଏହାର ନାମ ପାନ୍ଥେରା ଟାଇଗ୍ରିସ୍ *(Panthera tigris)* ।

ଭାରତ ସରକାର ବିଶ୍ୱ ବନ୍ୟପ୍ରାଣୀ ପାଣ୍ଠି (Worldwide Fund ବା WWF) ଯାହାକି ବର୍ତ୍ତମାନ ବିଶ୍ୱପାଣ୍ଠି ନାମରେ ନାମିତ, ତାହା ସହଯୋଗରେ ବ୍ୟାଘ୍ରଯୋଜନା (Project Tiger) ଆରମ୍ଭ କରିଥିଲେ ୧୯୭୨ ମସିହାରେ । ସେହି ସମୟ ୧୯୭୨ ରୁ ବାଘ ହିଁ 'ଭାରତର ଜାତୀୟ ପଶୁ' (National Animal) ଭାବରେ ପରିଗଣିତ ହୋଇ ଆସୁଛି ।

## ବାଘର ସ୍ଥାନ

କଥାରେ କହନ୍ତି – 'ବାଘ ନ ଦେଖିଲେ ବିରାଡ଼ି ଦେଖ' । ଆମ ଭାରତରେ ବିଲେଇକୁ ବାଘର ମାଉସୀ ବୋଲି କହନ୍ତି । ଏ ଉକ୍ତିଟି କିନ୍ତୁ ପୂରାପୂରି ଠିକ୍ । ବାଘ, ସିଂହ, କଲରାପତରିଆ ବାଘ (Panther ବା Leopard), ବାଘେଟା (Leopard cat), ବଣ ବିରାଡ଼ି (କଟାଶ ବା ବଣଭୁଆ ) ଓ ବିରାଡ଼ି (cat) ଆଦି ସମସ୍ତେ ଗୋଟିଏ ଶ୍ରେଣୀର ପ୍ରାଣୀ । ଏ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ବିରାଡ଼ି ସାନ ଓ ବାଘ ବଡ଼ । ଦେଖିବାକୁ କିନ୍ତୁ ଏକାପରି । ସେଥିପାଇଁ 'ବାଘ ନ ଦେଖିଲେ ବିରାଡ଼ି ଦେଖ' ବୋଲି ଉକ୍ତିଟି ରହିଛି । ଏ ସମସ୍ତ ପ୍ରାଣୀ ମାଂସାଶୀ ବର୍ଗର (Order-Carnivora) ଓ ବିଲେଇ ପରିବାରର ଅନ୍ତର୍ଭୁକ୍ତ । ଏହି ପ୍ରାଣୀମାନଙ୍କୁ ବାଦ୍ ଦେଲେ କୁକୁର, ଭାଲୁ, ବିଲୁଆ, ନେଉଳ , ଶାଳିଆପତନି, ଗଧିଆ, ସିଲ୍, ସମୁଦ୍ରସିଂହ ଓ ସମୁଦ୍ରର ଆଉ ଏକ ସ୍ତନ୍ୟପାୟୀ ଓ୍ୱାଲରସ୍ ଆଦି ପ୍ରାଣୀ ବି ମାଂସାଶୀ ବର୍ଗର ।

## ବାଘର ବିସ୍ତୃତି

କଥିତ ଅଛି ବାଘର ମୂଳ ଜନ୍ମସ୍ଥାନ ହେଲା ଉତ୍ତର ରୁଷିଆ । ସେଠାରୁ ସେ ପୂର୍ବ ଦିଗକୁ ଅର୍ଥାତ୍ କୋରିଆ, ଚୀନ୍, ବର୍ମା, ଥାଇଲାଣ୍ଡ, ଭିଏତ୍‌ନାମ୍, ମାଳୟ, ଜାଭା, ସୁମାତ୍ରା ଓ ବାଲି ଦ୍ୱୀପକୁ ସମୟାନୁକ୍ରମେ ଆସିଲା । ବାଘ ଭାରତକୁ ଆସିଲା ବର୍ମାଆଡୁ । ଧୀରେ ଧୀରେ ଆସାମ, ବଙ୍ଗଦେଶ ଓ ହିମାଳୟର ପାଦଦେଶରେ ପାର୍ବତ୍ୟ ଇଲାକାରେ, ମଧ୍ୟଭାରତ ଓ ଦକ୍ଷିଣଭାରତରେ ଆସ୍ଥାନ କରାଇନେଲା । ତେବେ ଯାହା

ହେଉନା କାହିଁକି ଏସିଆ ମହାଦେଶ ବାଘର ଜନ୍ମସ୍ଥାନ । ସାଇବେରିଆଠାରୁ ଭାରତ ଦେଇ ଚୀନ୍ ଓ ଦକ୍ଷିଣପୂର୍ବ ଏସିଆ ଅଞ୍ଚଳରେ ବିଭିନ୍ନ ଜଙ୍ଗଲ, କ୍ରାନ୍ତିମଣ୍ଡଳୀୟ ବୃଷ୍ଟିଜଙ୍ଗଲ, ତରାଇ ଜଙ୍ଗଲ, ପାହାଡ଼ିଆ ସ୍ଥାନ ଓ ତୃଣଭୂମି ଆଦି ଅଞ୍ଚଳରେ ବାଘ ରୁହେ ।

## ବାଘର ପ୍ରକାରଭେଦ

ଭୌଗୋଳିକ ପରିସ୍ଥିତି ନେଇ ବାଘର ମୁଖ୍ୟ ଜାତି ହେଉଛି ଚାରି ପ୍ରକାର : (୧) ମାଞ୍ଚୁରୀୟ - କୋରିଆ ବାଘ, (୨) କାସ୍ପିୟାନ୍ ସାଗର ଜାତୀୟ ବାଘ, (୩) ଜାଭା - ସୁମାତ୍ରା ବାଘ ଓ (୪) ଭାରତୀୟ ବାଘ ।

## ମାଞ୍ଚୁରୀୟ

କୋରିଆ ବାଘ ସବୁଠାରୁ ବଡ଼ ଓ ଅଧିକ ବଳବାନ୍ । ଏହାର ଚର୍ମ ମୋଟା ଓ ପଟା ଦାଗଗୁଡ଼ିକ ଖୁବ୍ ଫିକା । କାସ୍ପିୟାନ୍ ସାଗର ଜାତୀୟ ବାଘ କାସ୍ପିୟାନ୍ ସାଗର ନିକଟବର୍ତ୍ତୀ ସ୍ଥାନ, କକେସସ୍ ପର୍ବତ ଓ ଉତ୍ତର ଇରାନ୍‌ରେ ଦେଖାଯାଏ । ଏମାନଙ୍କର ଲୋମ ଛୋଟ ଛୋଟ ଓ ଖୁବ୍ ଘଞ୍ଚ । ଭାରତୀୟ ବାଘ ସହ ଏମାନଙ୍କର ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଜାଭା - ସୁମାତ୍ରା ଜାତୀୟ ବାଘର ବିସ୍ତୃତି ହେଉଛି ଜାଭା-ସୁମାତ୍ରା, ବାଲି ଓ ଅନ୍ୟାନ୍ୟ ଇଣ୍ଡୋନେସୀୟ ଦ୍ୱୀପ । ଭାରତୀୟ ବାଘର ଆକାରଠାରୁ ଏମାନେ ଛୋଟ । ମୁହଁ ଅନ୍ୟ ବାଘ ତୁଳନାରେ ଧଳା ଓ ବର୍ଣ୍ଣ ଅଧିକ ଧଳା ଓ ଅଧିକ ଉଜ୍ଜ୍ୱଳ । ଭାରତୀୟ ବାଘକୁ ରୟାଲ ବେଙ୍ଗଲ ବାଘ (Royal Bengal Tiger) ବୋଲି କୁହାଯାଏ । ତା'ର କାରଣ ଇଷ୍ଟ ଇଣ୍ଡିଆ କମ୍ପାନୀ (East India Company) ର ଗୋରା ଶିକାରୀଗଣ ପ୍ରଥମେ ବଙ୍ଗପ୍ରଦେଶରେ ଏହି ବାଘକୁ ଦେଖିଥିଲେ । ସେହିଦିନଠାରୁ ଭାରତୀୟ ବାଘର ନାମକରଣ ଏପରି ହୋଇଛି ।

ଏହି ବିସ୍ତୃତିରୁ ଜଣାପଡ଼େ ଯେ ବାଘ ମାଞ୍ଚୁରିୟାର ଖୁବ୍ ଶୀତ, ମଧ୍ୟଭାରତର ଟାଣ ଖରା, ହିମାଳୟ ପାଦଦେଶରେ ପାର୍ବତ୍ୟ ଅଞ୍ଚଳର ଗୁଳୁଗୁଳି, ଆସାମ ଓ କେରଳ ପରି ସ୍ଥାନର ପ୍ରବଳ ବର୍ଷା ମଧ୍ୟରେ ରହିପାରେ । ଉତ୍ତର ଅଞ୍ଚଳରେ ବରଫ, ତରାଇରେ ସନ୍ତସନ୍ତିଆ ଭୂମି, ସୁନ୍ଦରବନର ଲୁଣି ଜଳବାୟୁ ଓ ଆସାମର ନାହିଁ ନ ଥିବା ବୃଷ୍ଟିପାତ ଜଙ୍ଗଲ ଆଦି ସବୁ ପ୍ରକାର ଭୌଗୋଳିକ ପରିସ୍ଥିତିରେ ସେ ରହିପାରେ ।

## ବାଘର ଶରୀର ଗଠନ

ବାଘ ଏକ ଓଜନିଆ ଓ ବଡ଼ ପ୍ରାଣୀ । ପୁରୁଷ ବାଘ ମୁଣ୍ଡଠାରୁ ଲାଞ୍ଜ ପର୍ଯ୍ୟନ୍ତ

୨.୭ ମିଟରରୁ ୩ ମିଟର ଓ ବାଘୁଣୀ ୨.୪ ମିଟରରୁ ୨.୮ ମିଟର । ବାଘଠାରୁ ବାଘୁଣୀ ପ୍ରାୟ ୧/୩ ମିଟର ଲମ୍ବରେ ଛୋଟ । କାନ୍ଧ ପର୍ଯ୍ୟନ୍ତ ବାଘର ଉଚ୍ଚତା ପ୍ରାୟ ଏକ ମିଟର । ପୁରୁଷ ବାଘର ଓଜନ ୧୮୦ ରୁ ୨୬୦ କିଲୋଗ୍ରାମ୍ ଓ ବାଘୁଣୀର ଓଜନ ୧୦୦ କିଲୋଗ୍ରାମ୍ ରୁ ୧୫୦ କିଲୋଗ୍ରାମ୍ ।

## ବାଘର ଶିକାର ପ୍ରଣାଳୀ

ବାଘ ରାତ୍ରିଚର । ସୂର୍ଯ୍ୟାସ୍ତ ଓ ସୂର୍ଯ୍ୟୋଦୟ ମଧ୍ୟବର୍ତ୍ତୀ କାଳରେ ବାଘ ଶିକାରରେ ବାହାରେ । ଅବଶ୍ୟ ଶୀତ ବା ବର୍ଷା ସମୟରେ ଦିନରେ ବାହାରିଥାଏ । ସକାଳଠାରୁ ମଧ୍ୟାହ୍ନ ବେଳ ତା'ର ବିଶ୍ରାମ ସମୟ । ଏହା ଏକୁଟିଆ ଶିକାର କରିବାକୁ ବାହାରେ । ତା' ଶିକାରର ଗୋଟିଏ ନିର୍ଦ୍ଦିଷ୍ଟ ସମୟ ରହିଛି । ଭୋକ ହେଲେ ଯାଇ ସେ ଶିକାର କରେ । ସେ ସାଧାରଣତଃ ମାସକୁ ତିନି ବା ଚାରିଥର ଖାଏ । ଶିକାର ଦେଖିଲେ ପଛରୁ ଧୀରେ ଧୀରେ ଛପି ଛପି ଆସି ଶିକାର ଜୀବ ଉପରକୁ ଖୁବ୍ ଜୋରରେ କୁଦା ମାରେ । ବେକକୁ କାମୁଡ଼ି ତଳ ଆଡ଼କୁ ମୋଡ଼ି ଭାଙ୍ଗି ଦିଏ । ବାଘ ତାକୁ ଓଟାରି ଏକ ନିଭୃତ ସ୍ଥାନକୁ ନେଇଯାଏ । ପ୍ରଥମେ ଜନ୍ତୁର ପଛଆଡୁ ଖାଇବା ଆରମ୍ଭ କରେ । ତାର ଜଙ୍ଘ ଓ ତଳିପେଟ ପାଖରୁ ନେଇ ଲୋମ,ଚମଡ଼ା, ହାଡ଼ ଓ ମାଂସ ଆଦି ଖାଏ । ଖାଲି ଅନ୍ତନଳୀ ଛାଡ଼ିଦିଏ ଓ ଭଲ କରି ବାହାର କରି ରଖେ । ସେ ଯେତେ ସୁନ୍ଦର କରି ପରିଷ୍କାର କରି ଖାଏ ଆଉ କୌଣସି ଜନ୍ତୁ ସେମିତି ପରିଷ୍କାର କରି ଖାଆନ୍ତି ନାହିଁ । ମାରିଥିବା ଜୀବକୁ ଖାଇଲା ପରେ ସେ ପାଣି ପିଏ । କିଛି ସମୟ ବିଶ୍ରାମ ନେଇ ନିଜ ଦେହକୁ ଚାଟେ । ବୁଲାଚଲା କରେ ଓ ତା' ପରେ ପୁଣି ଖାଇବା ଆରମ୍ଭ କରେ ।

୨୦ ରୁ ୩୫ କିଲୋଗ୍ରାମ୍ ମାଂସ ତା'ର ଥରକେ ଆହାର । ପେଟ ପୂର୍ଣ୍ଣକରି ଖାଇବା ପରେ ବାକି ଅଂଶ ଲୁଚାଇ ଦିଏ । ବଡ଼ ଜନ୍ତୁ ଶିକାର କରିଥିଲେ ୩-୪ ଦିନ ମଧ୍ୟରେ ଖାଇ ଶେଷ କରେ । ପ୍ରତିଥର ଖାଇବା ପରେ ପରେ ତା'ର ସ୍ଥାନ ପରିବର୍ତ୍ତନ କରେ । ବାଘ ସଂପୂର୍ଣ୍ଣ ମାଂସାହାରୀ । ଯେକୌଣସି ପ୍ରାଣୀର ମାଂସ ଯେକୌଣସି ଅବସ୍ଥାରେ ସେ ଖାଇପାରେ । ବେଳେ ବେଳେ ସେ ଶାଗୁଆ ଘାସ ଖାଇବାର ଦେଖାଯାଏ । ଏହା ଖୁବ୍ କ୍ବଚିତ୍ । ବାଘ ଯେ ନିଜେ ମାରିଥିବା ଜନ୍ତୁର ମାଂସ ଖାଏ ତାହା ନୁହେଁ, ଏହା ଭୁଲ୍ ଧାରଣା । ଯିଏ ମାରିଥାଉ ସେ କିନ୍ତୁ ତାକୁ ଖାଏ । ଖାଇବା ବେଳ ହେଲେ ସବୁ ପ୍ରାଣୀ ତା ପାଇଁ ଭଲ ଖାଦ୍ୟ । ସେ କିନ୍ତୁ ଏତିକିବେଳେ ବଣୁଆ କୁକୁର, ବିଲୁଆ ଓ ବନ୍ଧୁକକୁ ଡରିଥାଏ । କାରଣ ଏମାନେ ହଇରାଣ କରନ୍ତି । ତେଣୁ ଆଈମା ପିଲାମାନଙ୍କୁ ଗପ କହିବାବେଳେ କହନ୍ତି 'ବାଘ ଶିକାରରେ ବାହାରିବା ଆଗରୁ

ବଣଦେବତାଙ୍କୁ ନମସ୍କାର କରି କହେ ଯେ, ତା' ଆଗରେ ଯେପରି ବଳିଆ କୁକୁର କି ବନ୍ଧୁକ ପଡ଼ିବେନି' ଅର୍ଥାତ୍ ଏ ଦୁଇଟି ବାଘର ଶତ୍ରୁ । ବାଘ ପଛରେ ଏକୁଟିଆ ବିଲୁଆ ବିନା ପରିଶ୍ରମରେ ଖାଇବା ଉଦ୍ଦେଶ୍ୟରେ ଗୋଡ଼ାଇଥାଏ । ବାଘ ଆଉ ଗୋଟିଏ ବାଘକୁ ବି ଖାଇପାରେ । କାରଣ ବାଘ ତା' ଛୁଆକୁ ଖାଇଦିଏ ବୋଲି ବାଘୁଣୀ ଛୁଆକୁ ବାଘଠାରୁ ଦୂରେଇ ରଖିଥାଏ । ଏହାର ପ୍ରଧାନ ଆହାର ହେଉଛି ହରିଣ, ମୃଗ, ସମ୍ବର, ନୀଳଗାଇ, ଭାଲୁ ଓ ବଣ ଘୁଷୁରୀ । ତା' ଛଡ଼ା ଛୁଆ ହାତୀ, ଗୟଳ ଓ ବଣମଣିଷ ଆଦି ବଡ଼ ବଡ଼ ପ୍ରାଣୀଗୁଡ଼ିକ ମଧ୍ୟ ସେ ଶିକାର କରି ଖାଇପାରେ । ଖୁବ୍ ଭୋକରେ ସେ କୁକୁଡ଼ା, ମାଛ, ସରୀସୃପ ଏପରିକି ପଚା ମାଂସ ଆଦି ମଧ୍ୟ ଖାଇପାରେ ।

ଜଙ୍ଗଲରେ ଶିକାର ଅଭାବ ହେଲେ ଜନବସତି ଆଡ଼କୁ ସେ ଚାଲିଯାଏ ଓ ଗୃହପାଳିତ ପଶୁ ମାରି ଖାଏ । ବୁଢ଼ା ବା ଦୁର୍ବଳ ଅଥବା ଗୁଳିମାଡ଼ରେ ଆଘାତ ହୋଇ ଘାଇଲା ହେଲେ ବାଘକୁ ସାଧାରଣ ଶିକାର ଧରିବାରେ ଅସୁବିଧା ହୁଏ । ସେ ଖାଦ୍ୟ ଅଭ୍ୟାସ ବଦଳାଇ ଥାଏ । ଏହି କାରଣରୁ ବାଘ ମଣିଷଖିଆ ବାଘ ହୋଇଥାଏ । ସେ ପ୍ରଥମରୁ ମଣିଷଖିଆ ନ ଥାଏ ବା ମଣିଷଖିଆ ବାଘ ସେମିତି ଅଲଗା ପ୍ରକାର ନ ଥାଏ । ଏମାନଙ୍କର ସଂଖ୍ୟା ଖୁବ୍ କମ୍ । ବାଘ ହିଁ ନିଆଁ ଓ ଆଲୋକକୁ ଡରିଥାଏ । ମାତ୍ର ମଣିଷ ଶିକାର ଉଦ୍ଦେଶ୍ୟରେ ସେ ଏହାକୁ ନ ଡରି ଶିକାରରେ ଆଗେଇ ଆସେ । ବିପଦର ଆଶଙ୍କା ପାଇଲେ ବା କିଛି ଟିକିଏ ଶବ୍ଦ ହେଲେ ଶିକାର ତା' ପାଖରେ ଥିଲେ ବି ଛାଡ଼ି ଚାଲିଯାଏ । ବାସ୍ତବିକ୍ ଭୋକରେ ରହିଯାଏ, ମାତ୍ର ସେ ସାମାନ୍ୟ ବିପଦଠାରୁ ଦୂରେଇ ଯାଏ ।

## ବାଘର ଶରୀରର ବର୍ଣ୍ଣ



ବାଘ ଦେହର ବର୍ଣ୍ଣ ଅତି ଚମତ୍କାର ଓ ଭୟଙ୍କର । ହଳଦିଆ ସୁନେଲି ରଙ୍ଗ ମଧ୍ୟରେ କଳା କଳା ପଟା ଦାଗ ମେରୁଦଣ୍ଡଠାରୁ ପେଟ ଆଡ଼କୁ ଦୁଇପଟେ ରହିଥାଏ । ପଟାଦାଗ ଗାଢ଼କଳାଠାରୁ ମାଟିଆ ରଙ୍ଗର ହୋଇଥାଏ । ବୟସ ଅଧିକ

ହେଲେ ପଟାଦାଗ ଗୁଡ଼ିକ କ୍ରମେ ଫିକା ଓ ଛଡ଼ା ଛଡ଼ା ହୋଇଯାଏ । ଛୁଆ ବାଘର ଚମଡ଼ାଟି ବାଲି ବର୍ଣ୍ଣର ଓ ଲୋମଗୁଡ଼ିକ ଠିଆ ହେବାପରି ରହିଥାଏ । ବୟସ ଅଧିକ ହେଲେ ବର୍ଣ୍ଣଟି ଗାଢ଼ ହୋଇଯାଏ । ବାଘୁଣୀର ବର୍ଣ୍ଣ ବାଘଠାରୁ ଅଧିକ ସଫା । ଶୀତଦିନେ ବର୍ଣ୍ଣ ଉଜ୍ଜ୍ୱଳତର ହୋଇଥାଏ । ଗ୍ରୀଷ୍ମଦିନେ ଲୋମ ଝଡ଼ିଯାଏ ଓ ପଟା ଦାଗ ଭଲଭାବେ ଦେଖାଯାଏ ନାହିଁ । ବାଘନିଶ ବିରାଡ଼ି ନିଶ ପରି ଟାଆଁଶ ଓ ଧଳା ଧଳା । କାନଦୁଇଟି ପଛ ଆଡୁ କଳା, କେବଳ ମଝିରେ ଧଳା ଦାଗଟିଏ ଥାଏ । ଦେହର ଏ ବିଚିତ୍ର ଦାଗ ଆତ୍ମରକ୍ଷା ପାଇଁ ତାକୁ ସାହାଯ୍ୟ କରିଥାଏ । ଖରାଦିନେ ଶୁଖିଲା ପତ୍ରର ହଳଦିଆ ରଙ୍ଗସହ ଥୁଣ୍ଟାବୁଦାର ରଙ୍ଗ ଏପରି ମିଶିଯାଏ ଯେ ସେ ଜନ୍ତୁକୁ ଖୋଜି ପାଇବା କଷ୍ଟ ହୋଇଥାଏ । ଏସବୁ ସାଧାରଣ ବର୍ଣ୍ଣ ବାଘ ବ୍ୟତୀତ ଧଳା ବାଘ ଆଉ ଏକ ବିଶେଷ ଆକର୍ଷଣ । ସମସ୍ତେ ଏ ବାଘ ଦେଖିବାକୁ ଖୁବ୍ ଆଗ୍ରହୀ ।

## ସାଧାରଣ ବାଘର ବ୍ୟତିକ୍ରମ : ଧଳା ବାଘ

ଧଳା ବାଘ ପ୍ରଥମେ ୧୯୫୧ ମସିହାରେ ମଧ୍ୟପ୍ରଦେଶର ରେଓ୍ୱା ଜଙ୍ଗଲରୁ ମିଳିଥିବାର ଜଣାଯାଏ । ତେବେ ସମ୍ରାଟ ଆକବରଙ୍କ ରାଜଦରବାରରେ ଥିବା ଆବୁଲ ଫାଜଲ୍ ତାଙ୍କ ସମୟରେ ଦୁଇଟି ଧଳା ବାଘ ସମ୍ପର୍କରେ ମଧ୍ୟ ବିବରଣୀ ପ୍ରଦାନ କରନ୍ତି । ରେଓ୍ୱାର ପ୍ରଥମେ 'ମୋହନ' ନାମକ ନଅ ମାସର ଧଳା ବାଘ ଧରାହୋଇ ଚିଡ଼ିଆଖାନାରେ ଛୁଆ ଜନ୍ମ କରିଥିବାର ଜଣାଯାଏ । ଅନ୍ୟ ଯେତେ ସବୁ ଧଳାବାଘ ସୃଷ୍ଟି ହୋଇଛନ୍ତି, ସେମାନେ ସମସ୍ତେ ମୋହନର ଅବଦାନ । ୧୯୬୦ ମସିହାରେ ଓ୍ୱାସିଂଟନ୍‌ର ଜାତୀୟ ପ୍ରାଣୀ ଉଦ୍ୟାନ (National Zoological Park) ରେଓ୍ୱା ମହାରାଜଙ୍କଠାରୁ ୧୦,୦୦୦ ଆମେରିକୀୟ ଡଲାରରେ ଗୋଟିଏ ଧଳାବାଘ କିଣି ନେଇଥିଲେ । ତେବେ ଏ ଧଳା ବାଘର ଶରୀର ସମ୍ପୂର୍ଣ୍ଣ ରୂପେ ଧଳା ନୁହେଁ । ଧଳା ବାଘର ଶରୀର ମସିଆ ଧଳା ଓ ତା' ଉପରେ ମାଟିଆ ବା ହାଲୁକା କଳା କଳା ଦାଗ ଥାଏ । ଭାରତରେ 'ମୋହନ' ସହିତ 'ବେଗମ' ନାମକ ସାଧାରଣ ବର୍ଣ୍ଣର ବାଘୁଣୀ ସହ ମିଳନରେ ସାଧାରଣ ବର୍ଣ୍ଣର ବାଘ ଜନ୍ମ ନେଇଥିଲେ । ଏମାନଙ୍କ ମଧ୍ୟରୁ ଗୋଟିଏ ଛୁଆର ନାମ ଥିଲା 'ରାଧା' । ରାଧା ସହ ମୋହନର ମିଳନରେ ଚାରିଟି ଧଳାବାଘ ଛୁଆ ଜନ୍ମ ହୋଇଥିଲେ । ୨୦ ବର୍ଷ ପରେ ମୋହନର ମୃତ୍ୟୁ ହୋଇଥିଲା । ଧଳା ବାଘ ସହ ଧଳା ବାଘୁଣୀର ମିଳନ ଫଳରେ କ୍ରମେ ଧଳା ବାଘର ବଂଶ ବୃଦ୍ଧି ହେଲା । ଓଡ଼ିଶାର ନନ୍ଦନକାନନରେ ପୃଥିବୀର ଅଧିକସଂଖ୍ୟକ ଧଳାବାଘ ଥିବାରୁ ଆନ୍ତର୍ଜାତିକ ସ୍ତରରେ ନନ୍ଦନକାନନ ଖ୍ୟାତି ଅର୍ଜନ କରିଛି ।

## ବ୍ୟବହାର ବିଶେଷତ୍ୱ

ବାଘ ଓ ବିରାଡ଼ି ପ୍ରଭୃତି ହିଂସ୍ରଜନ୍ତୁମାନଙ୍କର ଆକ୍ରମଣ କରିବା ପାଇଁ ନଖ ଏକ ପ୍ରଧାନ ଅସ୍ତ୍ର । ଏମାନଙ୍କର ନଖ ଶକ୍ତ ଓ ବଙ୍କା । ସାମନା ଗୋଡ଼ରେ ପାଞ୍ଚଟି ଓ ପଛ ଗୋଡ଼ରେ ଚାରିଟି ଲେଖାଏଁ ନଖ ଥାଏ । ଚାଲିବାବେଳେ ଭୂମିରେ ଲାଗୁ ନ ଥିବାରୁ ଏଗୁଡ଼ିକ ଘୋରିହୋଇ ଯାଏ ନାହିଁ । ସାଧାରଣ ଅବସ୍ଥାରେ ନଖ ଓ ଆଙ୍ଗୁଠି ଉପରକୁ ଓଲଟି ରହିଥାଏ ଓ ଖୋଲ ମଧ୍ୟରେ ରହିଥାଏ । କେବଳ ଆକ୍ରମଣ କରିବା ସମୟରେ ବାହାରକୁ ବାହାରି ଆସେ । ଶିକାରବେଳେ ଆଘାତ କରିବା ଓ ଶିକାର ଜାବୁଡ଼ି ଧରିବାରେ ନଖ ବ୍ୟବହାର ହୋଇଥାଏ । ବାଘ ଗଛ ଗଣ୍ଡିରେ ନଖ ଘଷି ଦାଢ଼ କରିବାର ଦେଖାଯାଏ । ବାଘ ପାଟିରେ ୩୦ଟି ଦାନ୍ତ ଥାଏ । ଖାଇବାବେଳେ ଶ୍ୱାନଦନ୍ତ ବିଶେଷ କାମରେ ଲାଗିଥାଏ । ବାଘ କାମୁଡ଼ି ଧରିଲେ ଶିକାରର ମାଂସ ମଧ୍ୟରେ ଶ୍ୱାନଦନ୍ତ ପଶି ଶକ୍ତଭାବେ ଛନ୍ଦି ହୋଇଯାଏ । ଜିଭ ଅତି କର୍କଶ ବା କଣ୍ଟାପରି ହୋଇଥିବାରୁ ହାଡ଼ରେ ସାମାନ୍ୟ ମାଂସ ଲାଗିଲେ ବି ସେ ଚାଟି ଚାଟି ସଫା କରିଦିଏ ।

ଶିକାରଦ୍ୱାରା ଜୀବନଯାପନ କରୁଥିବାରୁ ଏ ପ୍ରାଣୀର ଦୃଷ୍ଟିଶକ୍ତି, ଘ୍ରାଣଶକ୍ତି ଓ ଶ୍ରବଣଶକ୍ତି ଅତି ପ୍ରଖର । ଏମାନଙ୍କର ଶ୍ରବଣଶକ୍ତି ଏତେ ପ୍ରଖର ଯେ, ଶିକାର ଜୀବର ସାମାନ୍ୟ ଗତି ସେ ଜାଣିପାରେ । ବିରାଡ଼ି ଯେପରି ବହୁତ ପରିଷ୍କାର ବାଘ ବି ସେପରି । କିନ୍ତୁ ତା'ର ଦେହର ଗନ୍ଧ ଅତି ତୀବ୍ର । ତେଣୁ ଶିକାରୀ ସହଜରେ ଏ ଗନ୍ଧରୁ ବାଘ ଆସିବା କଥା ଜାଣିପାରେ । ଏମାନଙ୍କର ଚାଲି ଧୀର, ଚତୁର ଓ ହୁସିଆର । ସେ ଆଙ୍ଗୁଠି ଟିପି ଟିପି ପାହୁଲରେ ଚାଲେ । ସାମନା ଗୋଡ଼ଦୁଇଟି ପଛ ଗୋଡ଼ଠାରୁ ସାନ,କିନ୍ତୁ ସାମନା ପାହୁଲ ଦୁଇଟି ବେଶି ଓଜନିଆ । ବେଳେ ବେଳେ ପଛ ପାହୁଲର ଦାଗ ସାମନା ପାହୁଲର ଦାଗକୁ ଏପରି ଘୋଡ଼ାଇଦିଏ ଯେ ତାହା ଆଉ ଜଣା ପଡ଼େ ନାହିଁ । ପାଦ ଚିହ୍ନଟି ବାଘର ବୋଲି ଜଣା ନ ପଡ଼ି ଗୋଟିଏ ଦୁଇଗୋଡ଼ିଆ ଜୀବର ବୋଲି ଜଣାପଡ଼େ । ବାଘ ତା' ଲାଙ୍ଗୁଡ଼କୁ ବାମରୁ ଡାହାଣକୁ ହଲାଏ; ମାତ୍ର ରାଗିଲେ ବା ଖୁସି ହେଲେ ଲାଙ୍ଗୁଡ଼ଟି ଅଚଳ ରହେ ।

## ବାଘର ପ୍ରଜନନ

ପ୍ରଜନନ ସମୟ ଓ ମାଆସହ ଛୁଆ ଥିବା ସମୟ ବ୍ୟତୀତ ଅନ୍ୟ ସମୟରେ ବାଘ ଏକା ରହିବାକୁ ଭଲ ପାଏ । ବାଘ ତା'ର ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ରହିଥାଏ । ପୁରୁଷ ବାଘ ରହିବା ଅଞ୍ଚଳ ୬୦ ରୁ ୧୦୦ ବର୍ଗ କିଲୋମିଟର ବେଳେ ସ୍ତ୍ରୀ ବାଘୁଣୀର ରହିବା ଅଞ୍ଚଳ ହାରାହାରି ୨୦ବର୍ଗ କିଲୋମିଟର । ବାଘମାନେ ନିଜ ସ୍ଥାନ ଠିକ୍ ରଖିବା

ପାଇଁ ବା ଅନ୍ୟସବୁ ବାଘମାନେ ତାଙ୍କ ସ୍ଥାନ ଜାଣିବାଲାଗି ଗଛଗୁଡ଼ିକରେ ପରିସ୍ରା କରିଥାନ୍ତି । ପରିସ୍ରାଗନ୍ଧ ବା ତାଙ୍କ ଶରୀରକୁ ଗଛଗଣ୍ଡିଗୁଡ଼ିକରେ ଘଷିବାଦ୍ୱାରା ତାଙ୍କ ରହୁଥିବା ଅଞ୍ଚଳକୁ ଠିକ୍ ରଖିଥାନ୍ତି । ତା' ଛଡ଼ା ତାଙ୍କ ମୁହଁରେ ଏକପ୍ରକାର ଗନ୍ଧ ଗ୍ରନ୍ଥି ମଧ୍ୟ ରହିଛି । ତେଣୁ ସେମାନେ ତାଙ୍କ ଅଞ୍ଚଳ ତଥା ପରସ୍ପରକୁ କିଛି ଦୂରକୁ ଜାଣିବା ପାଇଁ ସହଜ ହୋଇଥାଏ । ଖରାଦିନେ ବାଘମାନେ ଛୋଟ ଛୋଟ ପୋଖରୀ ବା ପାଣି ଥିବା ସ୍ଥାନରେ ଅଙ୍ଗ ବୁଡ଼ି ଦେହକୁ ଥଣ୍ଡା କରିବାର ଦେଖାଯାଇଥାଏ । ଶୀତଦିନେ ପଥର ଉପରେ ବା ଭୂଇଁ ଉପରେ ଶୋଇରହି ଖରା ପୋଉଁଥିବାର ମଧ ଦେଖାଯାଏ ।

ଯୌନମିଳନ ସମୟ ବ୍ୟତୀତ ଦୁଇଟି ପୂର୍ଣ୍ଣବୟସ୍କ ବାଘ ଏକାଠି ରହନ୍ତି ନାହିଁ । ପୁରୁଷ ବାଘ ବହୁପତ୍ନୀକ । ବହୁ ସମୟରେ ଗୋଟିଏ ବାଘୁଣୀ ଲାଗି ଦୁଇଟି ପୁରୁଷ ବାଘ ମଧ୍ୟରେ ଖୁବ୍ ଲଢ଼େଇ ହୁଏ । ବାଘୁଣୀ ତା' ଛୁଆ ସହ ଥିବାବେଳେ ପୁରୁଷ ବାଘ ତା' ନିକଟକୁ ଆସିଲେ ସେ ସହିଯାଏ । ମାତ୍ର ଅନ୍ୟ ବାଘୁଣୀର ଉପସ୍ଥିତି ସେ ଆଦୌ ସହିପାରେ ନାହିଁ । ତିନି ଚାରି ବର୍ଷରେ ବାଘ ବୟଃପ୍ରାପ୍ତ ହୁଏ । ବାଘୁଣୀ ପ୍ରାୟ ୧୦୦ ଦିନ (୯୩ ଦିନରୁ ୧୧୧ ଦିନ) ଛୁଆକୁ ଗର୍ଭରେ ଧାରଣ କରେ ଓ ସାଧାରଣତଃ ଥରକରେ ତିନୋଟି ଛୁଆ ଜନ୍ମ କରେ । ତଥାପି ଛଅଟିରୁ ସାତଟି ଛୁଆ ଜନ୍ମ କରିବାର ମଧ ଦେଖାଯାଏ । ନଭେମ୍ବରରୁ ଏପ୍ରିଲ୍ ମାସ ମଧ୍ୟରେ ସାଧାରଣତଃ ଅଧିକ ଛୁଆ ଜନ୍ମ ହୁଅନ୍ତି । ବାଘୁଣୀ ଦୁଇରୁ ଅଢ଼େଇବର୍ଷ ଅନ୍ତରରେ ଛୁଆ ଜନ୍ମ କରେ । ବାଘ ଶାବକର ଓଜନ ଦେଢ଼ କି.ଗ୍ରା. ହୋଇଥାଏ । ବାଘୁଣୀ ଛୁଆମାନଙ୍କୁ ଗହଳିଆ ପତ୍ର ମଧ୍ୟରେ ପଥର ସନ୍ଧିରେ ବା ଗଛ କୋରଡ଼ରେ ଲୁଚାଇ ରଖେ । ସେ ଛୁଆଙ୍କ ବେକପାଖ ଚମଡ଼ା କାମୁଡ଼ି ଧରି ଗୋଟିଏ ସ୍ଥାନରୁ ଅନ୍ୟତ୍ର ନିଏ । ଛୁଆଦେବା ସମୟରେ କାହାରିକୁ ପାଖରେ ପୂରାଇ ଦିଏ ନାହିଁ । ନଅ ଦିନରେ ଛୁଆ ବାଘର ଆଖି ଫିଟେ । ହେଲେ ହଠାତ୍ ସେ ଭଲ ଭାବରେ ଦେଖିପାରେ ନାହିଁ । ଦୁଇ ସପ୍ତାହ ପର୍ଯ୍ୟନ୍ତ ବାଘୁଣୀ ଦ୍ୱିତୀୟ ଥର ଗର୍ଭବତୀ ହେଲେ ପୂର୍ବ ଛୁଆକୁ ଛାଡ଼େ । ନଚେତ୍ ସେତିକି ଦିନ ପର୍ଯ୍ୟନ୍ତ ଛୁଆମାନେ ମାଆ ପାଖରେ ରହିଥାନ୍ତି । ଛୁଆମାନେ ଦେଢ଼ମାସର ହେବା ପରେ ମାଂସ ଖାଇବା ଆରମ୍ଭ



କରନ୍ତି ଓ ମାଆ ସହ ଶିକାରରେ ବାହାରନ୍ତି । ତା' ପୂର୍ବରୁ ମାଆଠାରୁ କ୍ଷୀର ପାନ କରି ବଞ୍ଚିଥାନ୍ତି । ବାଘମାନଙ୍କର ଜୀବନକାଳ ପ୍ରାୟ ୧୫ ବର୍ଷ । ତଥାପି ଆବଦ୍ଧ (Captivity) ଅବସ୍ଥାରେ ସେମାନେ ୨୦ ରୁ ଅଧିକ ବର୍ଷ ବଞ୍ଚିବାର ଦେଖାଯାଇଛି ।

## ବାଘ କାହାକୁ ଡରେ

ବାଘ ଧଳା ଜିନିଷକୁ ଡରେ । ତା' ବାଟ ବନ୍ଦ କରିବାକୁ ହେଲେ ବା ବଦଳାଇବାକୁ ଚାହିଁଲେ ଖଣ୍ଡିଏ ଧଳା ଚଦର ବା ଧଳା କାଗଜ ବିଛେଇ ଦେଲେ ସେ ତାର ଗତିପଥ ବଦଳାଇ ଦେଇ ଚାଲିଯାଏ । ଖାଇବା ପାଇଁ ସେ ଖାଲି ହିଂସ୍ର କିନ୍ତୁ ଅନ୍ୟ ସବୁ ସମୟରେ ସେ ବେଶ୍ ଶାନ୍ତିପ୍ରିୟ । ଅବଶ୍ୟ ଘାଇଲା ବାଘ ବର୍ବରତା ପ୍ରଦର୍ଶନ କରେ । ବାଘ ମଣିଷକୁ ସତରେ ଡରେ । ସେଥିପାଇଁ ମଣିଷ ହାବୁଡ଼ରେ ସହଜରେ ବାଘ ପଡ଼େ ନାହିଁ । ମଣିଷ ସ୍ଥିରହୋଇ ରହିଲେ ବାଘ ତାକୁ ଆକ୍ରମଣ କରେ ନାହିଁ । ମାତ୍ର ଆହତ ବାଘ ବା ମଣିଷଖିଆ ବାଘର ରୂପ ଓ ବ୍ୟବହାର ଭିନ୍ନ । ବାଘ ସଂଗମ ନିମିତ୍ତ ବାଘୁଣୀକୁ ଆକର୍ଷଣ କରିବା ଲାଗି ଗର୍ଜନ କରେ । ତା' ଛଡ଼ା ଶିକାର କରିବା ପରେ ଅନ୍ୟ ବାଘମାନଙ୍କୁ ଜଣାଇବାପାଇଁ ମଧ୍ୟ ଗର୍ଜନ କରିଥାଏ ।

## ବାଘଠାରୁ ଉପକାର

ଆଜି ବି ବଜାରରେ ବାଘର ନିଶ, ଦାନ୍ତ, ମାଂସ, ଚର୍ବି ଓ ନଖ ଇତ୍ୟାଦି ବିକ୍ରୟ ହୁଏ । ଲୋକଙ୍କର ଧାରଣା ଏସବୁ ଜିନିଷ ରୋଗହାରକ । ବାଘର ନଖ ଲୋକମାନେ ବେକରେ ପିନ୍ଧନ୍ତି । ପ୍ରାର୍ଥନା ଓ ପୂଜା ଆଦି କର୍ମରେ ଲୋକମାନେ ବାଘ ଚର୍ମ ଆସନଭାବେ ବ୍ୟବହାର କରିବାର ଦେଖାଯାଏ । ଅବଶ୍ୟ ଏ ଚର୍ମ ଅନେକ ଦିନ ପର୍ଯ୍ୟନ୍ତ ରହିପାରେ । ଶୁଣାଯାଏ, ବାଘର ଚର୍ବି ବାତରୋଗରେ ଲାଗେ ଓ କ୍ଷୀର ଆଖିରୋଗ ଭଲ କରେ ।

## ବାଘର ସଂରକ୍ଷଣ

ବାଘର ପ୍ରିୟ ସ୍ଥାନ ଘଞ୍ଚ ଜଙ୍ଗଲ । ଜଙ୍ଗଲ ସଫା ହୋଇଯିବା ଦ୍ୱାରା ବାଘର ବଂଶ ହ୍ରାସ ପାଉଛି । ତା'ର ବଂଶରକ୍ଷା ପାଇଁ ଅନେକ ପଦକ୍ଷେପ ନିଆଯାଉଛି । ବିଶେଷକରି ବାଘ ଶିକାର ବେଆଇନ୍ ଘୋଷଣା କରାଯାଇଛି । ଅଭୟାରଣ୍ୟ, ଜାତୀୟ ଉଦ୍ୟାନ, ପ୍ରାଣୀ ଉଦ୍ୟାନ କିମ୍ବା ଜୈବମଣ୍ଡଳ ଯେଉଁଠି ବାଘ ରହିଲେ ବି ସେଠି ଜଙ୍ଗଲ ପରି ଉପଯୁକ୍ତ ପ୍ରାକୃତିକ ପରିବେଶ ଠିକ୍ ନ ରହିଲେ ଓ ଅବାଧ ଶିକାର ବନ୍ଦ କରା ନ ଗଲେ ଏମାନେ ମଧ୍ୟ ଡୋଡୋପକ୍ଷୀ ଓ ଡାଇନୋସର୍ ପରି ନିଶ୍ଚୟ ଲୋପ ପାଇଯିବେ । ତେଣୁ ଏମାନଙ୍କର ଉପଯୁକ୍ତ ସଂରକ୍ଷଣ ଆବଶ୍ୟକ ।

●